


ବନମାଳୀ ବ୍ରହ୍ମଚାରୀଙ୍କ ୭୯ ତମ ଜୟନ୍ତୀ ଉପଲକ୍ଷେ

୧୯୬୩

● ପ୍ରକାଶକ –
ବନମାଳୀ ବ୍ରହ୍ମଚାରୀ ଜୟନ୍ତୀ ସମିତି , କଟକ
● ସମ୍ପାଦନା –
ଚୈତନ୍ୟ କୁମାର ସାହୁ

# ● ବ୍ରହ୍ମଚାରୀ ଜୟନ୍ତୀ ସ୍ମରଣିକା

( ନଭେମ୍ବର ୧୮, ୧୯୭୩ )

**ବନମାଳୀ ବ୍ରହ୍ମଚାରୀଙ୍କ**
**୭୯ତମ ଜନ୍ମ ଦିବସ ଉପଲକ୍ଷେ**

● ପ୍ରକାଶକ :
**ବନମାଳୀ ବ୍ରହ୍ମଚାରୀ ଜୟନ୍ତୀ ସମିତି (୧୯୭୩)**
କଟକ—୯

● ସମ୍ପାଦନା :
**ଚୈତନ୍ୟ କୁମାର ସାହୁ**

● ପ୍ରଚ୍ଛଦ ଶିଳ୍ପୀ :
**ସୁନାମଣି ସାମଲ**

● ମୁଦ୍ରାକର :
ବସନ୍ତକୁମାର ଦାଶ
**ଶ୍ରୀ ସତ୍ୟନାରାୟଣ ପ୍ରେସ**
ତଗରପଡ଼ା, କଟକ-୨

● ପ୍ରାପ୍ତିସ୍ଥାନ :
ସମ୍ପାଦକ
**ବନମାଳୀ ବ୍ରହ୍ମଚାରୀ ଜୟନ୍ତୀ ସମିତି**
ଝାଞ୍ଜିରି ମଙ୍ଗଳା, କଟକ-୯

● ମୂଲ୍ୟ :
ପାଞ୍ଚଟଙ୍କା ମାତ୍ର (ଜୟନ୍ତୀ ପାଣ୍ଠିକୁ ସାହାଯ୍ୟାର୍ଥେ)

# —ବନମାଳୀ ବ୍ରହ୍ମଚାରୀ ଜୟନ୍ତୀ ସମିତିରେ—

**ଉପଦେଷ୍ଟା :**

**ଡଃ. ହରେକୃଷ୍ଣ ମହତାବ**

ଶନ୍ଦ ନାଥ
ଅବନୀ କୁମାର ବରାଳ
ବୈଷ୍ଣବ ଚରଣ ପରିଡ଼ା

**ସଭାପତି :**

ରାମକୃଷ୍ଣ ନନ୍ଦ

**କାର୍ଯ୍ୟକାରୀ ସଭାପତି :**

ରବିନାରାୟଣ ମହାପାତ୍ର

**ଉପ ସଭାପତି :**

ଉପେନ୍ଦ୍ର ତ୍ରିପାଠୀ
ଉଦୟନାଥ ଷଡ଼ଙ୍ଗୀ
ଶ୍ରୀହର୍ଷ ମିଶ୍ର
ଡଃ କୁଞ୍ଜବିହାରୀ ଦାଶ
ମହେଶ୍ୱର ମହାନ୍ତି
ଅଚ୍ୟୁତାନନ୍ଦ କର
ଚକ୍ରଧର ମହାପାତ୍ର

**ସାଧାରଣ ସଂପାଦକ :**

ଚୈତନ୍ୟ କୁମାର ସାହୁ
ଝାଞ୍ଜିରୀ ମଙ୍ଗଳା
କଟକ-୯

**ସଙ୍ଗଠନ ସଂପାଦକ :**

ପ୍ରସନ୍ନ କୁମାର ଦାଶ

**କୋଷାଧ୍ୟକ୍ଷ :**

ହରପ୍ରିୟା ଦେବୀ

**ସହକାରୀ ସଂପାଦକ :**

ନରସିଂହ ସାହୁ
ହରିଶ୍ଚନ୍ଦ୍ର ଦେ
ଦାଶରଥି ନାୟକ
ରମେଶ ଚନ୍ଦ୍ର ରଥ
ଧନେଶ୍ୱର ସାମଲ
ଶଶିଭୂଷଣ ରଥ

**କାର୍ଯ୍ୟକାରୀ ସମିତି ସଭ୍ୟ :**

ଡଃ. ଦୋଳଗୋବିନ୍ଦ ଶାସ୍ତ୍ରୀ
ହୃଦାନନ୍ଦ ନାୟକ
ସଦାଶିବ ଦାଶ
କୈଳାଶ ଚନ୍ଦ୍ର ମହାପାତ୍ର
ପରମାନନ୍ଦ ଅଧିକାରୀ
ନନ୍ଦମୀ ଦେବୀ
ସୁଷମା ମହାନ୍ତି
ପ୍ରଭାସ ଚନ୍ଦ୍ର ପତି
ସରଳା ମହାପାତ୍ର
ସରୋଜରଞ୍ଜନ ପଟ୍ଟନାୟକ
ଗୁରୁ ମହାନ୍ତି



GOVERNOR, ORISSA



BHUBANESWAR

Dated. 1/9/1973.

MESSAGE



I am happy to know that 69th Birth Anniversary of Shri Banamali Bramhachari, an ideal teacher and social worker of our State is being celebrated on the 18th November, 1973 and a Souvenir is being broughtout on the occasion.

I wish the celebrations all success.

( B.D.Jatti. )
Governor of Orissa.



राष्ट्रपति सचिवालय,
राष्ट्रपति भवन,
नई दिल्ली-4.

PRESIDENT'S SECRETARIAT,
RASHTRAPATI BHAVAN,
NEW DELHI-4.



No.F.2-M/73.

August 28, 1973.

Dear Shri Sahoo,

The President is glad to know from your letter dated the 17th August, 1973 that the Banamali Brahmachari Jayanti Committee, Cuttack will celebrate the 69th birthday of Sri B. Brahmachari on the 18th November, 1973. He offers his congratulations to Sri Brahmachari and wishes him many more years of useful service to the country.

Yours sincerely,

R. V. Raghava Rao
(R.V.Raghava Rao)
Additional Private Secretary
to the President.

"GIRIJA"
30, Edward Elliot Road
Mylapore, Madras-4
November 16, 1973.

Dear Sir,

Dr. S. Radhakrishnan has asked me to acknowledge your letter and to send his good wishes to Sri Banamali Brahmachari whom you propose to felicitate on the occasion of his 69th birthday.

Yours faithfully,
C. Ramasulban
P.S. to Dr. S. Radhakrishnan



# ସମ୍ମାନାର୍ହ ଶିକ୍ଷକ

ଶ୍ରୀ ବନମାଳୀ ବ୍ରହ୍ମଗୃସ୍ଥ ଗତ କେତେବର୍ଷ ହେଲା ଶିକ୍ଷକମାନଙ୍କ ସଂଗଠନ ଓ ସେମାନଙ୍କ ଆପତ୍ତି ଅଭିଯୋଗମାନ କର୍ତ୍ତୃପକ୍ଷଙ୍କଠାରେ ଉପସ୍ଥାପନ କାର୍ଯ୍ୟରେ ନିଜକୁ ପୂର୍ଣ୍ଣଭାବରେ ନିୟୋଗ କରିଛନ୍ତି । ସେ ନିଜର ଜୀବନର ଅଭିଳାଷକୁ ଶିକ୍ଷକ ସାଧାରଣଙ୍କ ସେବାରେ ଲଗାଇଛନ୍ତି । ଏହା ସର୍ବସ୍ୱୀକୃତ ଯେ, ସମାଜରେ ଶିକ୍ଷକମାନଙ୍କର ଯେପରି ସମ୍ମାନିତ ସ୍ଥାନ ପାଇବାର କଥା, ସେମାନେ ପାଉ ନାହାନ୍ତି । ଏଥିପାଇଁ ହୁଏତ ଶିକ୍ଷକମାନଙ୍କର କେଉଁଠି ତ୍ରୁଟି ହେଉଛି । ମୋର ମନେହୁଏ, ସେମାନେ ନିଜର ଆର୍ଥିକ ଉନ୍ନତି ଦିଗରେ ଯେପରି ଆଗ୍ରହୀ, ସମ୍ମାନର ସ୍ଥାନ ପାଇବା ଦିଗରେ ସେପରି ନୁହଁନ୍ତି । ଅର୍ଥ ସହିତ ସମ୍ମାନର ସମ୍ପର୍କ ସବୁ କ୍ଷେତ୍ରରେ ନ ଥାଏ । ଅର୍ଥ ସମ୍ମାନ ଆଣି ଦିଏ, ଏହା ଏକ ପ୍ରଚଳିତ ଭ୍ରାନ୍ତ ଧାରଣା । ଏ ଧାରଣା ଶିକ୍ଷକମାନଙ୍କ ମନରୁ ଦୂର କରିବା ପାଇଁ ଶ୍ରୀ ବନମାଳୀ ବ୍ରହ୍ମଗୃସ୍ଥ ଆପ୍ରାଣ ଉଦ୍ୟମ କରି ଆସୁଛନ୍ତି । ଶିକ୍ଷକମାନେ ଅବହେଳିତ ନ ହେଉନ୍ତୁ, ଏହା ହିଁ ହେଲା ବ୍ରହ୍ମଗୃସ୍ଥଙ୍କ ସଂଗଠନର ମୂଳମନ୍ତ୍ର । ଏହାଙ୍କ ଉଦ୍ୟମରେ ଶିକ୍ଷକ ସମାଜ ଅନୁପ୍ରାଣିତ ହୁଅନ୍ତୁ, ଏହି କାମନା କରି ଶ୍ରୀ ବ୍ରହ୍ମଗୃସ୍ଥଙ୍କୁ ଶୁଭେଚ୍ଛା ଜ୍ଞାପନ କରୁଛି ।

**ଡଃ ହରେକୃଷ୍ଣ ମହତାବ**

# ପୂଜ୍ୟ ପୂଜା

ସେବା-ତ୍ୟାଗ-ବଳେନ ଶୁଦ୍ଧ ପୁରୁଷ !
ପ୍ରୀତିପ୍ରଦାଂ ଭାରତୀଂ,
ଶଶ୍ୱତେ ଶିବଦାଂ ପ୍ରଭାବ-ମହତୀଂ
ଲୋକ ସ୍ମରତ୍ୟାଦରାତ୍ ।
ଶିକ୍ଷା-ଦୀକ୍ଷିତ-ଶିକ୍ଷିତାଃ
ତବଖିଳାଃ ଛାତ୍ରାଃ ଗୁଣଗ୍ରାହିତାଃ
ସନ୍ମାର୍ଗଂ ସୁଭଗଞ୍ଚ ଯାନ୍ତି ନିଯୁତଂ
ତ୍ୱତ୍‌କୀର୍ତ୍ତିବର୍ତ୍ତିପ୍ରଭାଃ ।

ତବୈବ ସେବା ମହତୀ ମନୋହରା
ବିଶାଳ ଚିନ୍ତା ଶୁଭ କର୍ମଣି ସ୍ଫୁଟଂ,
ଗରୀୟସୀ ଶିଷ୍ଟ-ସମାଜ-ଭାବନା
ତ୍ୱମେବ ଶଶ୍ୱଦ୍ ବରଣୀୟ ଉତ୍କଳେ ।

ଶ୍ରୀ ପ୍ରବୋଧ କୁମାର ମିଶ୍ର

# ଶୁଭାଶୀର୍ବାଦ

ସ୍ୱାଧୀନୋତ୍କଳ ରାଷ୍ଟ୍ରଶିକ୍ଷକ ମହାସଂଘ ମହାନାୟକଃ
ସ୍ରଷ୍ଟା ଶିକ୍ଷକ ଦର୍ପଣସ୍ୟ ସଦନେ ପ୍ରାଜ୍ଞଃ ସଦାଭାସ୍ୱରଃ
ବାଳାନାଂ ମନୋରଞ୍ଜନେ ସୁଲେଖକଃ କାଳଃଋପୂର୍ଣାଂପରମ୍
ତ୍ରାତା ଶିକ୍ଷକରକ୍ଷକୋ ହି ସତତଂ ହେ ନାୟକ ! ବନ୍ଦ୍ୟତାମ୍ ।

ପଣ୍ଡିତ ବଂଶୀଧର ଆଚାର୍ଯ୍ୟ
ପଞ୍ଚାମୁଣ୍ଡାଇ
( ଉପସଭାପତି, କଟକ ଜିଲ୍ଲା ମାଧମିକ ଶିକ୍ଷକସଂଘ)

—o—

# ଶୁଭେଚ୍ଛା

ପ୍ରବୀଣ ଶିକ୍ଷକ ଶ୍ରୀ ବନମାଳୀ ବ୍ରହ୍ମଗୁରୁଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଏକ ସ୍ମରଣିକା ପ୍ରକାଶ ପାଉଥିବା ଜାଣି ସୁଖୀ ହେଲି ।

ବନମାଳୀ ବାବୁ ମୋର ପିତାଙ୍କ ବନ୍ଧୁ । ବାଲ୍ୟକାଳରୁ ମୁଁ ତାଙ୍କୁ ଜାଣିଛି । କର୍ମକ୍ଷେତ୍ରରେ ତାଙ୍କ ସମ୍ପର୍କରେ ଆସିବା ପୂର୍ବରୁ ତାଙ୍କ ସହ ମୋର ପରିଚୟ ।

ଜଣେ କର୍ତ୍ତବ୍ୟନିଷ୍ଠ, ନୈତିକ ଶିକ୍ଷକଭାବେ ବହୁ ଆଗରୁ ମୁଁ ତାଙ୍କ ପରିଚୟ ପାଇଛି । ମୋର ସମ୍ପର୍କୀୟ ତଥା ମୋ ନାଟକର ପ୍ରକାଶକ ସ୍ୱର୍ଗତ ଜ୍ଞାନେନ୍ଦ୍ରନାଥ ରଥଙ୍କ ପୁସ୍ତକାଳୟରେ ବସି ତାଙ୍କ ସହ ଓଡ଼ିଆ ସାହିତ୍ୟ ବିଷୟରେ ବହୁ ଆଲୋଚନା ମୋର ହୁଏ । ସେ ଜଣେ ପ୍ରାଚୀନ ସାହିତ୍ୟ ଅନୁରାଗୀ । ସେ ସୂତ୍ରରେ ତାଙ୍କ ସହ ବହୁଦିନର ପରିଚୟ । ମୋର ସାହିତ୍ୟିକ ଜୀବନର ଗୁରୁଦେବ ସ୍ୱର୍ଗତ ବିଚ୍ଛନ୍ଦ ପଟ୍ଟନାୟକଙ୍କ ଜଣେ ଅନୁଗାମୀ ଭାବେ ଆମର ଭଞ୍ଜ ଜୟନ୍ତୀ ପାଳନ ଓ ସାହିତ୍ୟ ପ୍ରୀତିକୁ ସେ ଶ୍ରଦ୍ଧାକରି ଆସିଛନ୍ତି ।

ସେ ପ୍ରତିଭାବାନ୍ ଉତ୍ସାହୀ ବ୍ୟକ୍ତିମାନଙ୍କୁ ଶ୍ରଦ୍ଧା କରିଥାନ୍ତି ।

ଅନ୍ୟାୟ ବିରୁଦ୍ଧରେ ସେ ସଂଗ୍ରାମ କରନ୍ତି । ସେ ଅନ୍ୟର ଭୁଲ ବାଛନ୍ତି ଓ ତାଙ୍କ ଭୁଲ ବାଛି ଦେଲେ ସେ ଖରାପ ଭାବନ୍ତି ନାହିଁ । ଇନ୍‌ସ୍‌ପେକ୍ଟର ଭାବେ ସେ ମୋତେ ପ୍ରଶଂସା କରିଛନ୍ତି । ଗାଳି ଦେଇଛନ୍ତି ମଧ୍ୟ । ଆମେ କେଉଁଠି ତାଙ୍କର ସ୍କୁଲକୁ କାଟି କଡ଼ା ଚିଠି ଦେଲେ ମଧ୍ୟ ସେ ଖରାପ ନ ଭାବି ତାକୁ ଉପଯୁକ୍ତ ମନୋଭାବରେ ଗ୍ରହଣ କରନ୍ତି ।

ଅସହାୟ ଶିକ୍ଷକମାନଙ୍କର ସେ ଏକ ବଳିଷ୍ଠ ପୃଷ୍ଠପୋଷକ । ସେହି ଶିକ୍ଷକମାନେ ତାଙ୍କୁ ସମ୍ମାନ ଜଣେଇବା ଅତ୍ୟନ୍ତ ସ୍ୱାଭାବିକ । ମୁଁ ତାଙ୍କର ଦୀର୍ଘଜୀବନ କାମନା କରୁଛି ।

**ଶ୍ରୀ ରଜତ କୁମାର କର**
ସୁନ୍ଦରଗଡ଼ ସର୍କଲ ଇନ୍‌ସ୍‌ପେକ୍ଟର

## ଏଥିରେ ଅର୍ଘ୍ୟ ବାଢ଼ିଛନ୍ତି—

# ଏତିକ ମୁଁ ମନାସୁଛି ଦୂରୁ

ଶ୍ରୀ ରାମକୃଷ୍ଣ ନନ୍ଦ

ହେ ବରେଣ୍ୟ କର୍ମବୀର, ହେ ନିର୍ଭୀକ ସାଧକ ସତ୍ତମ,
ପଲ୍ଲୀର ଅଖ୍ୟାତ କୋଣେ ଜନମିଲ କେଉଁ ଶୁଭକ୍ଷଣେ,
ଶିକ୍ଷକର ସଖା ସାଜ ଆଜୀବନ କରୁନ୍ତ ସଂଗ୍ରାମ,
ଧନ୍ୟ ଏ ଉତ୍କଳ ଭୂମି କୋଳେ ଧରି ତୁମପରି ଜଣେ ।

ସାଧନାର ଆଦ୍ୟ ଭୂମି ଦୋହଲରେ ବିଦ୍ୟାପୀଠ ଗଢ଼ି
ଶିକ୍ଷାର ଦହୁଡ଼ି ଜାଳି ଦୂର କଲ ଅଜ୍ଞାନ-ତମିର,
ତୁମର ନିର୍ମଳ ସ୍ନେହ, ଉପଦେଶ, ଆଦର୍ଶରେ ବଢ଼ି
ଲକ୍ଷ୍ୟପଥେ ଚାଲିଛନ୍ତି ଶିଷ୍ୟ ତବ ଉଚ୍ଚ କରି ଶିର ।

ତେଜୋମୟୀ ବାଣୀ ତବ, ଶକ୍ତିଶାଳୀ ଲେଖନୀର ଭାଷା
ଦୋହଲ-ଦେହଲୀ ଡେଇଁ ପ୍ରସରିଲା ତବ ଶୁଭ୍ର ଯଶ,
ଶିକ୍ଷକ ସମାଜେ ତୁମେ ଜଗାଇଲ ଦେଇ ନୂଆ ଆଶା,
ଉଦ୍‌ଯୋଗର ଜୟବାନା ଉଡ଼ାଇଲ ଆହେ ନିରଳସ ।

ଯେଦିନ ବାଜିଲା କାନେ ମହାତ୍ମାର ମୁକ୍ତି-ଆବାହନୀ,
ସେ ଦିନୁ ସ୍ୱଦେଶ-ହିତେ ହେଲ ତୁମେ ଖଦି-ବସ୍ତ୍ରଧାରୀ
ଅନ୍ୟାୟର ପ୍ରତିରୋଧ ଜୀବନର ବ୍ରତରୂପେ ମଣି
ସାଜିଲ ସୈନିକ ତୁମେ ତ୍ୟାଗବୀର ଆହେ ବ୍ରହ୍ମଚାରୀ ।

ଶିକ୍ଷାର ସରଣୀ ପରେ କୀର୍ତ୍ତି ତବ ରହୁ ଅମଳିନ,
ଜୀବନର ଯାତ୍ରାପଥ ହେଉ ତବ ସୁଖମୟ, ଗୁରୁ,
ନ୍ୟାୟର ବିମଳ ତେଜେ ଅବିଚାର ହୋଇଯାଉ ଲୀନ,
ଆଜି ଏହି ଶୁଭଦିନେ ଏତିକ ମୁଁ ମନାସୁଛି ଦୂରୁ ।

● ସମ୍ପାଦକ, 'ସଂସାର'
କଟକ



# ବନମାଳୀ ବ୍ରହ୍ମଚାରୀ—ଏକ ଚଳନ୍ତି ଅନୁଷ୍ଠାନ

ଡଃ: ଦୋଳଗୋବିନ୍ଦ ଶାସ୍ତ୍ରୀ

ସାଧାରଣ ମନୁଷ୍ୟ ଜନ୍ମ ନିଏ, ବଢ଼େ, ନିଜର ଦେହ, ଦେହର ବିସ୍ତୃତ ସ୍ତ୍ରୀ-ପୁତ୍ର-କନ୍ୟା ପ୍ରତିପୋଷଣ କରେ, ସେମାନଙ୍କ ଲାଗି ବିଷୟ ସମ୍ପତ୍ତି ଆୟ କରେ, ବୃଦ୍ଧି କରେ, ରକ୍ଷା କରେ; ଦିନେ ସେ ଜଗତରୁ ବିଦାୟ ନିଏ । ଏହି ସାଧାରଣ ଜନତା ମଧ୍ୟରେ ଏପରି ଜଣେ ଅଧେ ଅସାଧାରଣ ବ୍ୟକ୍ତି ମଧ୍ୟ ଯାହାର ଦୃଷ୍ଟିରେ ସମସ୍ତଙ୍କ ପରି ସାଧାରଣ ଜୀବନ ଅତିବାହିତ କରନ୍ତି । ଯଥା ସମୟରେ ଜଗତରୁ ବିଦାୟ ନିଅନ୍ତି । କିନ୍ତୁ ସେମାନଙ୍କର ରୁଚି, ଚିନ୍ତାଧାରା ଓ କାର୍ଯ୍ୟାବଳୀ ସେମାନଙ୍କୁ ଅନ୍ୟମାନଙ୍କଠାରୁ ଅଲଗା ଭାବରେ ଜଗତରେ ପରିଚିତ କରାଏ । କେବଳ ନିଜେ ଭଲ ଖାଇବା, ଭଲରେ ରହିବା-ଏ ଚିନ୍ତା ତାଙ୍କର ଥାଏ ନା, ସମସ୍ତେ ଯେପରି ଭଲରେ ଖାଇବେ, ରହିବେ, ଭଲ ମଣିଷ ହେବେ—ଏପରି ଚିନ୍ତା ତାଙ୍କର ସ୍ୱାଭାବିକ ଆଚରଣରେ ପ୍ରକାଶ ପାଏ । ସାଧାରଣ ବୁଦ୍ଧିରେ ସେମାନେ ଏକ ପ୍ରକାର ବେ-ହିସାବୀ । ହିସାବ କରି ମାପିଚୁପି, ଲାଭ-ଲୋକସାନ ଅଟକଳ କରି କାର୍ଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ହୁଏ ନା । ସେମାନେ ଅମଡ଼ା ମାଡ଼ନ୍ତି, ଅବାଟରେ ବାଟ ଫିଟାନ୍ତି, ନିଜ ଗୋଡ଼ରେ କଣ୍ଟା ଫୁଟାଇ ରକ୍ତ ଝରାନ୍ତି, ଅପରକୁ ଚାଲିବାର ସୁବିଧା ଦିଅନ୍ତି । ସେମାନେ ମାଡ଼ ଖାଆନ୍ତି, ମାଡ଼ ଦେବାକୁ ସମୟ ସେମାନଙ୍କର ନାହିଁ । ନିନ୍ଦା ଗଞ୍ଜଣା ସହନ୍ତି, କିନ୍ତୁ ଅପରକୁ ନିନ୍ଦା କରିବାର ଅବସର ସେମାନଙ୍କର ନ ଥାଏ । କ୍ଷତ ସହନ୍ତି, କିନ୍ତୁ କ୍ଷତ କରିବାର ପ୍ରବୃତ୍ତି ସେମାନଙ୍କର ଆସେନା । ସେମାନେ ଗଢ଼ନ୍ତି, ଗଢ଼ା ଜିନିଷ ଭାଙ୍ଗନ୍ତି ନାହିଁ—କେହି ଗଢ଼ିବାରେ ବାଧା ଦେଲେ ଆଉ ଯାଗାରେ ବସନ୍ତି, ପୁଣି ସେଠି ମଧ୍ୟ ଗଢ଼ନ୍ତି । ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ—ସେମାନେ ଯେଉଁଠିକି ଯାଆନ୍ତି ଗଢ଼ି ଚାଲନ୍ତି । ଗଢ଼ିବାଟା ସେମାନଙ୍କର ଧର୍ମ । ସୃଷ୍ଟିରେ ଆନନ୍ଦ ହିଁ ସେମାନଙ୍କର ସତ୍ତା ; ସୃଷ୍ଟି ସେମାନଙ୍କର ଧର୍ମ । ଏହିପରି ଜଣେ ସ୍ରଷ୍ଟା କ୍ଷଣଜନ୍ମା ପୁରୁଷ ଆମର ବନମାଳୀ ବ୍ରହ୍ମଚାରୀ ।

ବ୍ରହ୍ମଚାରୀ ନାମ ଶୁଣି କେହି ଭାବିବେ ନାହିଁ ଯେ ସେ ଆବାଲ୍ୟ ବ୍ରହ୍ମଚାରୀ । ବିବାହ ସେ କରିଛନ୍ତି । ଏକମାତ୍ର କନ୍ୟାର ପିତୃତ୍ୱ ଗୌରବରେ ସେ ଗୌରବାନ୍ୱିତ । ଅଥଚ ସେ ବ୍ରହ୍ମଚାରୀ । ଏହା ଏକ ମହା ବିରୋଧାଭାସ । ସବୁ କାର୍ଯ୍ୟ ତାଙ୍କର ସେଇଆ । ସେ ଏକ ବିରୋଧାଭାସର ସମନ୍ୱୟ ।

ମାତ୍ର ୨୭ ବର୍ଷ ବୟସରେ ପତ୍ନୀ ବିୟୋଗ ଘଟିଲା; ଏକମାତ୍ର କନ୍ୟାଙ୍କୁ ତାଙ୍କ କୋଳରେ ଥୋଇ ସଜ୍ଜା ସାଧ୍ୱୀ ଇହ ଜଗତରୁ ବିଦାୟ ନେଲେ । ଇଚ୍ଛା କରିଥିଲେ ଆଉଥରେ ବିବାହ କରି ସେ ପଞ୍ଚପୁତ୍ରର ଜନକ ହୋଇ ଥାଆନ୍ତେ, କିନ୍ତୁ ସନ୍ତାନ ଲୋଭ ତାଙ୍କର ଅତ୍ୟନ୍ତ ବେଶୀ । ଶତ ସହସ୍ର ସନ୍ତାନର ଜ୍ଞାନଦାତା ପିତା ହେବାର ବ୍ୟକ୍ତି ମାତ୍ର ଗୋଟିଏ ଦୁଇଟି ପୁତ୍ରରେ ସନ୍ତୁଷ୍ଟ ହେବେ କିପରି ! କଠୋର-ତ୍ୟାଗପୂତ ବ୍ରହ୍ମଚର୍ଯ୍ୟ-ବ୍ରତ ଗ୍ରହଣ କଲେ ସେ ପୂର୍ଣ୍ଣ ଯୌବନରେ ।

ଆରମ୍ଭ ହେଲା ଦୋହଲୀ ମାଇନର ସ୍କୁଲ । ମଶାଣୀ ପଡ଼ିଆରୁ ହାଡ଼, ବାଉଁଶ, ମାଟି ହାଣ୍ଡୀ ଗୋଟେଇ ସ୍କୁଲଘର ତିଆରି ହେଲା । ପୂର୍ବରେ କେନ୍ଦ୍ରାପଡ଼ା, ପଶ୍ଚିମରେ ଅସୁରେଶ୍ୱର—ଯାହିଁ ବାର ମାଇଲ ମଧ୍ୟରେ

ଦୋହଲୀ ହେଲା ପ୍ରଥମ ମାଇନର ସ୍କୁଲ । ସେ ଅଞ୍ଚଳରେ ଗ୍ରାମେ ଗ୍ରାମେ ଘରେ ଘରେ ଆଲୋଚନା—ବନମାଳୀ ପଣ୍ଡିତେ ମାଇନର ସ୍କୁଲ ବସେଇଛନ୍ତି । ମୁଁ ସେତେ-ବେଳେ ବହୁଗ୍ରାମ ମାଇନର ସ୍କୁଲରୁ ବୃତ୍ତି ପାଇ କଟକରେ ପଢୁଥାଏ । ଛୁଟିରେ ଗ୍ରାମକୁ ଆସେ—ସମସ୍ତଙ୍କ ମୁହଁରେ ଶୁଣେ ବନମାଳୀ ପଣ୍ଡିତଙ୍କ ପ୍ରଶଂସା । କେମିତି ଥରେ ତାଙ୍କୁ ଦେଖିବି—ଏ ଇଚ୍ଛା ଦିନୁ ଦିନ ବଢୁଥାଏ । ଗ୍ରୀଷ୍ମ ଛୁଟିରେ ଦିନେ ଉପରେଓଳ ଦୋହଲୀ ସ୍କୁଲରେ ପହଞ୍ଚିଲି । ସ୍କୁଲର ଦକ୍ଷିଣ ପଟ ରାସ୍ତା ଉପରେ ଦୋକାନ ଘରଟିଏ, ବାରନ୍ଦାରେ ବେଞ୍ଚ ଖଣ୍ଡେ ପଡ଼ିଥାଏ, ବ୍ରହ୍ମଗୁରୁଜୀ ବସି ଥାଆନ୍ତି, ଉଜ୍ଜଳ ସୁନାର ରଙ୍ଗ, ପ୍ରଶସ୍ତ ଲଲାଟ, ଜ୍ୟୋତିପୂର୍ଣ୍ଣ ମୁଖଶ୍ରୀ, ଦେଖି ଘୁଏଁ ଘୁଏଁ ମୁଣ୍ଡ ନଇଁଗଲା । ପାଦଧୂଳି ନେବା ମାତ୍ରେ ହାତ ଧରି ଉଠାଇ ପାଖରେ ବସାଇଲେ । ମୋ ନାମ ସେ ଆଗରୁ ଶୁଣିଥିଲେ, ପରିଚୟ ନେବାମାତ୍ରେ ସ୍ନେହ କରି ବହୁ ଉତ୍ସାହପୂର୍ଣ୍ଣ ଉପଦେଶ ଦେଲେ । ମନେ ହେଲା ଜଣେ ଦିବ୍ୟ ମହାପୁରୁଷଙ୍କ ଦର୍ଶନ ପାଇଲି । ସେ ତେଜୋଦୀପ୍ତ ମୁଖ ମଣ୍ଡଳ ଆଜି ବି ଅମ୍ଳାନ ରହିଛି । ଜୀବନରେ କେତେ ଝଡ଼ ଝଞ୍ଜା, କେତେ ନିନ୍ଦା ଅପବାଦ, କେତେ ନିର୍ଯ୍ୟାତନା ସେ ଭୋଗିଛନ୍ତି । କିନ୍ତୁ ଦିନକ ପାଇଁ ତାଙ୍କୁ ବିମର୍ଷ, ନିରୁତ୍ସାହିତ କେହି ଦେଖି ନାହାନ୍ତି-ଶୁଣିଛି ମୁଁ ତାଙ୍କର କେହି ଦେଖି ନାହାନ୍ତି ।

ଦୀର୍ଘ ୧୫ । ୨୦ ବର୍ଷ ପରେ କଲିକତାରେ ଥିବା ସମୟରେ ଛୁଟିରେ ଦୁଇ ତିନି ଦିନ ପାଇଁ ଗ୍ରାମକୁ ଆସେ । ଥରେ ଶୁଣିଲି, ବନମାଳୀ ବ୍ରହ୍ମଗୁରୁ ଆଉ ଦୋହଲି ସ୍କୁଲରେ ନାହାଁନ୍ତି । ଏଥି ଭିତରେ ସ୍କୁଲର ଅନେକ ଉନ୍ନତି ହୋଇଛି, ଅନେକ ଛାତ୍ର କୃତିତ୍ୱ ଅର୍ଜନ କରି ଜୀବନରେ ବଡ଼ ହେଲେଣି । ଅନେକ ବ୍ୟକ୍ତି ସ୍କୁଲର କର୍ମ କର୍ତ୍ତା ହେଲେଣି । ବନମାଳୀ ବ୍ରହ୍ମଗୁରୁଙ୍କର ପ୍ରୟୋଜନ ସରି ଯାଇଛି । ଏଣିକି ସେ ଅବାଞ୍ଛିତ ବ୍ୟକ୍ତି; ତାଙ୍କୁ କୌଣସି ମତେ ସ୍କୁଲରୁ ଦୂରେଇ ଦେବାକୁ ହେବ । ସହଜ ପନ୍ଥା—ଲୋକ ମତେଇବାର ଶସ୍ତା ଦୁର୍ନାମ—ଅର୍ଥ ତୋଷରପାତ । ଖୁବ୍ ମୁଖ ରୋଚକ ଅପବାଦ । କାଉ କାନ ନେଇଗଲା ଶୁଣି ଠେଙ୍ଗା ଧରି କାଉ ପଛରେ ଦୌଡ଼ନ୍ତି, କାନରେ ହାତ ଦେଇ ଦେଖିବାର ଧୈର୍ଯ୍ୟ ନ ଥାଏ । ବ୍ରହ୍ମଗୁରୁ ଦୁଃଖରେ ବିଦାୟ ନେଇଛନ୍ତି । ଘର ସଜାଡ଼ିବାର—ଦାନା ଯୋଗାଡ଼ିର ସମୟ ତ ପାଇ ନାହାଁନ୍ତି—ସ୍କୁଲ ଥିଲା ତାଙ୍କର ସ୍ୱପ୍ନ, ସେବା, ଭଗବାନ, ସବୁ । ଆଉ କଥା ଚିନ୍ତା କରିବାର ବେଳ କାହିଁ ! ଏଣୁ ୮୦ ଟଙ୍କାରେ ଖଣ୍ଡେ ଗୃହକରି ଯୋଗାଡ଼ କରି କଟକରେ ରହୁଛନ୍ତି ଶୁଣିଲି । କୃତଘ୍ନତା ଯେ ସମାଜକୁ ଏତେ ଦୂର ଅନ୍ଧ କରିପାରେ, ଭାବିଲେ ମନରେ ଅବସାଦ ଆସେ । ଶୁଣିଛି, ଲୋକେ କହନ୍ତି, ସ୍କୁଲର ତ ସବୁ ହେଲା, ଗୃଦୋଳରୁ ରାସ୍ତାଟିଏ ନ ହେଲେ ତ ଚଳିବ ନାହିଁ । ଏଣୁ ରାସ୍ତା ପାଇଁ ସେ ନିଜର ଜମି ବଦଳ ମଧ୍ୟ ଦେବାକୁ ପଛେଇ ନାହାନ୍ତି । ତଥାପି ମଧ୍ୟ ଜଣେ ରାଜି ହେଲେ ନାହିଁ ଜମି ଛାଡ଼ିବା ପାଇଁ । ଶେଷରେ ବ୍ରହ୍ମଗୁରୁଜୀ ଦିନେ ସନ୍ଧ୍ୟାବେଳେ ତାଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ି ରହିଥିଲେ ଏବଂ ଜମି ଆଦାୟ କରିଥିଲେ । ଏପରି ବ୍ୟକ୍ତି ମଧ୍ୟ ସେଠି ଅବାଞ୍ଛିତ ହୋଇଗଲେ !

ମୂଳରୁ କହିଛି, ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ସୃଷ୍ଟି ଯାହାର ବିଳାସ, ଗଢ଼ିବା ଯାହାର ନିଶା, ସେ ଚୁପ୍ ଚାପ ମୁଠାଏ ଖାଇ ଖଣ୍ଡେ ପିନ୍ଧି ଘର କୋଣରେ ବସି ପାରିବ କିପରି ?

ବ୍ରହ୍ମଗୁରୁଜୀ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଢ଼ି ଚାଲିଲେ । ଏଥି ମଧ୍ୟରେ ମୁଁ କଟକ ରେଭେନ୍ସା କଲେଜକୁ ଆସିଲିଣି । ଡାକ ପଡ଼ିଲା ପ୍ରାୟ ଅଶି ହଜାର ଟଙ୍କା ବ୍ୟୟରେ ନବ ନିର୍ମିତ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଭବନର ଉଦ୍‌ଘାଟନ ଉତ୍ସବରେ କିଛି କହିବା ପାଇଁ । ଏହି ବ୍ୟକ୍ତି ମାତ୍ର କେତୋଟି ବର୍ଷ ତଳେ ମାତ୍ର ଅଶି ଟଙ୍କାର ଖଣ୍ଡେ ଗୃହକରି ନେଇ କଟକରେ ବାସ କରିବାକୁ ଆରମ୍ଭ କରିଥିଲେ । କେତୋଟି ଲୋକ ଏମିତି ପାରନ୍ତି ବା କରନ୍ତି !

ଦୋହାଲା ସ୍କୁଲ ରହିଛି; ରହିବ; ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଭବନ ରହିଛି, ରହିବ; ବନମାଳୀ ବ୍ରହ୍ମଚାରୀଙ୍କର ପୁତ୍ର ପୌତ୍ର କେହି ଏଥିରୁ ବିଶେଷ ଉପକୃତ ହୋଇଛନ୍ତି ବା ହେବେ—ଏପରି ସମ୍ଭାବନା ମଧ୍ୟ ନାହିଁ । ବ୍ରହ୍ମଚାରୀଜୀ ଏଥିରୁ କିଛି ନେଇ ନାହାଁନ୍ତି ବା ସାଙ୍ଗରେ ମଧ୍ୟ ନେଇଯିବେ ନାହିଁ; ସବୁ ଏହିଠାରେ ଥିବ—ଅନ୍ୟମାନଙ୍କ ପାଇଁ । ତଥାପି "ମଣିମୟ ମନ୍ଦିରେ ପିପୀଲିକା ପଶ୍ୟନ୍ତି ଛିଦ୍ରମ୍"—ଏ ବି ଏକ ବିସ୍ମୟକର ବିରୋଧାଭାସ । ଲୋକ ଚରିତ୍ର ଅତି ବିଚିତ୍ର !

ବ୍ରହ୍ମଚାରୀଜୀଙ୍କର ପ୍ରତିଭା ବହୁମୁଖୀ । ଶିଶୁ ସାହିତ୍ୟିକ ହିସାବରେ ମଧ୍ୟ ସେ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । ଏତେ କର୍ମବ୍ୟସ୍ତତା ମଧ୍ୟରେ ଲେଖନୀ ତାଙ୍କର ନିରଳସ । ଶିକ୍ଷକ ସଂଘର ମାସିକ ମୁଖପତ୍ର 'ଶିକ୍ଷକ-ଦର୍ପଣ'ର ଜନ୍ମ ଓ ସମୃଦ୍ଧି ମୂଳରେ ତାଙ୍କର ପ୍ରେରଣା ଓ ସାଧନା ।

ଶିକ୍ଷକ ଜଣେ କେଉଁଠି ନିର୍ଯ୍ୟାତିତ ବା କର୍ତ୍ତୃପକ୍ଷଙ୍କ ଅବିଚାରର ଶରବ୍ୟ ହୋଇ ଦୁଃଖରେ ମ୍ରିୟମାଣ ହେଲେ ବ୍ରହ୍ମଚାରୀଜୀ ହିଁ ତାଙ୍କର ଭରସାର ସ୍ଥଳ । ଏପରି ଶିକ୍ଷକ ବନ୍ଧୁ କେତେ ଜଣ ଅଛନ୍ତି ?

କେତେ ମେଧାବୀ ଦରିଦ୍ର ଛାତ୍ର, ଯେଉଁମାନଙ୍କର ପ୍ରତିଭା ପୁଷ୍ପ କଢ଼ିରୁ ଝୁଣ୍ଟି ଝରି ପଡ଼ି ଥାଆନ୍ତା; ବ୍ରହ୍ମଚାରୀଜୀଙ୍କ ସାହାଯ୍ୟରେ ସେମାନେ ଆଜି ସୁଶିକ୍ଷିତ, ସୁପ୍ରତିଷ୍ଠିତ, ଧନୀ, ମାନୀ, ସମ୍ଭ୍ରାନ୍ତ । ତାଙ୍କର ପ୍ରତିଷ୍ଠାନ ଗଢ଼ିବା ଗଣନା କରିହେବ; କିନ୍ତୁ ଯେତେ ଜୀବନକୁ ସେ ସରସ ସୁନ୍ଦର କରି ଗଢ଼ିଛନ୍ତି, ତାହାର ସଂଖ୍ୟା କିଏ ରଖିଛି ? ଆଜି ତାଙ୍କର ପବିତ୍ର ଜନ୍ମ ତିଥିରେ କେବଳ ଏତିକି ମାତ୍ର କାମନା—

"ମାଟିର ପ୍ରଦୀପ ସମ
ବିତରିଲ ଯେ ସ୍ନିଗ୍ଧ କିରଣ,
ସହସ୍ର ଜୀବନ ଦୀପେ
ଶୋଭେ ତାହା ଚିର ଅନିର୍ବାଣ ।
ଅଲିଭା ଆଲୋକ ଶିଖା
ଲଭୁ ତବ କୀର୍ତ୍ତି ଶାଶ୍ୱତ,
ହେ ସୁଧୀ ଜୀବନ ସାଧି
ଭୁଞ୍ଜ ତୁମେ ଶତେକ ଶରତ ॥

● ଅଧ୍ୟାପକ
ସାମନ୍ତ ଚନ୍ଦ୍ରଶେଖର କଲେଜ
ପୁରୀ



# ଅଭିନନ୍ଦନ

ପଣ୍ଡିତ **ଉପେନ୍ଦ୍ର ତ୍ରିପାଠୀ**

ପ୍ରିୟ ବନମାଳୀ ବାବୁ,
ନିର୍ଭୀକତା ମନ୍ତ୍ରବଳେ ମୂର୍ଖ ଯୂଥ କରିଅଛ କାବୁ ।
ଏକନିଷ୍ଠ ଏ ଆତ୍ମ-ପ୍ରେରଣା
ଆସିବ ତୁମର ଦିନେ ନ ଥିଲା ମୋ ସୂଚ୍ୟଗ୍ର ଧାରଣା ।
ନିଃଶଙ୍କ ସଂଗ୍ରାମୀ,
ମୂକରେ ବାଚାଳ କରି କରିଅଛ ଆଜି ଅଗ୍ରଗାମୀ ।
ଅଗ୍ରଗାମୀ ଦଳ
ଉଦ୍‌ବୁଦ୍ଧ ତୁମରି ମନ୍ତ୍ରେ ଲଭି ଆଜି ପୂତ ଆତ୍ମବଳ ।
ସମ୍ପୃକ୍ତ ଶିକ୍ଷକ
ଊର୍ଦ୍ଧ୍ୱ ସ୍ତୂପେ ଖସିଆସି ଧରିଥିଲେ ପ୍ରାୟ ତଳ ପଙ୍କ,
ଅଙ୍କେ ନେଲ ତୋଳି,
ଲଗାଇଲ ମନଦୁଃଖେ ମମତାର ମଧୁର ଆର୍ଦ୍ଧୋଳି ।
ଦେଲ ଅଗ୍ନିମନ୍ତ୍ର,
ଯାହା ଯେନ ଭସ୍ମୀଭୂତ ଶାସକର ପ୍ରାୟ ତମତନ୍ତ୍ର ।
ଗଣତନ୍ତ୍ର ଧ୍ୱନି
ଗଣରେ ସୁଦୂରରେ ଥୋଇ ଧ୍ୱଜ ସ୍ଥଳେ ପ୍ରପଞ୍ଚ ଅବଶି ।
ଏ ଗଣ-ଚେତନା
ଜଗାଇଛ ନିଃସନ୍ଦେହେ ସତ୍ୟସ୍ଫୂରୀ ତବ ଉଦ୍ଦୀପନା ।
ଯାହା ହେଉ ଚାଲୁଥାଉ ତଥା·····
ବ୍ରହ୍ମସ୍ରଷ୍ଟା ଆଖ୍ୟା ତବ ସର୍ବୋପରି ହେଉ ଶୁଭଙ୍କରୀ ।

● ଉପେନ୍ଦ୍ର ସାହିତ୍ୟ ମନ୍ଦିର
ମୁରାରିପୁର, ପୋ: ହରିଦାସପୁର, କଟକ

# ଶିକ୍ଷାସଂଗଠନରେ ବ୍ରହ୍ମଚାରୀଙ୍କର ଭୂମିକା

ଶ୍ରୀ ଶତ୍ରୁଘ୍ନ ନାଥ

ସବୁ ଦଣ୍ଡାହାଡ଼ । ଏବେ ହୁଏ ତ ଓସାରିଆ ହେଲାଣି । ସେତେବେଳେ କିନ୍ତୁ ଜଣକ ଛଡ଼ା ଦି'ଜଣ ହାତ ଧରାଧରି ହୋଇ ଚାଲି ପାରିବେ ନାହିଁ । ଗଡ଼ୋଳଠାରୁ ଦୋହଲା ପଡ଼ୁଛି । ହାଡ଼କୁ ଲାଗି ଜମି ଓ ସେସବୁ ନାଳ କୂଳିଆ । ସେଥିପାଇଁ ଚାଷୀ ଜମିକୁ ଛାଡ଼ନ୍ତି ନାହିଁ । ଧାନ, ମୁଗ, ନଳତା, ଧନିଆ ଚାଷ ହାଡ଼କୁ ବି ଛାଡ଼େ ନାହିଁ । ୪୦ ବର୍ଷ ତଳର କଥା, ସେତେବେଳେ ବି ସେ ଜମିକୁ ବିଶ୍ରାମ ନ ଥାଏ । ଚାଷର ବିରାମ କାହିଁ, ଚାଷୀର ଆରାମ କାହିଁ ? ବିଶ୍ରାମ ଓ ଶ୍ରମ ମଧ୍ୟରେ ସମାଧାନ ଠିକ୍ ନୁହେଁ, ବରଂ ସମନ୍ୱୟର ପ୍ରଶ୍ନ ହାଡ଼-ଚାଲି-ବେଳରେ ମନକୁ ଘାଣ୍ଟି ପକାଏ । ଉତ୍ତର ସହଜରେ ଏପାଖ ବା ସେପାଖ ହୋଇଯାଏ । ମଝାମଝି ହାଡ଼ଟିଏ ପାଇବାର ଆଶା ଥିଲେ ବି ମିଳେ ନାହିଁ । କିନ୍ତୁ ଦୋହଲା ପହଞ୍ଚିବା ମାନେ ସମସ୍ତ ସନ୍ଦେହ ସତେ ଯେପରି ଦୂର ହୋଇଯାଏ । କଥାରେ ଆଦୌ ନୁହେଁ, ପୂରାପୂରି କାମରେ ସମନ୍ୱୟର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଶ୍ରମରେ ବିଶ୍ରାମ ଓ ଶ୍ରମରୁ ଶ୍ରମାନ୍ତରରେ ଆରାମ ପାଇବା ଆଶାରେ ଶ୍ରମର ଜୀବନ ଦୋହଲା ସହଯୋଗ ମିଡ଼ିଲ୍ ସ୍କୁଲରେ ଚାଲିଥାଏ । ଏ ପରୀକ୍ଷାର ପରୀକ୍ଷାର୍ଥୀ ହେଉଛନ୍ତି ବ୍ରହ୍ମଚାରୀ ।

ଦୁଇ ଅସରା ବର୍ଷା ଫଳରେ ପାଖ ପୋଖରୀର ପରିଷ୍କାର ପାଣି ଗୋଳିଆ ହୋଇ ଯାଇଛି । ଯାଗ-ଯୋଗ ଅଧିକ ବର୍ଷାର ସୂଚନା ଦିଏ । ଏଇ ବେଳ, ନୋହିଲେ ବୋରଖାଞ୍ଜିର ବଂଶ ବଢ଼ିଯିବ ଓ ଛାତ୍ରାବାସର ଜୀବନ ରୋଗଦାଉରେ ପଡ଼ିଯିବ । ମିଡ଼ିଲ୍ ସ୍କୁଲର ପଣ୍ଡିତ । ବ୍ୟାକରଣ ପଢ଼ାଇବାରେ ବଡ଼ ଆନନ୍ଦ । ଘଣ୍ଟା ବାଜିଲା ପାଠଶେଷ, ପଣ୍ଡିତଙ୍କ ପାଠ ସରି ନାହିଁ । ସେ ପାଣିରେ ପଡ଼ନ୍ତି ଓ ତାଙ୍କୁ ଏକ ପାଖିଆ ଘେରନ୍ତି ୬ଷ୍ଠ, ୭ମ ଶ୍ରେଣୀର ପିଲା-ମାନେ । ସ୍ୱାଙ୍କ ପଛକୁ ଟା ତଳ ଶ୍ରେଣୀର ପିଲା । ପେଟେ ପାଣି ଗୋଟିଏ ଦିନର ଦୁଇ ଅସରା ପରେ ବେକେ ହୋଇ ଯାଇଛି । ପଣ୍ଡିତଙ୍କ ହାତରୁ ମେଞ୍ଚା ମେଞ୍ଚା ଦଳ ହାତୁଁ ହାତେ ଚାଲିଯାଉଛି । ପଦ୍ମ ଘୁଞ୍ଚିଲା ପରି ପଣ୍ଡିତେ ଆଗେଇ ଯାଉଛନ୍ତି ଓ ପିଲାଙ୍କ ଧାଡ଼ି ଆଗୁଧାଡ଼ି ହେବାର ଲାଗିଛି । ଫଳରେ ପିଲାଏ ପାଦେ ପାଣିରୁ ଆଣ୍ଠୁଆ ପାଣିକୁ ଯାଉଛନ୍ତି । ଖିଆଲ ନାହିଁ, ଖାତିର ନାହିଁ । ପଣ୍ଡିତଙ୍କ ନଜର ଠିକ୍ ରହିଛି । ଏକ ପାଦିଆ ହାଡ଼ରେ ଚାଲି ଚାଲି ସନ୍ଦେହ ଘାରି ପକାଉଛି । ଏତିକିବେଳେ ଏ ଦୃଶ୍ୟ ପୂରାପୂରି ନୂଆ ପ୍ରଶ୍ନ ଆଣି ଦେଉଛି—ଗାନ୍ଧିଜୀଙ୍କ ମୌଳିକ ଶିକ୍ଷାର ବିଚାର ଏ ଦେଶରେ କଅଣ ନ ଥିଲା ? ତେବେ ଶିକ୍ଷାରେ ତାଙ୍କ ବିପ୍ଳବ କେଉଁଠି ?

ଶିକ୍ଷକ ସିନା ଶିଖାଇବେ । ଶିକ୍ଷାର୍ଥୀ ଶିଖିବେ । ସେ ବତାଇବେ, ପିଲାଏ ବୋଲ ମାନିବେ । ଏ ବିଭାଜନ ପଣ୍ଡିତଜୀଙ୍କର ନ ଥିଲା । ନୋହିଲେ ସେ ପାଣିରେ ପଡ଼ଥାନ୍ତେ କାହିଁକି ? ସେ ତ ଆଡ଼ରେ ଠିଆ ହୋଇଥାନ୍ତେ । ଛେଳି ପରି ପିଲେ ପାଣିକୁ ଡେଇଁଥାନ୍ତେ । ଏହା ହୁଅନ୍ତା ଖାଟେଣି ଓ କୋଡ଼ିହଣା ପରିଶ୍ରମ । ପିଲାଏ ଡରନ୍ତେ ଓ ଗାଁଲୋକେ କହନ୍ତେ,

ଆମ ପିଲା ଖଟୁଛନ୍ତି, କିନ୍ତୁ ପଡ଼ୁ ନାହାନ୍ତି । ପୋଥି ବାଇଗଣର ମଞ୍ଜି ସେଇଠି । ସେତେ ଉପାଡ଼ିଲେ ବି ନିର୍ମୂଳ ହେଉନାହିଁ । ଦୋହଲରେ ପଣ୍ଡିତ-ମହାଶୟଙ୍କର ବାଡ଼ିବାଇଗଣ ଗଛ । କଦଳୀ, ଅମୃତଭଣ୍ଡା, ଗୁଆ, ନଡ଼ିଆ ଆଦି ଫଳ ଓ ପନିପରିବା ଦେଖିବାକୁ ଗାଁଲୋକ ଆସୁଥିଲେ । ବଳାଣି ବାଇଗଣ ଗଛ ବୋଧହୁଏ ଦୋହଲରେ ନୂଆ । ପିଲାଏ କଞ୍ଚା ବଳାଣି ବାଇଗଣ ଖାଆନ୍ତି, ଏ ପରୀକ୍ଷା ନୂଆ ସେଠି । ଛାତ୍ରାବାସର ପିଲାମାନେ ପାଣି ଦିଅନ୍ତି ଓ ବଗିଚା କାମ କରନ୍ତି । . କାମର ତତ୍ପରତା ତାଙ୍କୁ ତତ୍ପର କରି ରଖିଛି ।

ନିଜ ଜନ୍ମସ୍ଥାନ "ଦୋହଲକୁ" ସେ ତାଙ୍କ ସାଧନାର ପ୍ରଥମ କ୍ଷେତ୍ର କରିଥିଲେ । ୧୯୩୨ ମସିହାରେ ସହଯୋଗ ସୂତ୍ରରେ ଦୋହଲ ସହଯୋଗ ମିଡ଼ିଲ୍ ସ୍କୁଲର ପ୍ରତିଷ୍ଠା । ସ୍ୱର୍ଗତ ରାଧାମୋହନ ଚକ୍ରବର୍ତ୍ତୀ ଓ ଶ୍ରୀ ବାଞ୍ଛାନିଧି ରଥ ଶିକ୍ଷକ ହୋଇ ସହଯୋଗ କରିଥିଲେ । ବ୍ରହ୍ମଚାରୀ ମହାଶୟ ଦରମା ନିଅନ୍ତି ନାହିଁ । ଜନ ସହଯୋଗରେ ନବ ପରିକଳ୍ପିତ ଶିକ୍ଷାନୁଷ୍ଠାନ ଗଢ଼ିଉଠିଲା । ମୁଗ, ଚାଉଳ, ନଡ଼ିଆ ଆଦି ସଂଗ୍ରହ କରି ସ୍କୁଲ ପାଣ୍ଠି ତିଆରି କରାଗଲା । ଏହି ସହଯୋଗର ମୂଳ ମନ୍ତ୍ର ହେଉଛି ପଣ୍ଡିତଜୀଙ୍କ ତ୍ୟାଗ, ସାଧନା, ସ୍ୱାବଲମ୍ବନ, ଅଦମ୍ୟ ପରିଶ୍ରମ ଓ ସଦାଚାରର ଏକ ନୂତନ ଆଦର୍ଶର ସ୍ୱପ୍ନ । ତାଙ୍କର ସଂଗଠନ ଶକ୍ତିର କୁହୁକ ସ୍ପର୍ଶ ସମସ୍ତଙ୍କୁ ପ୍ରାଣବନ୍ତ କରି ପକାଇଲା । ମେସ ଖର୍ଚ୍ଚ ମାସକୁ ମୋଟେ ଦୁଇଟଙ୍କା ଓ ସ୍କୁଲ ଦରମା ସେଥିରୁ ସହଜରେ ଅନୁମାନ କରିହେବ । କୌଣସି ପିଲା ଯଦି ଦରମା ବା ମେସ୍ ଖର୍ଚ୍ଚ ଦେଇ ନ ପାରନ୍ତି, ତେବେ ନିଜେ ଯାଇଁ ସେ ଅଭିଭାବକଙ୍କୁ ଏସବୁ କହି ସେମାନଙ୍କ ସହଯୋଗ ଲାଭ କରୁଥିଲେ । ଦରିଦ୍ର ପିଲାଙ୍କ ଅଭିଭାବକ ସ୍କୁଲ କାମ କରିଦେଲେ ଚଳୁଥିଲା ଓ ତାହା ପିଲାର ଶିକ୍ଷା ଖର୍ଚ୍ଚକୁ ଭରଣା ହେଉଥିଲା । ସ୍କୁଲ ସ୍କୁଲ ବୁଲି ପିଲା ସଂଗ୍ରହ କରି ସେମାନଙ୍କ ଦାୟିତ୍ୱ ବହନ କରିବା ପଣ୍ଡିତଜୀଙ୍କର ବ୍ରତ । ମାଇନର ପାଶ ପରେ ଏ ଦାୟିତ୍ୱ ସରେ ନାହିଁ । କିଏ କେଉଁ ହାଇସ୍କୁଲରେ ପଢ଼ିବ ଓ ସେଠାରେ ଖର୍ଚ୍ଚ କିପରି ତୁଲାଇବାକୁ ହେବ ଓ ପରିଶେଷରେ ଜୀବନରେ କିପରି ଥୟ ହେବ, ଏ ସମସ୍ତ କାର୍ଯ୍ୟ ହେଉଛି ପଣ୍ଡିତଜୀଙ୍କ ଶିକ୍ଷା ସଂଗଠନର ଅନ୍ତର୍ଭୁକ୍ତ ।

୧୯୩୨ ସାଲରୁ ୧୯୪୯ ସାଲ ପର୍ଯ୍ୟନ୍ତ ସଂଗଠନର ସ୍ପର୍ଶରେ ସ୍କୁଲର ଉନ୍ନତି ଖୁବ୍ ହେଲା । ଆଜିକାଲି ପରି ସେତେବେଳେ ପାଖାପାଖି ସ୍କୁଲ ନ ଥିଲା । ବହୁ ଦୂର ଦୂରାନ୍ତର ପିଲା ଓ ପିତାମାତା ଟାଣି ହୋଇ ଆସୁଥିଲେ । ଲୁଗା, ଆସନ, ସପ, ସତରଞ୍ଜି ବୁଣା, ସାବୁନ, ଫିନାଇଲ ତିଆରି ଏସବୁ କାମ ସେତେବେଳର ଧନ୍ଦା । ଏ ଧନ୍ଦାରେ ପଣ୍ଡିତ-ଜୀଙ୍କର ଆନନ୍ଦ । ଛାତ୍ରାବାସରେ ଚରିତ୍ର ଗଠନର ଦାୟିତ୍ୱ ସେ ନିଜେ ମୁଣ୍ଡାଇ ଥାନ୍ତି । ଏଥିରେ ଧନ୍ଦ ହୋଇ ପୂଜା ମାଇନର ବୃତ୍ତି ପରୀକ୍ଷାରେ ବିଦ୍ୟାଳୟର କୃତିତ୍ୱ ଥାଏ ।

ଆଦର୍ଶ କଥାରେ ରହିଲେ ନିଷ୍ଫଳ ହୁଏ । କେହି ଶୁଣନ୍ତି ନାହିଁ, କେବଳ ପବନରେ ଉଡ଼ିବୁଲେ । ପଣ୍ଡିତଜୀ ସେଥିପାଇଁ ନିଜେ ଆଗୁଆ । ସରଳ ଜୀବନରେ ତାର ନିଜ ମହତ୍ତ୍ୱ ରହିଛି । କିନ୍ତୁ ପଣ୍ଡିତଜୀଙ୍କର ସେଥିରେ ଆନନ୍ଦ । ଚଟି ବା ଯୋତା ପିନ୍ଧୁ ନ ଥିଲେ । ଛାତ୍ରା-ବାସରେ କେବଳ ଖଡ଼ମ୍ ମାଡ଼ୁଥିଲେ । ଖଦଡ଼ ଖଦି ଓ ଫତେଇ ଖଣ୍ଡେ ହେଲେ ଚଳିଯାଏ । ବାଲି ଶେଯରେ ବାଲି ତକିଆ ଉପରେ ଶୋଉଥିଲେ । ଏସବୁ ପ୍ରଭାବ ସେବେକାର ଛାତ୍ରଙ୍କ ଉପରେ ଜକଜକ ରହିଛି । ୩୦ ବର୍ଷରୁ ଅଧିକ ସମୟର ବ୍ୟବଧାନ ଏହାକୁ ତାଙ୍କ ମନରୁ, କଥାରୁ ଓ ଆଚରଣରୁ ଲିଭାଇ ପାରି ନାହିଁ । ଆଜିର ପାଠ କାଲିକି ଭୁଲି ଯାଉଛି । କାହିଁକି ? ମନସ୍ତତ୍ତ୍ୱ କିଛି କହିବ ନାହିଁ ? କିନ୍ତୁ ଏ ସ୍ମୃତି ଅଲିଭା କାହିଁକି ? ଆଜି ମୋର ପଡ଼ୋଶୀ, କିନ୍ତୁ ସେ ଦିନର ପଣ୍ଡିତଜୀଙ୍କର ଛାତ୍ର, ତାଙ୍କ ଅନୁଭବର ଅଭୁଲା କାହାଣୀ ବଖାଣିବାରେ କେତେ ଆନନ୍ଦ ପାଉଛନ୍ତି ।

ଶ୍ରୀ ବନମାଳୀ ପଣ୍ଡା କେବଳ ଦୋହଲୀର ଶିକ୍ଷକ ନୁହନ୍ତି । ସେ ଆଜି ଯଥାର୍ଥରେ ପଣ୍ଡିତଜୀ ଓ ବ୍ରହ୍ମଚାରୀ । ସେ ସାଧକ, ଶିକ୍ଷକ ଓ ସୈନିକ । ସାଧନାର କ୍ଷେତ୍ର ଆଉ

ଦୋହଲୀର ବାଟଘାଟରେ ନାହିଁ । ଏହା ଉତ୍କଳର ସମ୍ପଦ । ସବୁ ଦଣ୍ଡାର ସେ ପଥିକ ନୁହନ୍ତି, ଆମ ଗାଁଗଣ୍ଡାର ବିଲବାଡ଼ିରେ ବୁଲି ତାଙ୍କ ସାଧନା, ସହଯୋଗ, ସଂଯମ ଓ ସଙ୍ଗଠନକୁ ପ୍ରସାରିତ କରିଛନ୍ତି । ସଙ୍ଗଠିତ ଉଦ୍ୟମର ଫଳ ହେଉଛି ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଓ ଏହାର ବହୁମୁଖୀ କାର୍ଯ୍ୟ ।

ଦୋହଲା ସହଯୋଗ ମିଡ଼ିଲ ସ୍କୁଲ କେତେଦିନରୁ ମଡ଼େଲ ହାଇସ୍କୁଲ ହେଲଣି । ପଣ୍ଡିତ ମହାଶୟଙ୍କ ସାଧନା ସେଇଠି ରହିନାହିଁ । ସେହି ବିଦ୍ୟାଳୟର ପ୍ରତିଷ୍ଠା ସୁଦୂର-ପ୍ରସାରୀ ହୋଇଅଛି । ଏହାର ମୂଳମନ୍ତ୍ର ହେଉଛି ବୃଦ୍ଧଗୃହସ୍ଥଙ୍କ ସଂଗଠନର ଭୂମିକା ।

ତାଙ୍କର ବୟସ ବର୍ତ୍ତମାନ ତିନିକୋଡ଼ି ଦଶ ବର୍ଷ ହେବାକୁ ମାତ୍ର ବର୍ଷଟିଏ ବାକି ରହିଲା । ତଥାପି ସେ ନିର୍ଭୀକ ସୈନିକ । ଅନ୍ୟାୟ, ଅତ୍ୟାଚାରରୁ ଶିକ୍ଷକ, ଶିକ୍ଷାୟତନ ଓ ଶିକ୍ଷାର୍ଥୀଙ୍କୁ ମୁକ୍ତ କରିବା ତାଙ୍କର ବ୍ରତ । ମନେହୁଏ ତାଙ୍କ କାମ, କଥା, ଆଗ୍ରହ ଓ ବିଗ୍ରହ— ପ୍ରତ୍ୟେକଟିରେ ଡ଼ା: ଜାକିର ହୁସେନଙ୍କ ନିମ୍ନୋକ୍ତ ବାଣୀ ପ୍ରତିଧ୍ୱନିତ ହୁଏ ।

"The future Indian scho l will not perpetrate the stupid tyranny of requiring its boys and girls bursting with active energy to sit silent and sombre brooding over books and swallow irrelevant unwanted, unassimilated information, getting passively educated by others grace

● ଏଷ୍ଟାବ୍ଲିସ୍‌ମେଣ୍ଟ ଅଫିସର,
ଉତ୍କଳ ଇଉନିଭରସିଟି, ବାଣୀବିହାର



# ମୋ ସାର୍ ପଣ୍ଡିତେ

ଶ୍ରୀ ବୈଷ୍ଣବ ଚରଣ ପରିଡ଼ା

ବନମାଳୀ ବ୍ରହ୍ମଗୁରୁ କହିଲେ ହୁଏତ କେହି କେହି ତାଙ୍କୁ ଭଲରୂପେ ଚହ୍ନି ପାରନ୍ତି ନାହିଁ, ମାତ୍ର ବନମାଳୀ ପଣ୍ଡିତେ କହିଲେ ସମସ୍ତେ ଘରେ ଘରେ ଆବାଳ-ବୃଦ୍ଧବନିତା ନିର୍ବିଶେଷରେ ଜାଣନ୍ତି । ଓଡ଼ିଶାର ତଥା କେନ୍ଦ୍ରାପଡ଼ା ଓ ବାଲେଶ୍ୱର ଅଞ୍ଚଳରେ ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ଶିକ୍ଷା ଆନ୍ଦୋଳନର ସେ ଜଣେ ଅଗ୍ରଗଣ୍ୟ କର୍ଣ୍ଣଧାର, ଏକଥା ସମସ୍ତେ ଉଣା ଅଧିକେ ଅନୁଭବ କରନ୍ତି । ତେଣୁ ଜଣେ ଶିକ୍ଷାବିତ୍ ଓ ଜଣେ ଆଦର୍ଶ ମଣିଷ ଯେ କି ଜାତୀୟତାବାଦୀ ଚେତନାରେ ସର୍ବଦା ଉଦ୍‌ବୁଦ୍ଧ ଏବଂ ମହାମାନବିକତାର ସ୍ପନ୍ଦନରେ ସର୍ବଦା ଜାଗ୍ରତ ଓ ସକ୍ରିୟ, ସେହି ଋଷିପ୍ରତିମ ପଣ୍ଡିତଙ୍କର ଗାଥା ଅନେକ ଓ ତାର ସମ୍ୟକ୍ ଆଲୋଚନା ଏକ ବିଶାଳ ଗ୍ରନ୍ଥର ବିଷୟବସ୍ତୁ । ମାତ୍ର ଦୁଃଖ ଓ ସୁଖ ଭିତରେ ଯାହା ଅନୁଭବ କରିଛି, ସେହିପରି କେତୋଟି କଥା ଲେଖି ସେହି ମହାପୁରୁଷଙ୍କ ଚରଣ ତଳେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଓଡ଼ିଶାରେ ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ଶିକ୍ଷାର ପ୍ରସାର ସ୍ୱାଧୀନତା ପରବର୍ତ୍ତୀ ଘଟଣା । ତେବେ ମଧ୍ୟ ଏ ପର୍ଯ୍ୟନ୍ତ ଆମେ ଆମର ଚତୁର୍ଥ ଯୋଜନାର ଅଟକଳ ଅନୁଯାୟୀ ୫୦ ହଜାର ମାଟ୍ରିକ୍ୟୁଲେଟ ବାର୍ଷିକ ଉତାରି ପାରିନାହୁଁ । ୧୯୩୦ କଂଗ୍ରେସ ଅଧିବେଶନ ପରେ ପରେ ଯେତେବେଳେ ଭାରତରେ ଜାତୀୟତାବାଦୀ ମୁକ୍ତି ସଂଗ୍ରାମ ବ୍ରିଟିଶରାଜ ବିରୁଦ୍ଧରେ ସକ୍ରିୟ ହୋଇ ଉଠୁଥିଲା, ଯେତେବେଳେ ଓଡ଼ିଶା ମଧ୍ୟ ସେହି ସର୍ବ ଭାରତୀୟ ସ୍ରୋତରେ ନିଜକୁ ହରାଇଥିଲା । ଶିକ୍ଷାର ପ୍ରସାର ନ ହେଲେ ସ୍ୱାଧୀନତା ଆନ୍ଦୋଳନ ବ୍ୟର୍ଥ ହେବ । ସେଥିଯୋଗୁଁ ଭାରତର ଅନେକ ସ୍ଥାନରେ ଜାତୀୟତାବାଦୀ ଢାଞ୍ଚାରେ ଶିକ୍ଷାନୁଷ୍ଠାନମାନ ଗଢ଼ି ଉଠିଥିଲା । ଦୋହଲୀର ଗାନ୍ଧୀ ପଣ୍ଡିତେ ସେହି ସମୟରେ ଊଣେଇଶିଶହ ବତିଶ ମସିହା ବେଳକୁ ଦୋହଲୀ ସହଯୋଗ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରି ସେଠାରେ ଜାତୀୟତାବାଦୀ ଢାଞ୍ଚାରେ ଶିକ୍ଷା ପ୍ରଦାନ କରିବାକୁ ଆରମ୍ଭ କରିଥିଲେ । ପଣ୍ଡିତେ ଥିଲେ ଦୋହଲୀ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରାଣକେନ୍ଦ୍ର । ସେତେବେଳେ ଆଖପାଖ ପାଞ୍ଚମାଇଲ ଆବ୍ୟାନ୍ତରେ ମଧ୍ୟ-ଇଂରାଜୀ ବିଦ୍ୟାଳୟଟିଏ ନଥିଲା । ଯଦି କେହି ମାଇନର୍ ପଢ଼ିବେ ସେମାନେ ଅସୁରେଶ୍ୱର ବା କେନ୍ଦ୍ରାପଡ଼ା ଯାଇ ପଢ଼ିବେ । ଦୋହଲୀ, ଗୁନ୍ଦୋଳ, ଦାନପୁର ଓ ତତ୍‌ପାର୍ଶ୍ୱବର୍ତ୍ତୀ ଧୋୟା ଓ କେନାଲ ସେପଟ ଅଞ୍ଚଳର ଶିକ୍ଷା ପ୍ରସାରର ଏକମାତ୍ର କେନ୍ଦ୍ର ଦୋହଲୀ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଏହାର ପ୍ରାଣ-ପ୍ରତିଷ୍ଠାତା ବନମାଳୀ ବ୍ରହ୍ମଗୁରୁ । ମାଇନର୍ ବା ମଧ୍ୟ-ଇଂରାଜୀ ବିଦ୍ୟାଳୟ ପାଇଁ ସେତେବେଳେ କେନ୍ଦ୍ରାପଡ଼ା କେନ୍ଦ୍ରରେ ପରୀକ୍ଷା ହେଉଥାଏ । ଦୋହଲୀର ସେହି ଆମ୍ର କୁଞ୍ଜ ମଧ୍ୟବର୍ତ୍ତୀ ଗୋଟିଏ ଘରଟିରେ ପଣ୍ଡିତେ ଓ ପରୀକ୍ଷାର୍ଥୀ—କାହାର ବାପ ନାହିଁ, କାହାର ବାପା

ସୁଦୂର କଲିକତାରେ ବା ଅନ୍ୟ କାହାର ଅଭିଭାବକ ପାଠର ଧାର ଧାରେ ନାହିଁ—ପିଲାର ପାଠ ଓ ପଣ୍ଡିତେ ଓତପ୍ରୋତ ଭାବରେ ଜଡ଼ିତ । ପଣ୍ଡିତେ ସମସ୍ତଙ୍କର ବନ୍ଧୁ, ପଥପ୍ରଦର୍ଶକ ଓ ଦାର୍ଶନିକ । ଦ୍ୱିତୀୟ ମହାସମର ପରେ ପରେ ଭାରତ ସ୍ୱାଧୀନତା ଲାଭର ଆଶା 'ଭାରତ ଛାଡ଼' ଆନ୍ଦୋଳନ ପରେ ଘନେଇ ଆସିଲା । ଭାରତ ସ୍ୱାଧୀନ ହେବ, ଗୋରା ଲୋକେ ଶାସନ ଛାଡ଼ି ଚାଲିଯିବେ, କଳାଲୋକେ ତାଙ୍କ ସ୍ଥାନ ପୂରଣ କରିବେ, ଏହା ସମସ୍ତେ ଭାବୁଥିଲେ । ଊଣେଇଶ ଶହ ଚୌଅାଳିଶ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଓଡ଼ିଶାରେ ଉଚ୍ଚ ମାଧ୍ୟମିକ ଶିକ୍ଷାର ପ୍ରସାର ପାଇଁ ଯୋଗାଇ ଥିଲା, ପ୍ରଚୁର ପ୍ରେରଣା । ଊଣେଇଶ ଶହ ଛୟାଳିଶରେ ପଣ୍ଡିତେ ଦୋହଲୀ ଆଦର୍ଶ ଉଚ୍ଚ-ଇଂରାଜୀ ବିଦ୍ୟାଳୟ ଆରମ୍ଭ କରିଥିଲେ । ଭାରତ ସ୍ୱାଧୀନତା ଲାଭର ଏକବର୍ଷ ପରେ ଊଣେଇଶ ଶହ ଅଠ ଚାଳିଶ ମସିହାରେ ଦୋହଲୀ ଆଦର୍ଶ ଉଚ୍ଚ-ଇଂରାଜୀ ବିଦ୍ୟାଳୟରୁ ପ୍ରଥମେ ପ୍ରାବେଶିକ (Matriculates ) ମାନେ ବାହାରିଲେ । ସେହି ସମୟରେ ପଣ୍ଡିତଙ୍କର ତ୍ୟାଗର ନମୁନା ଯେ ଦେଖିଛି ଓ ଅଙ୍ଗେ ଲଗାଇଛି, ସେ କେବଳ କହିପାରିବ ସେ କି ଚରମ ତ୍ୟାଗ କରିଛନ୍ତି । ସ୍ୱାଧୀନ ଭାରତରେ ଆଜି ଶିକ୍ଷା ପ୍ରସାର ସରକାରଙ୍କର ଏକମାତ୍ର ମୌଳିକ ଲକ୍ଷ୍ୟ ହୋଇଥିବାରୁ, ଉଚ୍ଚ ଇଂରାଜୀ ବିଦ୍ୟାଳୟଟି ସ୍ଥାପନ କରିବା ହୁଏ ତ ସହଜ ହୋଇପାରିଛି । ମାତ୍ର ପରାଧୀନ ଭାରତରେ ଏପରି ଏକ ଅନୁଷ୍ଠାନ ଆରମ୍ଭ କରି ତାକୁ ପ୍ରାଣବନ୍ତ ଓ ସମୃଦ୍ଧ କରିବାର ତ୍ୟାଗ ଆଜିଠାରୁ ଯେ ଅଧିକ, ଏହା ନିଃସନ୍ଦେହ । ଗାନ୍ଧିଜୀଙ୍କ ସେହି ମହତ୍ ବାଣୀ, 'ଗାଁକୁ ଫେରିଚାଲ'ର ସଫଳ ରୂପାୟନ ନିମିତ୍ତ ଗାଁଗହଳରେ ଉଚ୍ଚ-ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିବା ଏକ ଆଦର୍ଶଗତ ଆହ୍ୱାନ ଥିଲା ଓ ପଣ୍ଡିତେ ସେହି ଆହ୍ୱାନର ଉତ୍ତର ବାସ୍ତବ କ୍ଷେତ୍ରରେ ଦେଇଥିଲେ ।

ମୋର ଠିକ୍ ମନେଅଛି, ୧୯୪୭ ମସିହା ଅଗଷ୍ଟ ପନ୍ଦର । ଭାରତ ସ୍ୱାଧୀନ ହୋଇଥାଏ, ପଣ୍ଡିତଙ୍କ ମନରେ କି ଖୁସି ! ସ୍କୁଲରେ ପ୍ରାଣ ପ୍ରାଚୁର୍ଯ୍ୟ ଭରା ଉତ୍ସବ ଭୋଜିରେ ପଣ୍ଡିତେ ସମସ୍ତଙ୍କୁ ପରଷୁ ଥାଆନ୍ତି । ସ୍ୱାଧୀନତା ପ୍ରେମୀ, ଦେଶସେବକ, ଗାନ୍ଧୀବାଦର ପୃଷ୍ଠପୋଷକ ଓ ସର୍ବୋପରି ଆଦର୍ଶ ଶିକ୍ଷକ ବନମାଳୀ ପଣ୍ଡିତଙ୍କୁ ସେଦିନ ଯେପରି ଖୁସି ହେବାର ମୁଁ ଦେଖିଅଛି, ତାହା ପୂର୍ବରୁ ବା ପରେ କେବେ ଦେଖିନାହିଁ ।

ବାପୁଜୀଙ୍କ ତିରୋଧାନ ଦିବସରେ ପଣ୍ଡିତେ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ୁଥାଆନ୍ତି । ଗାନ୍ଧିଜୀଙ୍କ ଉତ୍କଳ ପଦଯାତ୍ରା ସମୟରେ ପଣ୍ଡିତଙ୍କର ଯେଉଁ ଚଦର ଖଣ୍ଡିକ ଉପରେ ସେ ବସିଥିଲେ, ସେହି ଖଣ୍ଡିକ ଧରି ସେ କୋମଳମତି ଶିଶୁଙ୍କ ପରି ଦିନ ଦିନ ଧରି କ୍ରନ୍ଦନ କରୁଥିବାର ମର୍ମସ୍ପର୍ଶୀ ଦୃଶ୍ୟ ଏବେ ମଧ୍ୟ ପୂର୍ବର ସେହି ସ୍ମୃତିକୁ ଜାଗରୂକ କରାଏ । ଆଜିକାଲି ଆସ୍ତେ ଆସ୍ତେ ବିଳୟ ଆଦର୍ଶର ଅବସାନ ହେଉଛି ଶିକ୍ଷକଗୋଷ୍ଠୀ ପାଖରେ କିଛି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିନାହିଁ, ଛାତ୍ର ଗୋଷ୍ଠୀ କଣ ବା ଶିଖିବେ ?

ମଣିଷ ଗଢ଼ିବା ପଣ୍ଡିତଙ୍କର ଧର୍ମ । ସେ ଜଣେ ମଣିଷ ଗଢ଼ା ଯନ୍ତ୍ରୀ । ସୁପ୍ତ ଓ ଅବହେଳିତ ପ୍ରତିଭାକୁ ବିକଶିତ କରିବା ନିମିତ୍ତ ତାଙ୍କର ଚେଷ୍ଟା ଏବେ ମଧ୍ୟ ଅବ୍ୟାହତ ରହିଅଛି ।

ପଣ୍ଡିତେ ଦୋହଲୀ ଛାଡ଼ିଲେ, ନାଟକର ନାୟକ ରଙ୍ଗମଞ୍ଚରୁ ଅପସାରିତ ହୋଇଗଲେ । କେତେଦିନ କୋଠପଦାରେ ତାଙ୍କର ଜୀବନ କଟିଲା । ଶେଷରେ ସେ ଆଜି ଅବସ୍ଥା ଚକ୍ରରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ସମ୍ପାଦକ । ଅବହେଳିତ ଶିକ୍ଷକଗୋଷ୍ଠୀ ଉପରେ ଯେଉଁ ଅତ୍ୟାଚାର ଓ ଅନ୍ୟାୟ ହେଉଛି, ତାର ପ୍ରତିରୋଧ ନିମିତ୍ତ ସେ ବଦ୍ଧପରିକର । ଯେବେ ଶିକ୍ଷକ ଗୋଷ୍ଠୀ ତାର ଆଦର୍ଶକୁ ଠିକ୍ ରଖୁ, ତେବେ ଯାଇ ତାର ଦୁଃଖ ଓ ଦୁର୍ଦ୍ଦଶାର ଅପସାରଣ ହେବ, ଏହି ଦର୍ଶନ ଦ୍ୱାରା ସେ ଉଦ୍‌ବୁଦ୍ଧ । ଶିକ୍ଷକ ଦର୍ପଣରେ

ପ୍ରତି ପୃଷ୍ଠାରେ ତାଙ୍କ ଲେଖମାରେ ଏହି ଆଦର୍ଶର ପ୍ରତିଷ୍ଠା ନିମିତ୍ତ ସେ ପ୍ରଚେଷ୍ଟା ଚଳେଇଛନ୍ତି ।

ଶିଶୁ ସାହିତ୍ୟିକ ହିସାବରେ ସେ ତାଙ୍କର ଅନବଦ୍ୟ କୃତିତ୍ୱ ନିମିତ୍ତ ଏ ଦେଶରେ ସୁପରିଚିତ । ତେବେ ମନରେ ଏକ ପ୍ରଶ୍ନ ଉଠେ, ଏହି ତେଜୋଦୃପ୍ତ ବ୍ରହ୍ମନିଷ୍ଠ, କର୍ମକୁଶଳ, ଉଦ୍ୟୋଗୀ ଓ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ପଣ୍ଡିତେ ଯେଉଁ ଆଦର୍ଶ ଓ ମୂଲ୍ୟବୋଧର ସୃଷ୍ଟି ଓ ପ୍ରତିଷ୍ଠା ନିମିତ୍ତ ଆପ୍ରାଣ ପ୍ରଚେଷ୍ଟା ଚଳାଇଛନ୍ତି, ତାହାର ମୂଲ୍ୟାଙ୍କନ କଣ କେହି କରିବେ ନି ? 'ବନମାଳୀ ଜୟନ୍ତୀ'ର ଆୟୋଜନ ବୋଧହୁଏ ଏହାର ଏକ ସଂକ୍ଷିପ୍ତ ଉତ୍ତର ।

● ଅଧ୍ୟାପକ
ରିଡ଼ର, ଅର୍ଥନୀତି ବିଭାଗ, ରେଭେନ୍‌ସା କଲେଜ
କଟକ



# ଜୟନ୍ତୀ ବାସରେ ପ୍ରଣତି ଘେନ

ଶ୍ରୀ ହରିଶ୍ଚନ୍ଦ୍ର ଦେ

ବିଷ ଜର୍ଜ୍ଜର ଶତାବ୍ଦୀ ବକ୍ଷେ
ଦୁର୍ଗତି ଆଜ ମାରୁଛି ହାଇ,
ଦୁର୍ବିସହ ଏ ଜୀବନେ ଗ୍ରାସିଛି
ହୀନ ସ୍ୱାର୍ଥର ବହଳ ଛାଇ ।
ଘୁଣଖିଆ ଏହି ସମାଜ ଜୀବନେ
ବଢ଼ିଗଲେ ହନ୍ତା, ଘାତକ, ଖୁଣୀ,
ମଣିଷ ପରଖା ମଣିଷ ବିରଳ
ଅଭାବ ଆଜିରେ ଅସଲ ଗୁଣୀ ।
ଏ ବେଳରେ ଏହି ଅଭାବ ଯୁଗରେ
ନିଃସ୍ୱାର୍ଥ କର୍ମୀ ହେ ବ୍ରହ୍ମଚାରୀ,
ପ୍ରଣତି ଘେନ ମୋ ଜୟନ୍ତୀ ବାସରେ
ମାନବ-ଧର୍ମ-ପ୍ରତିଭାଧାରୀ ।
ସଂଗ୍ରାମୀ ଆମେ ପାଉନାହୁଁ ଏବେ
ନିର୍ଯ୍ୟାତନାର ତାମସୀ ରାତି,
ଆଗେଇ ଚାଲ ହେ ଜୀବନ ଯାତ୍ରୀ
ଆଣିବା ପାଇଁକି ନବୀନ ଭାତି ।
ଶିକ୍ଷକ କୁଳ ମର୍ମ ଅତ୍ୱଏ
ଶିକ୍ଷା ବାସେ ଯେ ଅତ୍ୟାଚାରୀ,
ଶିକ୍ଷକ ଦର୍ପଣେ କାହାଣୀ ତାହାର
ଲେଖିଗଲ ସିନା ବ୍ରହ୍ମଚାରୀ ।
ଶିକ୍ଷକ ଜାତି ଭାଗ୍ୟ ଗଗନେ
ନିବିଡ଼ ତମସା ରହିଛି ଘେରି,
ଜଠର ତାହାର ଜଳୁଛି ଏବେ ବି
ହୃଦୟେ ବାଜୁଛି ବଜ୍ର ଭେରୀ ।

କର୍ଣ୍ଣ ଏବେ ବି ବଧିର କରୁଛି
ନ୍ୟସ୍ତସ୍ୱାର୍ଥ ଶକୁନ ହସ,
ମର୍ମ ଏବେ ବି ଅଧୀର କରୁଛି
ଜୀର୍ଣ୍ଣ ଶୀର୍ଣ୍ଣ ବିବେକ ପ୍ରାସ ।
ଜାଳୁଛି ଏବେ ବି ଦାଉ ଦାଉ ନିଆଁ
ଦୁଃସ୍ଥ ଶିକ୍ଷକ ପଞ୍ଜରା କାଠି,
ଭାଂଗି ଯାଉଛି ଆଶାର ସଉଧ
ଘାତ ପ୍ରତିଘାତେ ପାରୁନି ଉଠି ।
ଲିଭି ଲିଭି ଯାଏ ଜୀବନ ସଳିତା
ତେଲ ଲୁଣ ଦାଉ ଅଭାବ ଘାତେ,
ମାଡ଼ି ମାଡ଼ି ଆସେ ଘନ ଅନ୍ଧାର
ଅରୁଣ ଜୀବନ କରୁଣ ପ୍ରାତେ ।
ବିଷ ଦଗ୍ଧ ଏ ଧରଣୀ ବୁକୁରେ
ଝରେ କଟିକଟି ତମସା ରାତି,
ଦୁଃଖ ଦୁର୍ଦ୍ଦଶା ଝଞ୍ଜା ବତାସେ
ଶିକ୍ଷକ ଆଜ ମରଣ ଯାତ୍ରୀ ।
ଏଇ ଗୁରୁକୁଳ ମଶାଣୀ ଭୂଇଁରେ
କାପାଳିକ ତୁମେ ଲେଖନୀ କରେ,
କି ତନ୍ତ୍ର ସାଧିଲ ବୃଦ୍ଧ ବୟସେ
ବୁକୁ କୋଣୁ ଅଗ୍ନି ଝରଣା ଝରେ ।
ନିଃସ୍ୱ ଜୀବନ କ୍ଷୁବ୍ଧ ବେଳାରେ
ଦରଦ-ସିକ୍ତ ଅଗ୍ନିଲେଖା,
ମୋହନ ମନ୍ତ୍ରେ ମୃତ୍ୟୁ ଦୁଆରେ
ଡାକେ ସଞ୍ଜିବନୀ ଅମିୟ ଶିଖା ।

ବିପ୍ଳବୀ ! ତୁମ ବିପ୍ଳବ ଶିଖା
ଜଳି ଉଠୁ ଆଜି ଅମିତ ତେଜେ,
ଧ୍ୱଂସ କରି ଏ ଜାତିର ଜୀବନେ
ସ୍ୱାର୍ଥ-କାଳିମା ବ୍ୟର୍ଥ-ବ୍ୟାଜେ ।
ବ୍ରହ୍ମଋଷି ହେ, ବଜ୍ର ଲେଖନୀ
ଗର୍ଜିଉଠୁ ହେ ବଜ୍ର ଘୋଷେ,
ଭ୍ରଷ୍ଟାଚାରର କନକ ଦୁର୍ଗ
ଟୋଳା ନ ହେଉ ଏ ବିଦ୍ୟାବାସେ ।
ଅମିତ ବିକ୍ରମେ ଆଗେଇ ଚାଲ ଏ
ଦୁଃଖ ଦୁର୍ଦ୍ଦଶା ମୋଚନ ଲାଗି,

ପ୍ରଶାନ୍ତି ଜଣାଏ ଜୟନ୍ତୀରେ ଆଜି
ସମାଜସେବୀ ହେ କର୍ମଯୋଗୀ ।
ତୁମ 'ହୁକେ ହୋ', 'ବନମନକଥା',
'ଚରିତ ଚରିନ୍ଦ', 'ଗୁଣ ଦର୍ପଣ'
'କିଏ କେମିତି' ଓ 'ଭକ୍ତ ଭଗବାନ'
କରୁଥିବ ସଦା ଜ୍ଞାନ ଅର୍ପଣ ।
ଗୁରୁକୁଳ ଶ୍ରେଷ୍ଠ ସତ୍ୟବ୍ରତ ହେ !
ମୃତ୍ୟୁଞ୍ଜୟୀ ତୁମେ ଏ ଧରା ତଳେ,
ଅମଳିନ ତୁମ ନିଷ୍ଠା ସାଧନା
ଚିର ଭାସ୍ୱର ହୋଇ ସେ ଜଳେ ।

ସଭାପତି,
ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ
ଜଳେଶ୍ୱର ମ. ଇ. ସ୍କୁଲ



# ପଶ୍ୟେମ ଶରଦଃ ଶତମ୍

**ଶ୍ରୀ ବସନ୍ତ କୁମାର ସାମଲ**

କେତେ ମସିହା କେଜାଣି । ଚୌଧୁରୀ ରାଧାନାଥ ବିଦ୍ୟାପୀଠର ମୁଁ ଛାତ୍ର । ଛାତ୍ରାବାସରେ ରହୁଥାଏ । ଦିନେ ଶୁଣିଲି, ବନମାଳୀ ବ୍ରହ୍ମଚାରୀ ଆସୁଛନ୍ତି । ଛାତ୍ରାବାସର ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ବୃନ୍ଦାବନ ପଣ୍ଡିତେ ଓ ପ୍ରଧାନ ଶିକ୍ଷକ ଶଙ୍କର ବାବୁଙ୍କ ସହିତ ଆଲୋଚନାରୁ ସ୍ପଷ୍ଟ ହେଲା—କାହିଁକି ଆସୁଛନ୍ତି, କଣ ସେ କରନ୍ତି । ଅନେକ କୌତୂହଳୋଦ୍ଦୀପକ ପ୍ରଶ୍ନ ଅନ୍ତେବାସୀମାନଙ୍କ ମନରେ ସୃଷ୍ଟି ହୋଇଥାଏ । ଶେଷରେ ଆମେ ଦେଖିବାକୁ ପାଇଲୁ—ଏଇ ଗୌରବର୍ଣ୍ଣ, ସୁସ୍ଥ ସତେଜ, ବିନୟୀ, ନମ୍ର ଭଦ୍ର, ଆଉ କର୍ମଯୋଗୀ ଲୋକଟିକୁ—ଦେହରେ ଖଣ୍ଡେ ଶୁଭ୍ର ଖଦଡ଼ ଚଦର ଆଉ ଖଦଡ଼ ଧୋତି ମାତ୍ର ।

ତାପରେ ଅତି ନାଟକୀୟ ଭାବରେ ସମ୍ପର୍କ ଆସେ ୧୯୭୧ ମସିହା ବେଳକୁ ! ସେ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ସମ୍ପାଦକ—ମୁଁ ଏକ ଅବହେଳିତ ଘରୋଇ ମଧ୍ୟ ଇଂରାଜୀ ବିଦ୍ୟାଳୟର ଶିକ୍ଷକ । ପରିଚୟ ହୁଏ ସଂଘର ମୁଖପତ୍ର "ଶିକ୍ଷକ ଦର୍ପଣ" ମାଧ୍ୟମରେ । ଦେଖିବାର ପ୍ରବଳ ଆଗ୍ରହ ସୃଷ୍ଟି ହୋଇଥାଏ । ପୂର୍ବ ସ୍ମୃତିର ପୁନରାବୃତ୍ତିରେ ମନ ଉତ୍କଣ୍ଠାପୂର୍ଣ୍ଣ । ବିଦ୍ୟାଳୟର ପୁରସ୍କାର ବିତରଣ ଉତ୍ସବରେ ପୌରୋହିତ୍ୟ କରିବାକୁ ଚିଠି ଲେଖିଲି । ସେ ସମ୍ମତି ପ୍ରକାଶ କରି ପତ୍ର ଦେଲେ । ଯା' ହେଉ ଶିକ୍ଷକ ସଂଘର ସେକ୍ରେଟେରୀ ଆସିବେ···ଶିକ୍ଷକ ମାନଙ୍କ ମଧ୍ୟରେ ଗୁରୁ ଉତ୍ତେଜନା ସୃଷ୍ଟି ହୋଇଥାଏ । ହୁଏ ତ ଶକ୍ତିଶାଳୀ, ଦୁର୍ଦ୍ଧର୍ଷ, ଠାଉଟର, ଅବାଞ୍ଛିତ କମିଟି ବିରୁଦ୍ଧରେ ଏହା ଏକ ଚ୍ୟାଲେଞ୍ଜ ହେବ । ସଭାପତି ଶ୍ରୀ ବ୍ରହ୍ମଚାରୀ, ଗ୍ରାମବାସୀ ବିଶିଷ୍ଟ ଭଦ୍ରବ୍ୟକ୍ତି ଏବଂ ଶିକ୍ଷକ ଓ ଛାତ୍ରମାନଙ୍କୁ ତାଙ୍କର ଅଗ୍ନିବର୍ଷୀ ଭାଷଣ ଶୁଣାଇବା ଲାଗି ପ୍ରସ୍ତୁତ ଥାଆନ୍ତି । ମୋତେ ସଭାରେ କିଛି କହିବାକୁ ଇଂଗିତ ଦେଲେ । ମୁଁ ମୋର ବକ୍ତବ୍ୟ ଶେଷ କରି ଯଥା ସ୍ଥାନରେ ବସିଲି । ବ୍ରହ୍ମଚାରୀଙ୍କ ବକ୍ତୃତା ଆରମ୍ଭ ହେଲା । କି ଓଜସ୍ୱିନୀ ସେ ଭାଷା ! ତାଙ୍କର ଗୁରୁ ଗମ୍ଭୀର କଣ୍ଠ ସ୍ୱର ସଭାସଦଙ୍କୁ ଚମତ୍କୃତ କରି ଦେଲା । ଏତେ ସ୍ପଷ୍ଟ, ସରଳ, ନିର୍ଭୀକ, ତାତ୍ପର୍ଯ୍ୟକ ଆଉ ଆବେଗମୟ ଭାଷଣ କମ ଲୋକ ଓଡ଼ିଶାରେ ଦେବା ଦେଖିଛି । ସେଦିନ ତାଙ୍କୁ ଜଣେ ସ୍ପଷ୍ଟବାଦୀ ବକ୍ତା ଭାବରେ ମନେ ମନେ ନମସ୍କାର ଜଣାଇ ଅଫିସ ଭିତରକୁ ଆସିଲି ।

ଏଇ ସୁସଂଯତ ନିର୍ଭୀକ ଆଦର୍ଶବାନ ପୁରୁଷ ବ୍ରହ୍ମଚାରୀଙ୍କର ବହୁମୁଖୀ ପ୍ରତିଭାର ଗୋଟିଏ ଧାରା ସଂପର୍କରେ ଆଗରୁ ଶୁଣିଥିଲି···ସେ ଜଣେ ନିଃସ୍ୱାର୍ଥ ଦେଶସେବୀ । ତାପରେ ଜାଣିଲି···ସେ ଜଣେ ସୁଯୋଗ୍ୟ ସଂପାଦକ—ବାଗ୍ମୀ ବିଶ୍ୱନାଥ କରଙ୍କ ସଂପର୍କରେ ଆସି ସେ ଏପରି ମହିମାନ୍ୱିତ ହୋଇ ଉଠିଛନ୍ତି । ଏଇ ଜ୍ୱଳନ୍ତ ବ୍ୟକ୍ତିତ୍ୱର ପ୍ରତୀକ ବ୍ରହ୍ମଚାରୀଙ୍କ ସାନ୍ନିଧ୍ୟ ପାଇଁ ମୁଁ ଆଗରୁ ବ୍ୟାକୁଳ ଥିଲି । ସେ ସୁଯୋଗ ଆସିଲା—ସେ ଅଫିସରେ ପହଞ୍ଚିଲେ । ବିଶ୍ରାମ ନେଲେ । ଦିନ ଥାଏ । ମୁଁ ସୁବିଧା ଅସୁବିଧା ବିଷୟ ବୁଝୁଥିଲି । ପାଖକୁ

ମୋତେ ଡାକଲେ । ଆଦର ଆଉ ପିତୃ ସୁଲଭ କଣ୍ଠରେ କହିଲେ, "ବସନ୍ତ ! ତମେ ଜଣେ ସୁଲେଖକ ବୋଲି ଲେଖା ମାନଙ୍କରୁ ଜାଣିଥିଲି । ମାତ୍ର ଜଣେ ସୁବକ୍ତା ବୋଲି ମୋର ଧାରଣା ନଥିଲା ।" ମୁଁ କେବଳ ଆଶ୍ଚର୍ଯ୍ୟ ନେତ୍ରରେ ତାଙ୍କର ଗମ୍ଭୀର ମୁଖ ମଣ୍ଡଳକୁ ଚାହିଁ ରହିଲି । ମୋ ଆଖିରେ ଆନନ୍ଦାଶ୍ରୁ···ମନରେ ମୁଁ ଗୋଟାଏ ସୁବକ୍ତା । ସେଇଦିନୁ କଟକ, ଜୟପୁର, ସମ୍ବଲପୁରର ଅନେକ ଅଞ୍ଚଳରେ ବକ୍ତୃତା ଦେବାର ସୁଯୋଗ ପାଇଛି । ସେଇ ଅବସରରେ ବ୍ରହ୍ମଶ୍ରୀଙ୍କର କଥା ମୋ ମନରେ ଉତ୍ସାହ ଦେଇଛି । ମନେ ହୋଇଛି, ତାଙ୍କର ହୃଦୟ କନ୍ଦରରୁ ନିଃସୃତ ଏଇ ବାଣୀ ମୋତେ ବୋଧ ହୋଇଛି···ଦେବତାର ବାଣୀ ଯେପରି ।

ଶିକ୍ଷକ ସଦନରେ ରହିଛି ଅନେକ ସମୟରେ । ମୋର ବହୁ ସାହିତ୍ୟିକ ବନ୍ଧୁମାନଙ୍କ ଅନୁରୋଧ ଏଡ଼ାଇ ସଦନରେ ଆଶ୍ରୟ ନେବାର ଅନେକ କାରଣ ମଧ୍ୟରୁ ଗୋଟିଏ ହେଉଛି ତାଙ୍କର ସ୍ନେହ ଶୁଭେଚ୍ଛାର ଆକର୍ଷଣ । ସେଠାରେ ସାମୟିକ ଅବସ୍ଥାନ କାଳରେ ଦେଖିଛି— ଗଦା ଗଦା ଫାଇଲ, ଚିଠି, ଟେଲିଗ୍ରାମ । ତାଙ୍କ ପାଖରେ ଶିକ୍ଷକମାନଙ୍କର ଭିଡ଼—ଅଭାବ, ଅସୁବିଧା, ଦୁଃଖ ଯନ୍ତ୍ରଣା, ବେଦନାବୋଧ, ଖାଲି ଅଗଣନ ପ୍ରୋଗ୍ରାମ୍··· ସାନ୍ତ୍ୱନା, ଆଲୋଚନା, ଯୋଜନା । ହଜାର ହଜାର ଶିକ୍ଷକଙ୍କର ଆଶା ଭରସା ଯେପରି ବ୍ରହ୍ମଶ୍ରୀ । କାହାର ଦୁଃଖ ଦୁର୍ଦ୍ଦଶା ଶୁଣିଲେ ମୁହଁଟା ଗମ୍ଭୀର···ମେଘାଚ୍ଛନ୍ନ ହୋଇଉଠେ । ଆଃ କି ସମବେଦନା···କି ନିର୍ବିକାର ଚିତ୍ତ ସେ । କେହି ଶୂନ୍ୟ ହସ୍ତରେ ଫେରି ନାହିଁ । ଶିକ୍ଷକ ସଦନ ଯେପରି ଆମ ଶିକ୍ଷକକୁଳର ପରମ ଆଶ୍ରୟ ସ୍ଥଳ···ଘର ।

ସେ କୁଆଡ଼େ ବିନା ଆଡ଼ମ୍ବରରେ ପଣ୍ଡିତ । ପଣ୍ଡିତ ମାନଙ୍କର ପାଣ୍ଡିତ୍ୟ ତାଙ୍କର ଅଛି । ସେ କୁଆଡ଼େ କୁଶଳୀ ସଂଗଠକ । ଦୋହନୀ ମଡେଲ ହାଇସ୍କୁଲ ତାଙ୍କର ଯଶ ଗାନ କରୁଛି । ସେ କୁଆଡ଼େ ଲୋକ ସେବକ—ଏବେ ମଧ୍ୟ ଦୟାଳୁ ସରପଞ୍ଚ ବୋଲି ଲୋକେ ସମ୍ମାନ ପ୍ରଦର୍ଶନ କରନ୍ତି । ଏଇ କର୍ମଯୋଗୀଙ୍କର ହାତବାଜ ଗଢ଼ି ଉଠିଛି ଶିକ୍ଷକ ସଦନ । ହଜାର ହଜାର ନିଷ୍ପେଷିତ ଅବହେଳିତ ମୂକ ଶିକ୍ଷକ ମୁହଁରେ ସେ ଭାଷା ଦେଇଛନ୍ତି—କେତେ ଦୁର୍ଦ୍ଦାନ୍ତ ସେକ୍ରେଟେରୀଙ୍କ ସମ୍ମୁଖୀନ ସେ ହୋଇଛନ୍ତି । ତାଙ୍କର ଘର ନାହିଁ— ଶିକ୍ଷକ ସଦନ ହିଁ ଘର । ଜନତାର ସେବାଲାଗି ସେ ସଂସାର କରିବାକୁ ଚାହିଁ ନାହାନ୍ତି । ଶିକ୍ଷକ ମାନଙ୍କ ସୁଖ ଦୁଃଖ ଭିତରେ ନିଜକୁ ହଜାଇ ଦେବାକୁ ସେ ଚାହିଁଛନ୍ତି । ଜୀବନରେ ଚତୁର୍ବର୍ଗ କେବେ ଲୋଡ଼ି ନାହାନ୍ତି । ସେ ପ୍ରକୃତରେ ବ୍ରହ୍ମଶ୍ରୀ । ଦୁରନ୍ତ ଇନ୍ଦ୍ରିୟମାନଙ୍କୁ ଜବତ କରି ରଖିବାର କାଇଦା ତାଙ୍କୁ ଯେପରି ମାଲୁମ । ମୁଁ ଦେଖିଛି ତାଙ୍କ ପାଖରେ ଅନ୍ନପ୍ରାର୍ଥୀମାନଙ୍କର ଭିଡ଼ । ଅନେକ ଅସହାୟ ଲୋକର ଭିଡ଼ । କର୍ମ ଛଡ଼ା ସେ ଯେପରି କିଛି ଜାଣନ୍ତି ନାହିଁ । ପିଲାମାନେ ଖଟିବା ଦରକାର—ସେ ଏକା ବୃଦ୍ଧାବସ୍ଥାରେ ଚାରିଟା ଟୋକାର କାମ ସହଜରେ ତୁଲାଇ ନିଅନ୍ତି ।

ତାଙ୍କଠୁ ଅନେକ ଶିଖିବାର, ଦେଖିବାର, ଜାଣିବାର ଓ ଶୁଣିବାର ଅଛି । ଏ ଦରିଦ୍ର ଓଡ଼ିଶାର ଅନେକ କିଛି ଆଶା କରିବାର ଅଛି । ତାଙ୍କର ଗଠନଶୀଳ ଯୋଜନାକୁ କିଏ ବା ଗ୍ରହଣ ନ କରିଛି ? ସେଇଠି ଦେଖିଛି—ପରାମର୍ଶ କରିବାକୁ ଆସନ୍ତି ବିପ୍ଳବୀ ଅଧ୍ୟାପକ ଅବନୀ ବରାଳ, ବିବେକାନନ୍ଦ ଦାଶ, କୈଳାସ ମହାପାତ୍ର ଇତ୍ୟାଦି । ସମସ୍ତେ ଯେପରି ସତ୍ୟ-ଅନୁସନ୍ଧିତ୍ସୁ, କଷ୍ଟସହିଷ୍ଣୁ, ବୟୋବୃଦ୍ଧ କର୍ମଚଞ୍ଚଳ ନିର୍ଭୀକ ବ୍ରହ୍ମଶ୍ରୀଙ୍କୁ ଚିହ୍ନିଛନ୍ତି । ହୁଏତ ସେମାନଙ୍କର ବିପ୍ଳବ ଚେତନା ଭିତରେ ସ୍ଥାନ ନେବା ଆଶ୍ଚର୍ଯ୍ୟଜନକ କଥା ନୁହେଁ । ସୁନା ଚିହ୍ନେ ବଣିଆ···ଗୁଣ ଚିହ୍ନେ ଗୁଣିଆ । ବ୍ରହ୍ମଶ୍ରୀଙ୍କର ସେମାନଙ୍କ ପ୍ରତି କେତେ ଶ୍ରଦ୍ଧା, କେତେ ସ୍ନେହ ।

କେଉଁ ଅଖ୍ୟାତ ପଲ୍ଲୀରୁ ଆସି ଅର୍ଥାତ୍ ମାଟିରୁ ମହଲରେ ପହଞ୍ଚି ବ୍ରହ୍ମଶ୍ରୀ ଦେଖେଇଛନ୍ତି ଆଦର୍ଶ —'କର୍ମେ ଜୀଏ ନର ।' କୌଣସି ସରକାରୀ ଉଚ୍ଚପଦବୀ ଯାହା ନ କରି ପାରିଛି—ଯାହା ବଡ଼ ନେତାମାନଙ୍କ ଦ୍ୱାରା ସମ୍ଭବ ନ ହୋଇଛି—ଯା' କଟକର ମାଡ଼ୁଆଳୀ ମାନେ ପାରିନାହାନ୍ତି—ତାହା ସମ୍ଭବ ହୋଇଛି,

କପର୍ଦ୍ଦକ-ଶୂନ୍ୟ-ହସ୍ତ ବ୍ରହ୍ମଚାରୀଙ୍କ ତ୍ୟାଗ ଆଉ ନିଷ୍ଠା ବଳରେ ।

ସେ ଜଣେ ପ୍ରତିଭାଶାଳୀ ଶିଶୁ ସାହିତ୍ୟିକ । ତାଙ୍କର ପାଠ୍ୟ ପୁସ୍ତକ, ହୁକେ ହୋ, ବନର ମନକଥା ନେପୋଲିୟନ, ଗୁରୁ ଚରିତ, ଚରିତ ଓ ଚରିତ୍ର, କିଏ କେମିତି ଆଦି ପାଠକଲେ ତାଙ୍କର କଲମର ଶକ୍ତି ବିଷୟରେ ଅବଗତ ହୋଇ ପାରିବା । ଏ ବାବଦରେ ସେ ରାଜ୍ୟ ସରକାର ଓ ରାଷ୍ଟ୍ରପତିଙ୍କ ପୁରସ୍କାର ମଧ୍ୟ ପାଇଛନ୍ତି । ତାଙ୍କର କଥନ ଶୈଳୀରେ ଏକ ପ୍ରକାର ଚମତ୍କାରିତା ରହିଛି ।

ତାଙ୍କର ସମ୍ପାଦନାରେ ପ୍ରକାଶିତ "ଶିକ୍ଷକ ଦର୍ପଣ" କେବଳ ଶିକ୍ଷକ ମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ନେଇ ରଚିତ ହୁଏ । ସାହିତ୍ୟିକ ମୂଲ୍ୟବୋଧ ସମ୍ପର୍କରେ ମୋର ଉଚ୍ଚ କୋଟିରେ ଧାରଣା ନାହିଁ । ମାତ୍ର ଗୋଟିଏ ବିଶେଷତ୍ୱ ହେଉଛି ବ୍ରହ୍ମଚାରୀଙ୍କର ସମ୍ପାଦନା । ତାଙ୍କର ବକ୍ତୃତା ପରି ଓଜସ୍ୱିନୀ ଭାଷାର "ଶୃଣ୍ୱନ୍ତୁ ସର୍ବେ" ଯେଉଁମାନେ ପଢ଼ନ୍ତି, ସେମାନେ ଜାଣି ପାରିବେ —ଲେଖକଟି କେତେ ବିପ୍ଳବୀ, ନିର୍ଭିକ ଓ ଅନ୍ୟାୟ ପ୍ରତି ବିରକ୍ତ । ତାଙ୍କର ବ୍ୟଙ୍ଗାତ୍ମକ ଶୈଳୀରେ ତୀବ୍ର ଆକ୍ଷେପର କଥା···ବେଶ ହୃଦୟସ୍ପର୍ଶୀ । ସତେ ଯେପରି ସେ ଭୀଷଣ ଭାବେ ଆହତ । ତାଙ୍କର ଚିନ୍ତାର ଭିତରେ ହଜାର ହଜାର ମଣିଷର ଅଭାବ ଅସୁବିଧା ପ୍ରତି ଉପେକ୍ଷିତ କରି ଯେଉଁମାନେ ସ୍ୱାର୍ଥାନ୍ଧ ଗୋଷ୍ଠୀ ଭୁକ୍ତ, ସେମାନଙ୍କ ପତନର କରୁଣ ଛନ୍ଦ ଶୁଭେ । ଧନ୍ୟ··· ବ୍ରହ୍ମଚାରୀ ।

## ଶିଶୁ ସାହିତ୍ୟ ଓ ଶ୍ରୀ ବ୍ରହ୍ମଚାରୀ—

ଶିଶୁ ମାନଙ୍କର ମନକୁ ବିକାଶଶୀଳ କରିବା ପାଇଁ ସରଳ ମଧୁର ଓ ଚିତ୍ତାକର୍ଷକ ଭାଷାରେ ସାହିତ୍ୟ ସୃଷ୍ଟି କରିବା କେବଳ ଜଣେ ଦକ୍ଷ ସାହିତ୍ୟିକ ପକ୍ଷରେ ସମ୍ଭବ । ଶିଶୁ ମନକୁ ପ୍ରଭାବିତ କରିବାକୁ କାହାଣୀ, ରୂପକଥା ସବୁ ଲେଖା ଯାଇଥାଏ । ରୁଷିଆ ଆମେରିକା ଆଦି ପ୍ରଗତିଶୀଳ ରାଷ୍ଟ୍ରରେ ଶିଶୁ ସାହିତ୍ୟରେ ଉନ୍ନତି ଅସମ୍ଭବ ରକମର ହୋଇଛି । ଓଡ଼ିଆ ସାହିତ୍ୟରେ ଆଜି ଶିଶୁ ସାହିତ୍ୟର ଭୂମିକା ଯେ ସ୍ୱତନ୍ତ୍ର ଭାବେ ପ୍ରତିଷ୍ଠାଲାଭ କରିଛି, ଏକଥା କେହି ଅସ୍ୱୀକାର କରିବେ ନାହିଁ । ମଧୁସୂଦନଙ୍କଠାରୁ ଏପର୍ଯ୍ୟନ୍ତ ଯେଉଁମାନେ ଶିଶୁ ସାହିତ୍ୟ ସୃଷ୍ଟି କରିଛନ୍ତି, ସେମାନଙ୍କ ମଧ୍ୟରେ ବ୍ରହ୍ମଚାରୀଙ୍କର ଅବଦାନ ସ୍ମରଣୀୟ । ଧର୍ମ, ସାହିତ୍ୟ, ସଂସ୍କୃତି ଆଉ ଜୀବନକୁ ନେଇ ଶିଶୁ ମନରେ ପ୍ରଭାବ ସୃଷ୍ଟି କରିବା ଭଳି ମାଧ୍ୟମ ତିଆରି କରିବାରେ ବ୍ରହ୍ମଚାରୀଙ୍କର ଭାଷା, କଳ୍ପନା ଓ କୌଶଳ ସ୍ୱୀକାର୍ଯ୍ୟ । ଏବେ ଜୀବନୀ, ଚରିତ ମୂଳକ, ଜ୍ଞାନ ବିଜ୍ଞାନ, ଭ୍ରମଣ କାହାଣୀ, ଆବିଷ୍କାର ଉଦ୍ଭାବନ ଇତ୍ୟାଦିକୁ ନେଇ ବ୍ୟାପକ ଶିଶୁ ସାହିତ୍ୟ ସୃଷ୍ଟି ହେଉଛି । ଅନେକ ବିଭାଗରେ ବିଭକ୍ତ ହେଲେ ମଧ୍ୟ ଶିଶୁ ସାହିତ୍ୟର ମୌଳିକ ଲକ୍ଷ୍ୟ କଣ ତାହା ସୁସ୍ପଷ୍ଟ ।

ଯାହା ହେଉ ଶିଶୁ ମନର ସରଳତା, ସୌନ୍ଦର୍ଯ୍ୟ ଓ ପବିତ୍ରତାକୁ ପ୍ରକାଶ କରିବାକୁ ସରଳ ସୁବୋଧ ଭାଷା ବ୍ୟବହାର କରିବାକୁ ହୁଏ । ଶିଶୁ ଆଜିର କଳିକା ସତ, କାଲିର କୁସୁମ । ତାର ଶୈଶବ ହେଉଛି ନନ୍ଦନମୟ ଓ ପ୍ରେମମୟ । ଶିଶୁର ଚିନ୍ତା ଓ ଚେତନା ସାହିତ୍ୟରେ ପ୍ରତିଫଳିତ ନ ହେଲେ ଅବା ତାର ହୃଦୟକୁ ପ୍ରଭାବିତ ନକରି ପାରିଲେ ତାହା କେବେ ସଫଳତା ହାସଲ କରି ନ ପାରେ । ଅନ୍ୟ ଦେଶରେ ଶିଶୁ ସାହିତ୍ୟ ଉପରେ ଗବେଷଣା ଚାଲିଥିବା ବେଳେ ଆମ ଦେଶରେ ତା ପ୍ରତି ଅଧିକ ଜୋର ଦିଆ ଯାଇ ନାହିଁ । ଶିଶୁସାହିତ୍ୟ ସୃଷ୍ଟିକୁ ଅଧିକ ଚିତ୍ତାକର୍ଷକ କରିବା ପାଇଁ ସରକାରୀ ସହାୟତା ଆବଶ୍ୟକ । ତଥାପି ଓଡ଼ିଶା ଶିଶୁ ସାହିତ୍ୟ କଚ୍ଛପ ଗତିରେ ଅଗ୍ରସର ହେଉଛି । ପତ୍ର ପତ୍ରିକା ସାହାଯ୍ୟରେ ଅନେକ ଶିଶୁ ସାହିତ୍ୟିକ ସୁପ୍ରତିଷ୍ଠିତ ହୋଇଛନ୍ତି ଆଉ ସ୍ୱତନ୍ତ୍ର ପୁସ୍ତକ ରଚନା ଦ୍ୱାରା ବହୁଶିଶୁ ସାହିତ୍ୟିକ ମଧ୍ୟ ସୁପ୍ରତିଷ୍ଠିତ ହୋଇଛନ୍ତି ।

ଶ୍ରୀ ବ୍ରହ୍ମଚାରୀଙ୍କର "ଗୁରୁ ଚରିତ" ପୁସ୍ତକରେ ଶିଶୁମନରେ ପିତାମାତାଙ୍କ ପ୍ରତି କିପରି ଭକ୍ତି ଜାତ ହେବ, ତାହାର ସୁନ୍ଦର ଉଦାହରଣ ଦିଆ ଯାଇଛି । ଶିଶୁର ମଧ୍ୟ ପରିବାର ଓ ପିତାମାତାଙ୍କ ପ୍ରତି କିପରି କର୍ତ୍ତବ୍ୟବୋଧ ଓ ଭକ୍ତି ରହିଛି; ତାହା ଉଲ୍ଲେଖ କରାଯାଇଛି । ଗୁରୁଙ୍କୁ

ଭକ୍ତି କରିବା ଛାତ୍ରମାନଙ୍କର କର୍ତ୍ତବ୍ୟ । ଛାତ୍ରର ଚରିତ୍ର ମଧୁର ହେବା ଉଚିତ । ଏ ସମ୍ପର୍କରେ ଋଷିଆର ରାଣୀ କାଥାରିନ୍, କବିବର ରାଧାନାଥଙ୍କର ଶିକ୍ଷକମାନଙ୍କ ଚେୟାର୍‌ରେ ନ ବସି ପରିଦର୍ଶନ କରିବା, ବାଗବାଦର ଖଲିଫାଙ୍କ ପିଲାମାନଙ୍କର ଗୁରୁଙ୍କର ଜୋତା ଉଠାଇବା ଉପାଖ୍ୟାନ ବାସ୍ତବିକ ପ୍ରଭାବଶୀଳ ହୋଇଛି । "ଭାଇକୁ ଭଗାର ନମଣ" ଗଳ୍ପରେ ରାଣା ପ୍ରତାପ ଓ ଶକ୍ତଙ୍କ କଥା କୁହାଯାଇଛି । ମଧୁସୂଦନଙ୍କର ଭ୍ରାତୃବତ୍ସଳତା, କପିଳେନ୍ଦ୍ରଙ୍କର କ୍ଷମାଶୀଳ ହୃଦୟ କଥା ସରଳ ଭାଷାରେ କୁହାଯାଇଛି । ମଣିଷ ନିଷ୍ଠୁର ହେବା ଉଚିତ ନୁହେଁ—ଏହାର ଉଦାହରଣ ଈଶ୍ୱରଚନ୍ଦ୍ର, ଇଂଲଣ୍ଡର ରାଜାମାତା, ଜର୍ମାନର ସମ୍ରାଟ ଯୋସେଫ୍ । ଯିଏ ଲୋକ ମାନଙ୍କର ମନ ଚହ୍ନେନା—ସେ ମଣିଷ ପଦ ବାଚ୍ୟ ନୁହେଁ । ମହାରାଜା ଶ୍ରୀରାମଚନ୍ଦ୍ର ଓ କବିବର ରାଧାନାଥଙ୍କ ଜୀବନର ଛୋଟ ଘଟଣାକୁ ନେଇ ଶିକ୍ଷଣୀୟ ଗଳ୍ପ ସେ ଲେଖିଛନ୍ତି । ଯିଏ ଦଣ୍ଡ ଦେଇପାରେ, ତାର କ୍ଷମା କରିବାର ଶକ୍ତି ଅଛି; ମଣିଷ ମଣିଷର ପରୋପକାର କରିବା ଶ୍ରେଷ୍ଠ କାମ ଅଟେ, ସେବା ମାନବର ପରମ ଧର୍ମ, ଆପଣା ଦୋଷକୁ ଘୋଡ଼ାଇବା ପାପ, ନମ୍ରତା ଗୁଣୀ ଲୋକର ଲକ୍ଷଣ, ଅତିଥି ସେବା, ପରାର୍ଥ ଆଦି ବିଷୟରେ ଗାନ୍ଧି, ଗୋପବନ୍ଧୁ, ମିବାରର ରାଣା, ଇବ୍ରାହିମ୍, ପଟେଲ, ଗୁରୁଦାସ ବନ୍ଦ୍ୟୋପାଧ୍ୟାୟ ଆଦିଙ୍କ କଥା ଶିକ୍ଷଣୀୟ । ଶିଶୁମନରେ ଏଇସବୁ ଅନୁଭୂତି ବେଶ୍ ପ୍ରଭାବ ଦ୍ୟୋତକ ମନେ ହେଉଛି ।

"ଚରିତ ଓ ଚରିତ୍ର" ପୁସ୍ତକରେ ସେ କବିସୂର୍ଯ୍ୟ ବଳଦେବ ରଥ, ସାମନ୍ତ ଚନ୍ଦ୍ରଶେଖର, ଗୌରୀଶଙ୍କର ରାୟ, ପ୍ୟାରିମୋହନ ସେନ, ଫକୀର ମୋହନ ସେନାପତି, ମଧୁସୂଦନ ଦାସ, ରାଧାନାଥ ରାୟ, ମଧୁସୂଦନ ରାଓ, ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ, ପଣ୍ଡିତ ଗୋପବନ୍ଧୁ ଦାଶଙ୍କର ଜୀବନଚରିତକୁ ସରଳ ଭାଷାରେ ଲେଖିଛନ୍ତି । ସେମାନଙ୍କ ଜୀବନର ଲୌକିକ ଓ ଅଲୌକିକ ଘଟଣାକୁ କେନ୍ଦ୍ର କରି ଲେଖିଛନ୍ତି । ସେମାନଙ୍କର ସାଧନା ପଛରେ କିପରି ନିଷ୍ଠା, ତ୍ୟାଗ, ନିର୍ଭୀକତା ରହିଛି—ଜୀବନଭରି ସେମାନେ ଆଦର୍ଶ ଓ ନୀତିମୟ ଜୀବନ ଯାପନ କରିଛନ୍ତି, ତାହା ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି । ସେମାନଙ୍କର ଚାରିତ୍ରିକ ବିଶ୍ଳେଷଣ ଖୁବ୍ ସୁନ୍ଦର ହୋଇଛି । କବିସୂର୍ଯ୍ୟ କିପରି ତୈଲଙ୍ଗୀ ପଣ୍ଡିତଙ୍କୁ ପରାସ୍ତ କରିଥିଲେ, ସାମନ୍ତ ଚନ୍ଦ୍ରଶେଖର କିପରି ସାହେବଙ୍କୁ ପରାହତ କରିଥିଲେ, ଗୌରୀଶଙ୍କର କିପରି କର୍ମବୀର ଥିଲେ, ପ୍ୟାରିମୋହନଙ୍କର ସାଧୁତା, ଫକୀର ମୋହନଙ୍କର ବୁଦ୍ଧି ଓ ନିର୍ଲୋଭତା, ମଧୁସୂଦନଙ୍କର ଦେଶ ପ୍ରୀତି, ରାଧାନାଥଙ୍କର ନିଃସ୍ୱାର୍ଥପର ଜୀବନ ଓ ଉଦାରତା, ମଧୁସୂଦନ ରାଓଙ୍କର ପିତୃଭକ୍ତି ଆଉ ନୈତିକତା, ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଉଦାରତା, ଦୟାଶୀଳତା ଆଉ କ୍ଷମାଶୀଳତା ଆଦି ଗୁଣ, ଗୋପବନ୍ଧୁଙ୍କର ଅଲୌକିକ ଦେଶ ସେବା···ଇତ୍ୟାଦି ବିଷୟରେ ଅନେକ ଅନୁଭୂତିର କୁସୁମକୁ ଏକତ୍ର କରି ମାଳାଟିଏ ତିଆରି କରିଛନ୍ତି । ଏଇସବୁ କାହାଣୀକୁ ନେଇ ତାଙ୍କର "କିଏ କେମିତି" ଶିଶୁପୁସ୍ତକଟି ରଚିତ । ଛୋଟ ଛୋଟ ଅନୁଭୂତି ମୂଳକ ଗଳ୍ପ ବାସ୍ତବିକ ଚମତ୍କାର ରୂପ ନେଇଛି । ଶିଶୁ ମାନସିକ ବୃତ୍ତିକୁ ଏହା ବିକଶିତ କରିବାରେ ସାହାଯ୍ୟ କରିବ ।

"ବନର ମନକଥା" ପୁସ୍ତକରେ ନିଜର ଜୀବନ କାହାଣୀକୁ ଦଶଟି ଗପ ଛଳରେ ସେ କହିବାକୁ ଚେଷ୍ଟା କରିଛନ୍ତି । ଛୋଟ ଶିଶୁ ପିଲାଦିନରୁ କିପରି ବିନୟୀ, ନମ୍ର, ପରୋପକାରୀ, ଦୟାଳୁ, ସ୍ନେହୀ, ଚରିତ୍ରବାନ୍ ହେବ, ତାହା ସେ ସରଳ ଆଉ ମଧୁର ଭାଷାରେ ବର୍ଣ୍ଣନା କରିଛନ୍ତି । ନାମ କରଣ, ବିଷୟ ବସ୍ତୁ ନିର୍ବାଚନ, ଶୈଳୀ, ଭାଷା ଆଦି ବିଷୟରେ ଅନୁଧ୍ୟାନ କଲେ ଜଣାଯାଏ, ସେ ଯେପରି ମାଟି ପିଣ୍ଡୁଳାକୁ କୁମ୍ଭକାର ଭାବରେ ବିଭିନ୍ନ ରୂପ ଦେଇଛନ୍ତି—ଶିଶୁମନର କଞ୍ଚା ମାଟିରେ ନାନା କିସମର ହାଣ୍ଡି ମାଠିଆ ପ୍ରଭୃତି ମୃତ୍ପାତ୍ର ଗଠନ କରିଛନ୍ତି—ଏକଥା ପ୍ରତ୍ୟେକ ପୁସ୍ତକର ନାମକରଣ 'ହୁକେ ହୋ' 'ବନର ମନକଥା', 'କିଏ କେମିତି' ଆଦିରୁ ସ୍ପଷ୍ଟ ହୁଏ । କଥା ବସ୍ତୁ ସମ୍ପର୍କରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ମନେକର "ଯୌତୁକ କିନିଷ ଛୁଇଁବି ନାହିଁ"—ଯୌତୁକ

ପ୍ରଥା ଏକ ସାମାଜିକ ବ୍ୟାଧି । ସମାଜକୁ ଏ ବ୍ୟାଧିରୁ ମୁକ୍ତ କରିବା ହିଁ ଏକ ଚିନ୍ତାଶୀଳ ବ୍ୟକ୍ତିଙ୍କ କର୍ତ୍ତବ୍ୟ । ଶିଶୁମନରେ ଏହାକୁ କୁକର୍ମ ଭାବରେ ମୋହର ପିଟିବାକୁ ହେବ···ଏପ୍ରକାର ଆଦର୍ଶ ବଡ଼ଲୋକ ମାନେ କରିଥିଲେ; ଏଣୁ ପିଲାମାନେ ଠିକ୍ ସେଯା କରିବେ । ସମାଜ ସଂସ୍କାର ହେବ···ଶିକ୍ଷା ସଂସ୍କାର ହେବ··· ଶିଶୁର ମନ ଦୃଢ଼ ହେବ, ଭବିଷ୍ୟତ ପାଇଁ ନୈତିକ ବଳ ଯୋଗାଡ଼ କରିବ । ଏଇ ଗୋଟିଏ କଥାରେ ରାଧାନାଥଙ୍କ ଚରିତ୍ର ସଂପର୍କରେ ବା ତାଙ୍କର ନିର୍ଲୋଭ ସାଧୁତା କଥା ବିଷୟରେ ଜଣା ପଡ଼ିବ । ଲେଖକଙ୍କର ଏଇ ଚିନ୍ତାଶୀଳତା ବାସ୍ତବିକ ଅନୁକରଣୀୟ ।

'ଦୟାନନ୍ଦ ସରସ୍ୱତୀ' ଓ 'ନେପୋଲିୟନ' ଆଦି ପୁସ୍ତକରେ ସେ ମାନବ ସମାଜକୁ ଧର୍ମ ଆଉ ସାହସ ବଳରେ ଉନ୍ନତ କରାଯାଇ ପାରିବ ବୋଲି କହିଛନ୍ତି । ଲେଖକଙ୍କର ଜୀବନ ଦର୍ଶନରୁ ସେଥିପାଇଁ ସ୍ପଷ୍ଟ ହୁଏ ଯେ, ସେ ମଧ୍ୟ ଜୀବନରେ ତାହା ପାଳନ କରିବାକୁ ଚେଷ୍ଟା କରିଛନ୍ତି । ଗୁଣ ଦର୍ପଣ, ବିବିଧ ଖେଳ ଶିକ୍ଷା, ମାଧ୍ୟମିକ ପ୍ରବନ୍ଧ ଓ ରଚନା, ଭକ୍ତ ଓ ଭଗବାନ ଇତ୍ୟାଦି ଶିକ୍ଷା ସମ୍ବନ୍ଧୀୟ ଅନେକ ପୁସ୍ତକ ରଚନା କରି ସେ ପାଠ୍ୟପୁସ୍ତକ ଆନ୍ଦୋଳନକୁ ସକ୍ରିୟ କରିଛନ୍ତି ।

ରାଧାନାଥ, ମଧୁସୂଦନ ଓ ଫକୀର ମୋହନଙ୍କୁ ନେଇ ନନ୍ଦକିଶୋର, କାନ୍ତ କବି ଲକ୍ଷ୍ମୀକାନ୍ତ, ଗୋଦାବରୀଶ ମିଶ୍ର, ଚିନ୍ତାମଣି ଆଚାର୍ଯ୍ୟ, ବାଳକୃଷ୍ଣ କର, ଗୋପାଳ ପ୍ରହରାଜ ଇତ୍ୟାଦି ଆଜିର ଶିଶୁ ସାହିତ୍ୟକାର ମାନଙ୍କ ପାଖରେ ପହଞ୍ଚିଛି । ବାଳକୃଷ୍ଣ କରଙ୍କ ସଂପାଦନାରେ 'ଜହ୍ନ ମାମୁଁ', ଜାତୀୟ କବି ବୀରକିଶୋରଙ୍କର 'ମୋ ଦେଶ', ରାମକୃଷ୍ଣ ନନ୍ଦଙ୍କର 'ସଂସାର', ବିନୋଦ କାନନ୍‌ଗୋଙ୍କର 'ଶିଶୁ ସଂପଦ', ଗୋଦାବରୀଶଙ୍କର 'ଟୁଆଁ ଟୁଇଁ', ପ୍ରଜାତନ୍ତ୍ରର 'ମୀନା ବଜାର', ଉଗରର 'ନାଗ ବନ୍ଧୁ', ସୌରଭ, ବିଶ୍ୱ ଶିଶୁ ଗୌରବ, ଟୁଉକୁ ମୁଷି, ଫୁଲ ଝରି, ଚକୋଲେଟ ଆଦି ଅନେକ ଶିଶୁ ପତ୍ରିକା ଲୟ ବିଲୟ ନ୍ୟାୟରେ ଚାଲିଛି । ହେଲେ ଶିଶୁ ସାହିତ୍ୟର ଅଗ୍ରଗତିକୁ ଅବ୍ୟାହତ ରଖିଥିବାର ମନେ ହୁଏ । ଆଜିର ଶିଶୁ ସାହିତ୍ୟ ବହୁମୁଖୀ। ଶିଶୁ ଗଳ୍ପ, ନାଟକ, କବିତା, ମଜା କଥା ମହତ ବାଣୀ, ରୋମାନ୍‌ସକୁ ନେଇ ଏହା ରୁଦ୍ଧିମନ୍ତ ।

ବିଂଶ ଶତାବ୍ଦୀକୁ ବିଜ୍ଞାନର ଦାନ ଅସୀମ । ସେଇ ରହସ୍ୟକର ଉଦ୍ଭାବନ ଆଉ ଆବିଷ୍କାର ପିଲାଙ୍କ ମନରେ ଗଭୀର ରେଖାପାତ କରୁଛି । ଆଜି ଆକାଶରେ ଉଡ଼ୁଥିବା, ପାଣିରେ ବୁଡ଼ୁଥିବା ଓ ଚନ୍ଦ୍ରରେ ପାଦ ଦେବା ଶିଶୁର ମାନସିକ ବିକାଶ ଅଧିକ ବ୍ୟାପକତର ହୋଇଛି । ସବୁଠୁ ବେଶି ଭାବରେ ମାନବବାଦ ଆଡ଼କୁ ଢଳିଥିବା କର୍ମଯୋଗୀ ବ୍ରହ୍ମଚାରୀ ସେ ବିଷୟ ପ୍ରତି ବିଶେଷ ଭାବରେ ନଜର ଦେଇ ନାହାନ୍ତି । ମାତ୍ର ତାଙ୍କର ଅବଦାନ ସ୍ୱୀକାର୍ଯ୍ୟ ।

## ଶିକ୍ଷକ ଦର୍ପଣ ଓ ସଂପାଦନାରେ ବ୍ରହ୍ମଚାରୀ

ଶିକ୍ଷକ ଦର୍ପଣ ପତ୍ରିକାକୁ ମାସିକ କରିବା ପାଇଁ ସେ ଚାହିଁଥିଲେ । ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଥିଲା–– ଶିକ୍ଷକ ମାନଙ୍କର କୃତିତ୍ୱ ସଂପର୍କରେ ଦେଶବାସୀଙ୍କୁ ଅବଗତ କରାଇବା––ସଂଘର ଉଦ୍ଦେଶ୍ୟ ଓ କାର୍ଯ୍ୟ କଳାପ ବିଷୟରେ ସ୍ପଷ୍ଟ ଧାରଣା ଦେବା । ଅତ୍ୟାଚରିତ ଶିକ୍ଷକଙ୍କର କରୁଣ କାହାଣୀକୁ ସର୍ବସାଧାରଣଙ୍କ ମଧ୍ୟରେ ପ୍ରଚାର କରିବା ଆଉ କର୍ତ୍ତୃପକ୍ଷଙ୍କୁ ସୁଖ ଦୁଃଖ ପ୍ରତି ଆକର୍ଷିତ କରାଇବା ଆଦି ଉଦ୍ଦେଶ୍ୟ ରଖି ପ୍ରକାଶ କରାଇବାକୁ ସେ ଚାହିଁଥିଲେ । ପ୍ରବନ୍ଧ, ଗଳ୍ପ, କବିତାମାନ ପ୍ରକାଶ କରାଇବା ସଙ୍ଗେ ସଙ୍ଗେ ସଂଘ, ଶିକ୍ଷକ, କର୍ତ୍ତୃପକ୍ଷ ଆଉ ସର୍ବସାଧାରଣଙ୍କୁ ପ୍ରକୃତ ଘଟୁଥିବା ଦୈନନ୍ଦିନ ଘଟଣା ସମ୍ପର୍କରେ ଅବହିତ କରାଇ ପ୍ରତିକାର ଆଶା କରିବା ଇଚ୍ଛାରେ ଶ୍ରୀଯୁକ୍ତ ବ୍ରହ୍ମଚାରୀ ପତ୍ରିକାଟିର ଆବଶ୍ୟକତା ମନେ କରିଥିଲେ । ତଥାପି ଛାପା ଓ ଲେଖା ଯୋଗାଡ଼, ଗ୍ରାହକ ଓ ସମ୍ପାଦନା ସବୁଗୁଡ଼ିକ କାମ ସେ ଦେଖୁଛନ୍ତି । ତଥାପି ତାହା ସର୍ବଜୀବୀ ହେବା ସମ୍ପର୍କରେ ଆଶଙ୍କା ପ୍ରକାଶ କରି ସେ ଥରେ ଲେଖିଥିଲେ––"ସଂଘ ଓ ସଂଘର ମୁଖପତ୍ର ସମସ୍ତଙ୍କ ପକ୍ଷରେ ଗର୍ବର ବିଷୟ ନ ହେଲେ, ଆତ୍ମଶ୍ଲାଘାର ବିଷୟ ନହେଲେ, ଶିକ୍ଷକ ସମ୍ପ୍ରଦାୟର ଆଶାଭରସାର ପ୍ରତୀକ ଓ ଦୁଃଖ ଦୈନ୍ୟର ପ୍ରଚାରକ ବୋଲି ବିବେଚିତ ନ ହେଲେ ଶିକ୍ଷକ ସମାଜର

ଭାଗ୍ୟକୁ ନିନ୍ଦିବା ଛଡ଼ା ଆଉ କଣ କରାଯିବ ?" ସେ ସମ୍ପର୍କରେ ଶିକ୍ଷକମାନଙ୍କର ଉଦାସୀନତାକୁ ଲକ୍ଷ୍ୟ କରି ଅନ୍ୟତ୍ର କହିଥିଲେ—"ସଙ୍ଘର ମୁଖପତ୍ର ଖଣ୍ଡିକର ସ୍ଥାୟିତ୍ୱ ପାଇଁ ଯଦି ଏତେ ଉଦାସୀନତା ପ୍ରକାଶ ପାଏ, ବିନାମୂଲ୍ୟରେ ପତ୍ରିକା ପାଉଥିବା ଏବଂ ବର୍ଷଶେଷରେ ସେଗୁଡ଼ିକ ଠୁଙ୍ଗା ତିଆରି ପାଇଁ ବିକି କିଛି ପଇସା ପାଇ ଯିବାର ଆଶା ରଖିବା ଯଦି ଦେଶ ଓ ଜାତିର ନିର୍ମାତା ଶିକ୍ଷକ କୁଳର ମନୋବୃତ୍ତି ହୁଏ, ତେବେ ବୁଝିବାକୁ ହେବ ଏ ଦେଶର ଗତି କୁଆଡ଼େ ?"

ଯା' ହେଉ ଶିକ୍ଷକ ଦର୍ପଣରେ ନିର୍ଦ୍ଦିଷ୍ଟ ମାନ ରକ୍ଷା କରିବାର ଉପାୟ ନାହିଁ—ଅବା ବିଭିନ୍ନ ଦୃଷ୍ଟିକୋଣରୁ ଏହା କୌଣସି ଉଚ୍ଚ କୋଟୀର ପତ୍ରିକା ନ ହେଲେ ମଧ୍ୟ ମୁଖପତ୍ର ଭାବରେ ଏହାର ଗୁରୁତ୍ୱ ରହିଛି । ତେବେ ମଜାର କଥା, "ଶିକ୍ଷକ ଦର୍ପଣ"ର ସମ୍ପାଦକୀୟ ଯଥା 'ସମ୍ବାଦ ଓ ସଙ୍କେତ', 'ଶୃଣ୍ୱନ୍ତୁ ସର୍ବେ', 'ସାଧନା ପଥେ' ଆଦି ରଚନା ଗୁଡ଼ିକ ବେଶ ଆକର୍ଷଣୀୟ । ବ୍ରହ୍ମଚାରୀଙ୍କ ସମ୍ପାଦକୀୟ ବାସ୍ତବିକ ତାଙ୍କ ବ୍ୟକ୍ତିତ୍ୱର ଦର୍ପଣ ଭଳି ମନେ ହୁଏ । ଅନେକ ସମୟରେ ତାଙ୍କର ଗ୍ରନ୍ଥିକ ବିଶ୍ଳେଷଣ ସେଇଥିରୁ ଲକ୍ଷ୍ୟ କରା ଯାଇଥାଏ । ଗୋଟିଏ ଯାଗାରେ ଅନ୍ୟର ଭୁଲ ଦେଖାଇବାକୁ ଯାଇ ଆପଣାର କଥା କହି ଉଦାରତାର ପରିଚୟ ଦେଇଛନ୍ତି—"ନିଜର ଭୁଲ ନିଜକୁ ଜଣା ପଡ଼େନା, ଅନ୍ୟ କେହି ଦେଖାଇ ଦେଲେ ତାହାକୁ ଶୁଭଙ୍କର ମନେକରି ତାଙ୍କ ପ୍ରତି କୃତଜ୍ଞ ରହିବା ଉଚିତ । ଏହାହିଁ ମୋର ଦୀକ୍ଷା ଆଉ ଦର୍ଶନ । ମୁଁ ନିଜ ଜୀବନର ଭୁଲ ପାଇ ତର୍କ ନ କରି, ଅସହିଷ୍ଣୁ ନ ହୋଇ ଭୁଲ ସ୍ୱୀକାର କରିଥାଏ ।" ଏକଥା ସେ ଶିକ୍ଷକ ମାନଙ୍କ ସମ୍ପର୍କରେ କହିଥିଲେ । ଅନ୍ୟତ୍ର ସେ ହାତଗୁଞ୍ଜା ଗୃହୁଁଥିବା କର୍ମୀଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରି କହିଥିଲେ, "ଯାହାର ଆତ୍ମଶକ୍ତିରେ ବିଶ୍ୱାସ ନାହିଁ, ଯାହାର ହୃଦୟରେ ଅଯଥା ଭୟ ବସା ବାନ୍ଧିଛି—ସେ ସବୁଦିନେ କଳାପୋତେଇର ଶରବ୍ୟ ହେଉଥିବ ।" ଖାଲି ଅର୍ଥଗୁଞ୍ଜା ପ୍ରିୟ କର୍ମୀ ନୁହେଁ, ଶିକ୍ଷା ବିଭାଗର ଯେ କୌଣସି ଉଚ୍ଚ ପଦସ୍ଥ କର୍ମଚାରୀଙ୍କୁ ମଧ୍ୟ ସେ ମୁହାଁମୁହିଁ ଅନେକ କିଛି କହି ପାରନ୍ତି । ଅବଶ୍ୟ ଏଇ ନିର୍ଭୀକତା ସଙ୍ଘ ପରିଚାଳନାକୁ ଏକ ଉତ୍ତମ ସରଣୀରେ ଆଗେଇ ନେଇଛି । ସେ ଶିକ୍ଷାମନ୍ତ୍ରୀ, ଅଫିସର, ନେତା, ମନ୍ତ୍ରୀମଣ୍ଡଳ ଆଦିଙ୍କ ବିରୁଦ୍ଧରେ କଲମର ତରବାରୀ ଉଠାଇବାରେ ହେଳା କରି ନାହାନ୍ତି । ତାହା ସେପରି ନ୍ୟାୟଯୁକ୍ତ ସେହିପରି କରଣୀୟ ମଧ୍ୟ ।

ସରକାରଙ୍କର ଅର୍ଥ ଲାଞ୍ଚ ଦେବା ଓ ଭୋଟ ଗ୍ରହଣ ସମ୍ପର୍କରେ ସୂଚନା ଦେଇ ସେ ଯାହା ଲେଖିଥିଲେ, ତାହା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଅନୁଭବ କରିଥିବେ —"ମନେହୁଏ ଭବିଷ୍ୟତ ନିର୍ବାଚନ ସମ୍ପର୍କରେ ଅର୍ଥ ଆଉ କାମ ଦେବ ନାହିଁ । ଅମୋଘ ଉପାୟ ଅଚଳ ହୋଇଯିବ । ଗାଆଁ ଟାଉଟର ମାନଙ୍କ କରଣୀରେ କଳଙ୍କ ଲାଗିଯିବ ଏବଂ କେବଳ ଧନ, ପ୍ରତିପତ୍ତି ବା ବିଦ୍ୟା ଲୋକଙ୍କୁ ଆକୃଷ୍ଟ କରି ପାରିବ ନାହିଁ ।"

ମୋଟ ଉପରେ ଶ୍ରୀଯୁକ୍ତ ବ୍ରହ୍ମଚାରୀ ଦୀର୍ଘଜୀବୀ ହୁଅନ୍ତୁ । ସେ ସତ୍ୟବାଦୀ, ନିର୍ଭୀକ ଓ କର୍ମଯୋଗୀ ଭାବରେ ଖାଲି ନୁହେଁ, ସାହିତ୍ୟ ସାଧକ ଭାବରେ ମଧ୍ୟ ଓଡ଼ିଶାରେ ସୁପରିଚିତ । ତାଙ୍କଠୁ ଦେଶ ଅନେକ କିଛି ଆଶା କରେ । ଏଣୁ ଶତାୟୁ କାମନା କରି ରହୁଛି ।

ପଶ୍ୟେମ ଶରଦଃ ଶତମ୍
ଜୀବେମ୍ ଶରଦଃ ଶତମ୍ ।
(କୃଷ୍ଣ ଯଜୁର୍ବେଦ: ତୈତ୍ତିରୀୟାରଣ୍ୟକ)

ପ୍ରଧାନ ଶିକ୍ଷକ
ସିଦ୍ଧାଶ୍ରମ ମ: ଇ: ବିଦ୍ୟାଳୟ
ଅମଠପୁର



# "ଅକିଞ୍ଚନଃସନ୍ ପ୍ରଭବଃ ସ ସମ୍ପଦାମ୍"

ଶ୍ରୀ ଗୋପୀନାଥ ପଣ୍ଡା

[ସୁବିଦିତମେବୈତତ୍ ଆଗାମିନି କାର୍ତ୍ତିକମାସି (ଇଂରାଜୀ ନଭେମ୍ବର ୧୮ ତାରିକାୟାଂ) ପୂଜ୍ୟପାଦାନାଂ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗୁରୁ-ମହୋଦୟାନାଂ ଊନ-ସପ୍ତତିତମ ଜନ୍ମବାର୍ଷିକୀ ପାଳ୍ୟତେ ଅସ୍ୟାଂ କଟକ ନଗର୍ଯ୍ୟାମ୍ । ଏତତ୍ତୁ ଅନବଚ୍ଛମାସୁମାନନ୍ଦଂ ଜନୟତି ତତ୍ରଭବତାଂ ବ୍ରହ୍ମଗୁରୁ ମହୋଦୟାନାଂ ଗୁଣମୁଗ୍ଧାନାଂ ଜନାନାଂ ମନସି । ବିଶେଷତଃ ଜନ୍ମବାର୍ଷିକ୍ୟାଂ ପୂର୍ଣ୍ଣ-ତ୍ୱଥୀତି ମନ୍ୟତେ ତସ୍ୟାଦର୍ଶାନୁପ୍ରାଣିତୈଃ ଛାତ୍ରୈଃ ॥]

ବ୍ରହ୍ମଗୁରୁ ମହୋଦୟାନାଂ ଜୀବନଚରିତମନୁ-ଶୀଳନେନ ସ୍ଫୁଟୀଭବତି ଯତ୍ କେଷାଂଚିତ୍ ଅପାର୍ଥିବ-ଗୁଣାନାମଧିକାରୀ ଖଳୁ ସ ମହାଭାଗଃ ନିମ୍ନୋଦ୍ଧୃତନୀତି-ବାକ୍ୟାନୁସାରଂ

"ଅଷ୍ଟୌଗୁଣାଃ ପୁରୁଷଂ ଦୀପୟନ୍ତି,
ପ୍ରଜ୍ଞା ଚ କୌଲ୍ୟଂ ଚ ଦମଃ ଶ୍ରୁତଂ ଚ ।
ପରାକ୍ରମଶ୍ଚାବହୁଭାଷିତା ଚ,
ଦାନଂ ଯଥାଶକ୍ତି, କୃତଜ୍ଞତା ଚ ।"

ଅପିଚ—

"ନାରିକେଳସମାକାରାଃ ଦୃଶ୍ୟନ୍ତେଽପି ଚ ସଜ୍ଜନାଃ ।
ଅନ୍ୟେ ବଦରିକାକାରାଃ ବହିରେବ ମନୋହରାଃ ॥"

ଗଚ୍ଛତ୍ସୁ କାଳେଷୁ କୃତଂ ତସ୍ୟ ବପୁଷି, ବସନ୍ତ ଇବ ମଧୁମାସେନ, ମଧୁମାସ ଇବ ନବପଲ୍ଲବେନ, ନବଯୌବନେନ ପଦମ୍ । ତସ୍ମିନ୍ନୈବକାଳେ ନୂରଦୈବେନ ବିପତ୍ନୀକୋଽଭୂତ୍ ସଃ ମହାଭାଗଃ ॥

ଉଦ୍ଦାମଯୌବନଦଶାୟାଂ ବିପତ୍ନୀକତ୍ୱଂ କଂ ବା ନ ଦହତି ? ପରନ୍ତୁ ସତ୍ୱାସୀତ୍ ଚରିତେନ ଦାନ୍ତଃ । ଏତଦର୍ଥଂ ସର୍ବବିକାରାନ୍ ଦୂରୀକୃତ୍ୟ ଐକାନ୍ତିକନିଷ୍ଠାମ-ବଲମ୍ବ୍ୟ ବ୍ରହ୍ମଗୁରୁବ୍ରତଂ ଧୃତ୍ୱାନ୍ତେବାସିନାମ୍ ଉନ୍ନତୟେ ମନୋନିବେଶଂ ଚକାର ।

ଯଥାର୍ଥତଃ ଉଗ୍ରଃ କର୍ମଯୋଗୀ ଖଳୁ ସଃ ମହାଭାଗଃ । କର୍ମଣୈବହି ମୁକ୍ତି, ଅମଳିନଂ ଯଶଶ୍ଚ ଲଭ୍ୟତେ । ଏକାଧାରେ ସତ୍ୱାସୀତ୍ କ୍ଷମକାନ୍ତଃ, ଅଶେଷଶେମୁଷୀସମ୍ପନ୍ନଃ ଛାତ୍ରବତ୍ସଳ ଆଚାର୍ଯ୍ୟଃ । "ହିତଂ ମନୋହାରି ଚ ବଚଃ ଅସ୍ମିନ୍ ସଂସାରେ ଦୁର୍ଲଭମିତି ତେନ ସୁବିଦିତମାସୀତ୍ । ଏତଦର୍ଥଂ ମାସୀତ୍ ସ ଅପ୍ରିୟ ସତ୍ୟବାଦୀ । ତେନ ପ୍ରତିଷ୍ଠିତଂ "ଦୋହଲୀ ମଡ଼େଲ୍ ଉଚ୍ଚଇଂରାଜୀ ବିଦ୍ୟାଳୟଃ" ଶିକ୍ଷାନୁରାଗଂ ଦ୍ୟୋତୟତି । "ହୃକେହୋ" ନାମଧେୟଂ ଶିଶୁସାହିତ୍ୟଂ ଉତ୍କଳ ସାହିତ୍ୟ ଭଣ୍ଡାରେ ଅମଳିନଂ ଅମୂଲ୍ୟଂ ରତ୍ନଞ୍ଚ ।

ମଦ୍ବିଧାଃ କେଚନ ଅକିଞ୍ଚନାଃ ତସ୍ୟାକୁଣ୍ଠ ସହାୟତାଂ ଲବ୍ଧ୍ୱା (ଛାତ୍ରାବସ୍ଥାୟାଂ) ସମୁନ୍ନତିଂ ଗତାଃ ନିତରାମୁପକୃତାଶ୍ଚ ।

ବ୍ରହ୍ମଗୁରୁ ମହୋଦୟାନାଂ ଛାତ୍ରବାତ୍ସଲ୍ୟଂ ନ କସ୍ୟାପି ଅବିଜ୍ଞାତମ୍ । ସର୍ବେଷ୍ୱନ୍ତେବାସିଷୁ ବିଦ୍ୟତେ ତସ୍ୟାପତ୍ୟସ୍ନେହମ୍ । ଅଧ୍ୟାପନପାଟବଂ ବ୍ୟାମୋହୟତି ସର୍ବାନ୍ । ସାହିତ୍ୟକ୍ଷେତ୍ରେ ନୈପୁଣ୍ୟଂ ତସ୍ୟ ସର୍ବଜନ-ବିଦିତମ୍ । "ମିତଂ ଚ ସାରଂ ଚ ବଚୋହି ବାଗ୍ମିତା"

ଇତି ନ୍ୟାୟାନୁସାରଂ ଶ୍ରେଷ୍ଠବାଗ୍ମୀତି ସର୍ବୈରେବ ସୁଖ୍ୟାତି ବିଦ୍ୟତେ ତସ୍ୟ ।

ନିରାଡ଼ମ୍ବରଜୀବନଯାପନଂ, ଅନନ୍ୟସାଧାରଣ-କାର୍ଯ୍ୟକ୍ଷମତ୍ୱଂ ତସ୍ୟୈବ ବୈଶିଷ୍ଟ୍ୟମ୍ ।

ସର୍ବୋପରି ସ୍ପଷ୍ଟବାଦିତ୍ୱଂ, ସତ୍ୟସନ୍ଧତ୍ୱଂ, ସତ୍-ପାତ୍ରେ ଦାନଶୀଳତ୍ୱଂ ଚ ସର୍ବୈରନୁକରଣୀୟମ୍ । ଭବତି ସ ଆଫଳୋଦୟକର୍ମା । ବିଘ୍ନୈଃ ପୁନଃ ପୁନରପି ପ୍ରତିହନ୍ୟମାନୋଽପି ନ କଞ୍ଚିଦପି କାର୍ଯ୍ୟଂ ତ୍ୟଜତି ସଃ । "ନ ଚଳତି ଖଳୁବାକ୍ୟଂ ସଜ୍ଜନାନାଂ କଦାଚିତ୍" ଇତି ନୀତିବାକ୍ୟେ ବିଦ୍ୟତେ ତସ୍ୟ ମହତୀ ଶ୍ରଦ୍ଧା । ସର୍ବଦା ପ୍ରତିଜ୍ଞାନୁସାରଂ କର୍ତ୍ତବ୍ୟପାଳନବିମୁଖୋ ନ ଭବତି ।

ସମୃଦ୍ଧଦେଶେ ଶିକ୍ଷକାଣାଂ ମହତୀଭୂମିକା ବିଦ୍ୟତେ ଇତି ନାସ୍ତି କସ୍ୟଚିତ୍ ବୈମତ୍ୟମ୍ । ପରନ୍ତୁ ସାମ୍ପ୍ରତଂ ନୟୂପଥବିମୁଖେ ରାଜ୍ୟେ ଶିକ୍ଷକାଣାଂ ପୂର୍ବଗୌରବଂ ଗତଂ ନଷ୍ଟଂ ଚ ବୈଭବମ୍ । ଅର୍ଥଗୃଧ୍ନୁ ଦୁର୍ନୀତି-ପରାୟଣୈଃ ନଷ୍ଟଚରିତ୍ରୈଃ ଶାସକବର୍ଗୈଃ ଶିକ୍ଷକାଣାଂ ଆର୍ଥିକାବସ୍ଥାୟା ଉନ୍ନତୟେ ନ କଞ୍ଚିଦପି କାର୍ଯ୍ୟାନୁଷ୍ଠାନଂ କ୍ରିୟତେ । ତେଷାଂ ସାମ୍ପ୍ରତିକ ଦୁର୍ଦ୍ଦଶା କସ୍ୟ ବା ସଚେତସଃ ଚେତଃ ନ ଦୂୟତେ ?

ଯଦ୍‌ବତ୍ ଧର୍ମସ୍ୟ ଗ୍ଲାନିଃ ଅଧର୍ମସ୍ୟୋତ୍ଥାନକାଳେ ଆବିର୍ଭବଃ ଭବତି ଭଗବତଃ, ତଦ୍‌ବତ୍ ନିଷ୍ପେଷିତ ଦୁର୍ଦ୍ଦଶାଗ୍ରସ୍ତ ଶିକ୍ଷକାଣାଂ ସମୁଦ୍ଧରଣାୟ ସୃଷ୍ଟିରଭୂତ୍ ନିଖିଳୋତ୍କଳ ନିମ୍ନମାଧ୍ୟମିକ ଶିକ୍ଷକସଂଘସ୍ୟ । ତସ୍ୟୈବ ସଂଘସ୍ୟ ଜନକଃ ଖଳୁ ମହାଭାଗଃ ପୁଣ୍ୟାତ୍ମା ଶ୍ରୀ ବନମାଳୀ ବ୍ରହ୍ମଗୃହୀ, ଯସ୍ୟ ସାଧୁତା, ନିଷ୍ଠା, ଅକ୍ଳାନ୍ତଶ୍ରମ-ଫଳେନୈବ ସଂଘସ୍ୟ ସାମ୍ପ୍ରତିକ ସର୍ବାଙ୍ଗୀଣୋ-ନ୍ନତିର୍ଜାତା ।

ଅଦ୍ୟାବଧି ସୋଽପି ଜ୍ଞାନରତଃ କର୍ମତତ୍ପରଶ୍ଚ । ଏତଦର୍ଥଂ ବୃଦ୍ଧ ଇତି ବକ୍ତୁଂ ନ ଯୁଜ୍ୟତେ ତଂ, ଊନସପ୍ତତିତମବୟସି ପଦାର୍ପଣଂ କୃତ୍ୱାପି । ଯତଃ—

"ନ ତେନ ବୃଦ୍ଧୋ ଭବତି
ଯେନାସ୍ୟ ପଳିତଂ ଶିରଃ ।
ଯେନ ଯୁବାଽପ୍ୟଧୀୟାନଃ
ତଂ ଦେବାଃ ସ୍ଥବିରଂ ବିଦୁଃ ॥"

ଏତଦର୍ଥଂ କାମ୍ୟତେ ମୟା ଯତ୍ ଦୀର୍ଘାୟୁରସ୍ତୁ ସଃ ବ୍ରହ୍ମଗୃହୀ ମହାଭାଗଃ ॥

● ସଂସ୍କୃତାଧ୍ୟାପକଃ
ସିଟି ମହାବିଦ୍ୟାଳୟଃ
କଟକଂ



# ତାଙ୍କୁ ମୁଁ ଯେମିତି ଜାଣେ

**ଶ୍ରୀ ଧନେଶ୍ୱର ସାମଲ,**

ସେ ଆଜକୁ ୧୭।୧୮ ବର୍ଷ ତଳର କଥା । ମୁଁ ଥାଏ ସେତେବେଳେ ନନ୍ଦକିଶୋର ବିଦ୍ୟାମନ୍ଦିର (କୁସୁପୁର, କଟକ) ର ପ୍ରଧାନ ଶିକ୍ଷକ । ପୂର୍ଣ୍ଣ ଯୁବକ, ଅଧିକ କର୍ମତତ୍ପର ଓ ଅବିବାହିତ । ଶିକ୍ଷା କ୍ଷେତ୍ରରେ ପ୍ରବେଶ କରିଥାଏ ବହୁ ଆଶା, ଆଗ୍ରହ, ଉତ୍ସାହ, ଉଦ୍ଦୀପନା ଓ ସମ୍ଭାବନା ନେଇ । ୧୯୫୭ ମସିହା ହେବ । ଦୋହଳୀ ମଡ଼େଲ ହାଇସ୍କୁଲ, ଦାନପୁର, କଟକରୁ ନିମନ୍ତ୍ରଣ ପାଇଲୁ—"ବନମାଳୀ ବ୍ରହ୍ମଚାରୀ ଭଲିବଲ୍ ଟୁର୍ଣ୍ଣାମେଣ୍ଟ"ରେ ଯୋଗ ଦେବାକୁ ।

୧୯୫୪ରେ ବି. ଏସ୍. ସି. ପାଶ କରି ଆର୍ଥିକ ଅସ୍ୱଚ୍ଛଳତା, ପାରିବାରିକ ପ୍ରତିବନ୍ଧକ ଯୋଗୁ ଅନ୍ୟାନ୍ୟ ଉଚ୍ଚତର ଟ୍ରେନିଂ ଓ ନିଯୁକ୍ତି ତଥା ଅଧ୍ୟୟନ ଛାଡ଼ି ମୁଁ କୁସୁପୁରରେ ବିଜ୍ଞାନ-ଶିକ୍ଷକ ରୂପେ ରହି ୧୯୫୫-୫୬ ରେ ରାଧାନାଥ ଟ୍ରେନିଂ କଲେଜ, କଟକରୁ ବି. ଇଡ଼. ପାସ୍ କଲି । ୧୯୫୫ ବନ୍ୟାରେ ସେବା-ସହାୟତା-ସୁଧାର କାମ ମାହାଙ୍ଗା ଓ ବଡ଼ଚଣାରେ କରି ସାରିବା ପରେ କେତେକ ବନ୍ଧୁ, ସାହିତ୍ୟିକ ଓ ମୋର ଗୁରୁବୃନ୍ଦ ମତେ ପଲ୍ଲୀକବିଙ୍କ ପବିତ୍ର ନାମରେ ନାମିତ ତାଙ୍କର ଏକମାତ୍ର ସ୍ମୃତିର ସ୍ମାରକ ସେହି ପୀଠରେ ଶିକ୍ଷକତା କରି, ତାକୁ ସଜାଡ଼ି, ସମୁନ୍ନତ କରିବାକୁ ଓ ନିତ୍ୟ-ନୂତନ ପରୀକ୍ଷଣ ନିରୀକ୍ଷଣ କରି ଚଳିବାକୁ ପରାମର୍ଶ ଦେଲେ ।

ମୁଁ ସେ ସମୟରେ ଯୌବନର ଉଦ୍ଦାମତାକୁ ସେବା, ଶିକ୍ଷାଦାନ, ସ୍କୁଲରେ ସଂଗଠନ, ବଡ଼ଚଣା ପାଠାଗାର ସମ୍ମିଳନୀ ସଂସ୍ଥାପନ, ପରିଚାଳନ, ବିଜ୍ଞାନ ପ୍ରଚାର, ସାହିତ୍ୟ ସାଧନା, ସଂସ୍କୃତି ସଂରକ୍ଷଣ ଓ ଆବିଷ୍କରଣ ଏବଂ ସଂସ୍କାର ଆନୟନରେ ନିୟୋଜିତ କରୁଥିଲି ।

ଏଣୁ ମୁଁ ଏ ଆହ୍ୱାନ ଏଡ଼ାଇ ନ ପାରି ଆମ କ୍ରୀଡ଼ା ଶିକ୍ଷକ, ସହକର୍ମୀ ଦୋଳଗୋବିନ୍ଦ ମହାନ୍ତି ଓ ଭଲ ଖେଳାଳିମାନଙ୍କୁ ନେଇ ସାଇକେଲରେ ଲଳିତଗିରିଠାରେ 'ଗୋବରୀ' ନଦୀ ପାର ହୋଇ, ଡେରିବିସ୍ ଦେଇ ଗୃନ୍ଦୋଳଠାରୁ ଦୋହଳୀ ସ୍କୁଲରେ ପହଞ୍ଚିଲୁ । ସେଦିନ ଫାଇନାଲ ଖେଳ । ସେତେବେଳେ କୁସୁପୁର ଓ ଦୋହଳୀ ପ୍ରାଇଭେଟ୍ ସ୍କୁଲ ଥାଏ । ଆମେ ଜିତିଲୁ । ସିଲ୍ଡ ଲାଭ କଲୁ । ସେତେବେଳେ ମୁଁ ଟିକିଏ ଭାରି ଦେବଦେବୀ ଭକ୍ତ ଥିଲି ଓ ସାଧୁ ମହାତ୍ମାଙ୍କୁ ସ୍ମରଣ କରୁଥିଲି । ସିଲ୍ଡ ପ୍ରଦତ୍ତ ହେଲାବେଳେ ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଆମ୍ରକୁଞ୍ଜ ମଧ୍ୟରେ ଏକ ବିରାଟ ସଭା ହେଲା । ବିଭିନ୍ନ ସ୍କୁଲର ଛାତ୍ର ଶିକ୍ଷକ, ପ୍ରଧାନ ଶିକ୍ଷକ ଓ ଦର୍ଶକ ତଥା ସ୍ଥାନୀୟ ଅଞ୍ଚଳର ବିଶିଷ୍ଟ ଭଦ୍ରବ୍ୟକ୍ତିଗଣ ସେଠାରେ ରୁଣ୍ଡ ହୋଇଥାନ୍ତି । ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଚାରୀ ମହାଶୟ ସେ ସଭାରେ ଆମକୁ ଉଦ୍‌ବୋଧନ ଓ ଉପଦେଶ ଦେଲେ । ତତ୍କାଳୀନ ତତ୍ରତ୍ୟ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ମୁରଲୀଧର ଆଚାର୍ଯ୍ୟ

ସେଠାକାର ସହକର୍ମୀ ୰ରାଧାମୋହନ ଚକ୍ରବର୍ତ୍ତୀ, ପଣ୍ଡିତ ବାଞ୍ଛାନିଧି ରଥ, ଭବଗ୍ରାହୀ ମିଶ୍ର, ଶଶିଭୂଷଣ ରଥ, ଜଗନ୍ନାଥ ମିଶ୍ର, କ୍ରୀଡ଼ା ଶିକ୍ଷକ ବଂଶକୃଷ୍ଣ ନାୟକ ଓ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଦାଶରଥି ନାୟକଙ୍କ ଅନୁରୋଧ କ୍ରମେ ଆମେ ସେଠାରେ ସେ ରାତିରେ ଆତିଥ୍ୟ ଗ୍ରହଣ କଲୁଁ । ପରିବେଶ ନିର୍ମଳ ଓ ହୃଦ୍ୟ ଜଣା ପଡ଼ିଲା । ସ୍କୁଲର ଗ୍ରାଷ ଜମିରେ ଫସଲ, ନଡ଼ିଆ ଓ ଗୁଆ ଗଛ, ଫୁଲଗଛ, ପୁଷ୍କରିଣୀକୁ ଲାଗି ଶିବମନ୍ଦିର ।

ଆଠ ବର୍ଷ ମଧ୍ୟ ମୁଁ କୁସୁପୁରରେ ଥିବା ସମୟରେ ମିଡ଼ିଲ ଲାଭ କଲୁ । ଏହି ଅବସରରେ ମୁଁ ବନମାଳୀ ବାବୁଙ୍କୁ ଅଳ୍ପ ଅଳ୍ପ ଜାଣିବାର ସୁବିଧା ପାଇଲି ।

ଖୁବ୍ ଉଚ୍ଚା ବା ଗେଡ଼ା ଲୋକ ନୁହଁନ୍ତି । ଗୌର ବର୍ଣ୍ଣ, ମୁଣ୍ଡ ସାମାନ୍ୟ ଚନ୍ଦା, ପରିଧାନ ଖଣ୍ଡିଏ ଖଦି ଧୋତି ଓ ଚଦର । ମାତ୍ର ତାଙ୍କର ଭାଷଣ ଓ ଭାଷା କି ଓଜଃପୂର୍ଣ୍ଣ, ପ୍ରାଣବନ୍ତ, ପ୍ରାଞ୍ଜଳ ଓ ପ୍ରଭାବଶାଳୀ !

ପରେ ସେ କୋଠପଦା ମି. ଇ. ସ୍କୁଲରେ ଶିକ୍ଷକ ଥିବା ବେଳେ କୁସୁପୁରରେ ମୋର ତାଙ୍କର କେତେଥର ଦେଖା ହୋଇଛି । ସେ ବ୍ୟାୟାମ ଶିକ୍ଷା ସମ୍ବନ୍ଧରେ ଓ ଓଡ଼ିଆ ବ୍ୟାକରଣ ସମ୍ବନ୍ଧରେ ସେତେବେଳେ କେତେ ଖଣ୍ଡି ପୁସ୍ତକ ପ୍ରଣୟନ କରିଥାନ୍ତି ଓ ଜଣେ ଆଦର୍ଶ, ପ୍ରଭାବଶାଳୀ ଶିକ୍ଷକ ରୂପେ ବେଶ୍ ସୁଖ୍ୟାତି ଅର୍ଜନ କରିଥାନ୍ତି ।

କାଳକ୍ରମେ ୧୯୬୮ ରେ ଓଡ଼ିଶା ସରକାର କେତେକ ସ୍କୁଲକୁ 'ସି' ଟାଇପ କଲେ ଓ ତାହାର ପରିଚାଳନା ନିଜେ ଗ୍ରହଣ କଲେ । ଏହି ପରିପ୍ରେକ୍ଷୀରେ ୧୯୭୨ରେ ମୋର ଶ୍ରୀ ମୁରଲୀଧର ଆଚାର୍ଯ୍ୟଙ୍କ ସ୍ଥାନରେ ଦୋହଳୀ ମଡେଲ ହାଇସ୍କୁଲକୁ ବଦଳି ହେଲି । ସେତେବେଳକୁ ମୁଁ ଅଢ଼େଇ ବର୍ଷ ବିବାହିତ ଜୀବନ ଯାପନ କରି ମୋର ପ୍ରଥମ ପୁତ୍ର ସନ୍ତାନ ଓ ପିତାଙ୍କୁ ହରାଇଥାଏ । ଯାହା ହେଉ, ଶିକ୍ଷା-ବିଭାଗ ଓ ସରକାରଙ୍କ ନିର୍ଦ୍ଦେଶ ପାଇ ମୁଁ ସେଠାରେ ପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଲି । ସେତେବେଳେ ପ୍ରଧାନ ଶିକ୍ଷକଙ୍କ ରହିବା ପାଇଁ ସେଠି ବସାଘର ନ ଥାଏ । ପୂର୍ବତନ ପ୍ରଧାନ ଶିକ୍ଷକ ମୁରଲୀଧର ଆଚାର୍ଯ୍ୟ ମହାଶୟ ସ୍ଥାନୀୟ ବ୍ୟକ୍ତି ହୋଇଥିବାରୁ ବନମାଳୀ ବାବୁଙ୍କ ନିଜ କର୍ତ୍ତୃ-ତ୍ୱକଘରେ ପିଲା ଛୁଆଙ୍କୁ ଧରି ରହି ଯାଉଥାନ୍ତି । ମୁଁ ସେ ସୁବିଧାରୁ ବଞ୍ଚିତ ହେଲି । ଏକାକୀ ତିଣ ଛୁଉଥିବା ଅଫିସ ଘରେ ଗୋଟାଏ କାଡ଼କୁ ଖଣ୍ଡ ଖଣ୍ଡେ ପକାଇ ରହିଲି । ରାତିରେ ୰ନଟବର ନାୟକ ଜଗୁଆଳି ମୋ ପାଖରେ ଶୁଏ । ମୁଁ ସେହି ସମୟରେ ଭାଗବତ ଗୀତା, ଭାଗବତ-ଏକାଦଶସ୍କନ୍ଧ, ସପ୍ତଶତୀ ଚଣ୍ଡୀ, ବଳରାମ ଦାସଙ୍କ ଛତିଶ ଗୁପ୍ତ ଗୀତା, ଅଚ୍ୟୁତାନନ୍ଦଙ୍କ ମୃତ୍ୟୁଞ୍ଜୟ ଗୀତା, ସୁଧାସାର ଗୀତା, ଅମୃତ ଗୀତା, ମହାପୁରୁଷ ଅଭିରାମ ଦାସଙ୍କର ମହାକବଚ, ମହର୍ଷି ଶିବାନନ୍ଦଙ୍କ ପ୍ରଦତ୍ତ ମନ୍ତ୍ର, ଭଜନ, ଜଣାଣ, ପ୍ରାର୍ଥନା, **Divine Life**, ଅରବିନ୍ଦ ଆଶ୍ରମର ନବଜ୍ୟୋତି, ଅନୁକୂଳ-ବାବାଙ୍କ ପୁସ୍ତକ ରାମ ନାମ ଶତକଂ, ଦାର୍ଢ୍ୟତା ଭକ୍ତି ଏବଂ ଅଚ୍ୟୁତାନନ୍ଦଙ୍କର ନିତ୍ୟାଳଣ ପଟଳ ପଢ଼େ, ଆଉ ଶିବସ୍ତୋତ୍ର ଓ ମହା ମନ୍ତ୍ରାଦି ଜପକରେ ।

ହଷ୍ଟେଲରେ ୯୦ ପିଲା । ଦୁଇଜଣ ସୁପରିଣ୍ଟେଣ୍ଡେଣ୍ଟ ଓ କେତେକ ଶିକ୍ଷକ ହଷ୍ଟେଲରେ ରହୁଥାନ୍ତି । ସହକର୍ମୀମାନଙ୍କୁ ନେଇ ମୁଁ ପଢ଼ାପଢ଼ି, ଲେଖାଲେଖି, ପିଲାଙ୍କ ଲେଖା ସଂଶୋଧନ, ଖେଳ କସରତ୍, ବଗିଚା-କାମ, ଆଦର୍ଶ ନୈତିକ ଜୀବନ ଯାପନ, ସାଂସ୍କୃତିକ କାର୍ଯ୍ୟକ୍ରମ, ସଭା-ସମିତି ଆଦି ଦିଗରେ ଚେଷ୍ଟା ଚଳାଇ ସଫଳ ହେଲି । କୁସୁପୁରଠାରୁ ସେ ଯାଏ ମୁଁ ଗଣିତ, ବିଜ୍ଞାନ, ସାହିତ୍ୟ, ଭୂଗୋଳ, ଇଂରାଜୀ ସ୍ୱାସ୍ଥ୍ୟରକ୍ଷା ଆଦି ବିଭିନ୍ନ ବିଷୟ ପଢ଼ାଉଥିଲି । ପ୍ରତିବର୍ଷ ସେତେବେଳେ ସ୍କୁଲରୁ ୧୮ । ୨୦ ଜଣ ଛାତ୍ରଛାତ୍ରୀ ଫାଷ୍ଟ ଡିଭିଜନ ପାଉଥିଲେ । ଲୋକ ସମ୍ପର୍କ ଓ ବିଭାଗୀୟ ପରାମର୍ଶ ମଧ୍ୟ ଭଲ ଥିଲା ।

କୁସୁପୁରରେ ଥିବା ସମୟରେ ଶ୍ରୀମାନ୍ ଜୟରାମ ପରିଡ଼ା ମାଟ୍ରିକ ପରୀକ୍ଷାରେ ସାରା ଓଡ଼ିଶାରେ ୭ମ ସ୍ଥାନ ଲାଭ କରିଥିଲେ । ମୋର ସୌଭାଗ୍ୟ ଯେ, ଦୋହଳର

ମୋର ଛାତ୍ର ଶ୍ରୀମାନ୍ ରମେଶ ପଣ୍ଡା ବର୍ତ୍ତମାନ ଜଣେ ଆଇ. ଏ. ଏସ୍. ଅଫିସର । ଏଠାରୁ (ଜଗନ୍ନାଥପୁର ହାଇସ୍କୁଲ, ତିରଣ, କଟକରୁ) ପୂର୍ଣ୍ଣ ସରକାରୀ 'ଏ' ଟାଇପ୍ ସ୍କୁଲର ପ୍ରଧାନ ଶିକ୍ଷକ ଭାବେ ୧୯୭୦ ଜୁଲାଇରେ ଆସିଲି ପରେ ଗତ ୧୯୭୨ ବାର୍ଷିକ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ସମଗ୍ର ଓଡ଼ିଶାରେ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀ ମାନଙ୍କ ମଧ୍ୟରେ ପ୍ରଥମ ୧୦ ଜଣଙ୍କ ଭିତରେ ୧ମ ସ୍ଥାନ ଅଧିକାର କରି, ନିଜର, ପିତା ମାତାଙ୍କର, ଏ ଅନୁଷ୍ଠାନ ଓ ଅଞ୍ଚଳର ତଥା ମୋର ଓ ସହକର୍ମୀ ମାନଙ୍କର ଗୌରବ ବୃଦ୍ଧି କରିଛନ୍ତି । ୧୯୭୩ ବାର୍ଷିକ ପରୀକ୍ଷାରେ ଏହି ସ୍କୁଲରୁ ମୋର ଛାତ୍ର ଶ୍ରୀମାନ୍ ବିଭୂତି ଭୂଷଣ ତ୍ରିପାଠୀ ମଧ୍ୟ ୧୯୭୩ର ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ସାରା ଓଡ଼ିଶାରେ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ୯ମ ସ୍ଥାନ ଅଧିକାର କରିଛନ୍ତି । ଏହା କେବଳ ମୋର ଗୁରୁବୃନ୍ଦ, ବରିଷ୍ଠଗୀୟ ପରାମର୍ଶ, ଛାତ୍ରାଭିଭାବକ, ଗୁରୁଜନମାନଙ୍କ ଆଶୀର୍ବାଦ, ସହକର୍ମୀ ମାନଙ୍କ ପରିଶ୍ରମ, ପିଲାର ଦୁର୍ଗୀୟ ପ୍ରତିଭା ଓ ସର୍ବୋପରି ଭଗବାନଙ୍କ ଇଚ୍ଛାରେ ସମ୍ଭାବିତ ହୋଇଛି ମୋର ମାଧ୍ୟମରେ ।

ଯେତେବେଳେ ବନମାଳୀ ବାବୁ ସେ ସ୍କୁଲର ଉପଦେଷ୍ଟା ସମିତିର ଜଣେ ସଭ୍ୟ ଥିଲେ । ପରେ ପରେ ସେ ସେଠାକାର ସରପଞ୍ଚ ହେଲେ । ଜାଣିବାକୁ ପାଇଲି, ବନମାଳୀ ବାବୁ କାନପୁର ମେଟ୍‌କାଫ୍ ମି. ଇ. ସ୍କୁଲ, ସୁଙ୍ଗୁଡ଼ାରେ ଶିକ୍ଷକ ଥିଲେ—ଯାହାକି ବର୍ତ୍ତମାନ ଏନାମ ରସୁଲ ହାଇସ୍କୁଲରେ ପରିଣତ । ସେଠୁ ଆସି ସେ ଦୋହଳରେ ଅନ୍ୟ ସହଯୋଗୀ ଓ ସହକର୍ମୀ ମାନଙ୍କୁ ନେଇ ସ୍କୁଲ ସ୍ଥାପନ କଲେ । ସେଠାରେ ମଧ୍ୟ ଶିକ୍ଷକ ରହିଲେ । ପରେ ସମ୍ପାଦକ, ସଭାପତି ଓ ସଭ୍ୟ ପ୍ରଭୃତି ମଧ୍ୟ ହୋଇଥିଲେ । ସେ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସେ ସେହି ବିଦ୍ୟାଳୟ ପ୍ରତି ଆକୃଷ୍ଟ କରି ସହାୟତା ଓ ସାହାଯ୍ୟ ପାଇଥିଲେ, ରାସ୍ତାଟିଏ ମଧ୍ୟ କରାଇ ଥିଲେ ଗୁନ୍ଦୋଳରୁ ଦାନପୁର ଖୋଷ୍ଟ ଗୋଦାମ ଯାଏ । ମୋ ଗୋଚରରେ ମୁଁ ଯାହା ଜାଣେ—ସେ ହିଁ ସତରେ ସେ ବିଦ୍ୟାଳୟର ଜନ୍ମଦାତା । ତାଙ୍କର ଯୋଗୁଁ ସେଠାରେ ଶିକ୍ଷା—ସଭ୍ୟତାର ବିକାଶ ଘଟିଲା । ମୁଁ ଥିବାବେଳେ ସେ ଗୋଟିଏ ହରିଜନ ଛାତ୍ରାବାସ କରାଇଥିଲେ । ସରକାରଙ୍କଠୁଁ ଟଙ୍କା ଆଣି କାଫ୍‌ଟ ସେଡ୍, କାଫ୍‌ଟ ପ୍ରବର୍ତ୍ତନ ଓ ଏନ୍. ସି. ସି. ପ୍ରବର୍ତ୍ତନ ତାଙ୍କ ପ୍ରେରଣାରେ ମୁଁ କରାଇ ପାରିଥିଲି ।

ସେ ବିପତ୍ନୀକ ଥିଲେ ମଧ୍ୟ ତାଙ୍କର ଏକମାତ୍ର କନ୍ୟା ସନ୍ତାନ କମଳା ଦେବୀଙ୍କୁ ଓ ବହୁ ଗରିବ ଛାତ୍ର-ଛାତ୍ରୀଙ୍କୁ ସ୍ନେହ-ଶ୍ରଦ୍ଧା-ସାହାଯ୍ୟ କରି ଆସୁଥିଲେ । ତାଙ୍କର ଯୋଗୁ ସେ ଅଞ୍ଚଳର ତଥା ଓଡ଼ିଶାର ବହୁ ସ୍ଥାନର ଗରିବ, ଦୁଃସ୍ଥ ଛାତ୍ର ତଥା ମେଧାବୀ ବିଦ୍ୟାର୍ଥୀ ଉପକୃତ ହୋଇ ଆସୁଥିଲେ ।

ସେ ସାମାଜିକ କୁସଂସ୍କାର ଏବଂ ଦେବ ଦେବୀଙ୍କର ଲୋକ ଦେଖାଣିଆ ପୂଜାରାଧନାକୁ ଅଧିକ ପସନ୍ଦ ନ କରି କର୍ମ-ଯୋଗକୁ ଶ୍ରେୟସ୍କର ମନେ କରୁଥିଲେ । ହେଲେ, ସେ ବିରାଟ ବିଶ୍ୱପତି ଭୂମା ଭଗବାନଙ୍କର ଭଗବତ୍ ଭକ୍ତ ଓ ଆଦର୍ଶର ପୂଜାରୀ । ସେ ସଦା-ସର୍ବଦା କହନ୍ତି —ବଡ଼ ହେବାକୁ ହେଲେ, ଦୃଢ଼ ମନୋବଳ ଦରକାର । ସେ ଭାରି ନିର୍ଭୀକ ଓ ସ୍ପଷ୍ଟବାଦୀ । ସେ ହେଉଛନ୍ତି ଜାତୀୟତା ଭାବାପନ୍ନ । ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ମାନବ ପ୍ରେମ, ଦୟାନନ୍ଦଙ୍କ ଭଳି Anglo-vedic ଦର୍ଶନ ହେଉଛି ତାଙ୍କର ଜୀବନାଦର୍ଶ । ତାଙ୍କର ହେଉଛି ସଂଗ୍ରାମୀ-ସୈନିକର ଅଗ୍ରଗତି-ପ୍ରଗତିର ଅଭିଳାଷ, ଆଶା ଓ ଆକାଙ୍କ୍ଷା । ସେ ବାହାରକୁ ରୁକ୍ଷ, କର୍କଶ ବୋଧ ହେଉଥିଲେ ହେଁ ତାଙ୍କ ଅନ୍ତରରେ ପ୍ରେମର ଫଲ୍‌ଗୁ ପ୍ରବାହିତ । ସେ କଠୋର କିନ୍ତୁ ଉଦାର । ମିତବ୍ୟୟୀ ମାତ୍ର ବଦାନ୍ୟ । ଗାନ୍ଧୀ, ଗୋପବନ୍ଧୁ, ପ୍ୟାରୀମୋହନ ଆଚାର୍ଯ୍ୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ରାମକୃଷ୍ଣ ପରମହଂସ, ଶ୍ରୀରାମ, ଶ୍ରୀକୃଷ୍ଣ, ଜଗନ୍ନାଥ, ରାଜା ରାମମୋହନଙ୍କ ଆଦର୍ଶ ଦ୍ୱାରା ସେ ଅନୁପ୍ରାଣିତ ହେଲା ପରି ମନେହୁଏ । ସେ ମାର୍କସ-ଲେନିନ୍‌ଙ୍କ ଭଳି ବିପ୍ଳବ ଓ ଗତିଶୀଳତାକୁ ପସନ୍ଦ କରନ୍ତି—ଅହିଂସା ମାର୍ଗରେ ନୈତିକ ଯୁକ୍ତିଯୁକ୍ତ ଦାବୀ ଉପସ୍ଥାପନ ଛଳରେ—

ହିଂସାକାଣ୍ଡରୁ ବହୁ ଦୂରରେ ରହି—ସମୟ, ସ୍ଥାନ, ପାତ୍ର, ପରିବେଶ ସହ ଯେତେଟା ପାରୁଥାଏ ଖାପ ଖୁଆଇଲା ପରେ ।

ଲେଖକ ଭାବେ ମୁଁ ତାଙ୍କ ସଂସ୍ପର୍ଶରେ ଯେତେବେଳେ ଆସିଲି । ଜାଣିବାକୁ ପାଇଲି, ମାତ୍ର ମାଇନର ପାଶ୍ କରି ନର୍ମାଲ ଟ୍ରେନିଂ ସ୍କୁଲରେ ପଢ଼ିଥିଲେ ସୁଦ୍ଧା ଓଡ଼ିଆ ଭାଷା, ସାହିତ୍ୟ ଓ ହିସାବ-କିତାବରେ ସେ ପ୍ରଶ୍ତ ଦକ୍ଷ । ତାଙ୍କର ଇଂରାଜୀ ଲେଖା ଚିଠିପତ୍ରରୁ ମୁଁ ତାଙ୍କୁ ଜଣେ ପଣ୍ଡିତ ବ୍ୟକ୍ତି ବୋଲି ଜାଣିଥିଲି । ଯେତେବେଳେ ସେ ଗୋଟିଏ ଅଭିଧାନ ସଂକଳନ କରି କୌଣସି ଏକ ପ୍ରକାଶକଙ୍କୁ ଟ ୧୦୦୧-୦୦ ଙ୍କାରେ ବିକ୍ରୟ କରିଥିବାରୁ ମୁଁ ତାଙ୍କ ଠାରୁ ଶୁଣିଥିଲି । ମୁଁ ୧୯୫୦-୫୧ରୁ ଧାରାବାହିକ ଭାବରେ ରାମକୃଷ୍ଣ ନନ୍ଦଙ୍କ ସମ୍ପାଦିତ "ସଂସାର" ରେ ଲେଖି ଆସୁଥିଲି । ସେହି ଦୋହଳ ଅବସ୍ଥାନ ସମୟରେ ୫ମ, ୬ଷ୍ଠ ବାର୍ଷିକ ଓଡ଼ିଆ ଗ୍ରନ୍ଥ ଶ୍ରୀ ମହେଶ୍ୱର ମହାନ୍ତି କେ. ମହାପାତ୍ରଙ୍କ ଗ୍ରନ୍ଥସାଥୀ ପ୍ରେସରୁ 'ମନ ପବନ' ପ୍ରକାଶନର ଉଦ୍ୟମ କରି ମତେ ଲେଖା ଦେବାକୁ ଲେଖିଥିଲେ ଧାନମଣ୍ଡଳରୁ । ମୁଁ ମଧ୍ୟ ଦେଲି । କେତୋଟି ବାହାରିଲା । ସେତିକବେଳେ ବ୍ରହ୍ମଗିରୀ ମହାଶୟ "ହୁକେ ହୋ" ଶିଶୁ ସାହିତ୍ୟ ଲେଖି ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ହେଲେ ଓ ସରପଞ୍ଚ ପଦବୀ ଛାଡ଼ି "ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ" ଗଠନ କରି ଜଣେ ଶକ୍ତିଶାଳୀ ସଂଗଠକ ଭାବେ ଏବେ ମଧ୍ୟ ପରିଚୟ ଦେଇ ଆସୁଛନ୍ତି । ସେ ଏବେ ବେସରକାରୀ ଶିକ୍ଷକ ମହା-ସଂଘର ସଭାପତି ଓ ଶିକ୍ଷା ପରିଦର୍ଶକ, ନିର୍ଦ୍ଦେଶକ, ମନ୍ତ୍ରୀ, ସରକାର ଏବଂ ପରିଚାଳନା ସମିତି, ପ୍ରଧାନ ଶିକ୍ଷକ, ଅଧ୍ୟକ୍ଷ, ଅଧ୍ୟାପକ ଓ ଶିକ୍ଷକମାନଙ୍କ ମଧ୍ୟରେ ଏକ ଯୋଗସୂତ୍ର ଅଧିକାରୀ ଭାବେ କାମ କରୁଛନ୍ତି । ତାଙ୍କ ରଚିତ "ଚରିତ ଓ ଚରିତ୍ର" ଗୋଟିଏ ଭଲ ବହି ।

ପତ୍ନୀ-ବିୟୋଗ ପରେ ସେ ସେବା, ସଂଗଠନ, ଶିକ୍ଷା, ଶିକ୍ଷାୟତନ ପୁନର୍ଗଠନ ଆଦିରେ ଆତ୍ମ-ନିୟୋଗ କଲେ, ପଣ୍ଡିତ ନେହେରୁ ଯେପରି ରାଜନୀତିରେ ଓ ଭାରତ ଶାସନରେ ନିଜକୁ ହଜାଇ ମଜାଇ ଦେଇଥିଲେ ।

ବ୍ରହ୍ମଗିରୀ ମହାଶୟ ଥରେ ମୋର ଅନୁରୋଧ କ୍ରମେ ପିଲାଙ୍କୁ ନୈତିକ ଶିକ୍ଷା, ସଦାଚାର, ଶିଷ୍ଟାଚାର, ସଂସ୍କାର, ସେବା ସମ୍ବନ୍ଧରେ ବୁଝାଇ ଥିଲେ । ଆମେ ସ୍କୁଲ ନିକଟସ୍ଥ ବେଲମାଳ ମହାପୁରୁଷଙ୍କ ହତାରେ ବନଭୋଜୀ କଲେ, କେତେକ କୀର୍ତ୍ତନ କରନ୍ତି, ଭଜନ-ଜଣାଣ ବୋଲନ୍ତି ତାଳ ଓ ଖଞ୍ଜଣି ସହ । ଉକ୍ତ ମହାଶୟ ଆମନ୍ତ୍ରିତ ହୋଇ ଯାଆନ୍ତି ଓ ପଂକ୍ତି ଭୋଜନରେ ଯୋଗ ଦେଇସାରି ଚାଲିଆସନ୍ତି । ନିଜେ ଆଦର୍ଶ ଓ ଅଗ୍ରଣୀ ହେବା ହେଲା ତାଙ୍କର ଲକ୍ଷ୍ୟ । ତେଣୁ ତାଙ୍କର ଏ ଆଚରଣରେ ଯଦିଓ ସେ ଦେବଦେବୀଙ୍କୁ ଦଣ୍ଡବତ ନ କରନ୍ତି ଆମେ ବିସ୍ମିତ ହେବା କଥା ନୁହେଁ । କାରଣ ଗୀତା କହୁଛି—"ଯଦ୍ ଯଦାଚରତି ଶ୍ରେଷ୍ଠଃ, ତତୈବ ଇତରାଃ ଜନା ।"

୧୯୬୨ରେ ଚୀନର ଭାରତ ଆକ୍ରମଣ ବେଳେ ମୁଁ "ସମର ସଂଗୀତ" ଲେଖି ଲୋକ-ସଂପର୍କ ବିଭାଗକୁ ଦେଉଥିଲି ଓ ବେସରକାରୀ ପ୍ରତିରକ୍ଷା ପାଇଁ ବ୍ରହ୍ମଗିରୀଙ୍କ ସାହଚର୍ଯ୍ୟରେ ସଭାସମିତି କରାଇଥିଲି ।

ତାଙ୍କ ଅଭିଧାନ ପ୍ରଣୟନରୁ ପ୍ରେରଣା ଗ୍ରହଣ କରି ମୁଁ ଦୋହଳୀରେ ଥିବା ସମୟରେ **A model Guide to stories of Noble character** ଲେଖିଥିଲି, ଯାହାକି ପ୍ରକାଶିତ ଓ **A modern word Book** ଲେଖିଥିଲି । ତାହା ମୋର ଦୁଃସ୍ଥତା ଯୋଗୁ ଆଜିଯାଏ ପ୍ରକାଶିତ ହୋଇ ପାରିନି ।

ମୁଁ ଦୋହଳୀକୁ ଗିବା, ସେଠାରୁ ମୁରଲୀବାବୁ-ଙ୍କର କୁସୁପୁର ବଦଳି ହେବା, ସ୍କୁଲର ଆଉ କେତେକ ଅଭାବ ଅସୁବିଧା, ଆଭ୍ୟନ୍ତରୀଣ ବ୍ୟାପାର ଓ ସ୍ଥାନୀୟ ଗ୍ରାମ୍ୟ ରାଜନୀତି ଦୃଷ୍ଟିରୁ ବ୍ରହ୍ମଗିରୀଜୀ ବିଦ୍ୟାଳୟ ଓ ମୋ ପାଖକୁ ପ୍ରଥମେ ପ୍ରଥମେ ଆସୁନଥିଲେ । ପରେ ମୁଁ ତାଙ୍କୁ ଖୋଜିବାରେ, ପଚାରିବାରେ, ଜାତୀୟ ଦିବସ ପାଳନରେ ସେ ଆଗ ହୋଇ ଆସନ୍ତି । କଟକ, ଭୁବନେଶ୍ୱର, ପୁରୀ, ବାଙ୍କୀ ବା ଓଡ଼ିଶାର ଯେଉଁଠିକି ଯାଇଥିଲେ ମଧ୍ୟ ଆସି ମତେ ପ୍ରଥମେ ସାକ୍ଷାତ ଦିଅନ୍ତି ।

ମୁଁ ୧୯୭୫ରେ ଦୋହଲରୁ ଗାନ୍ଧି-ଶିକ୍ଷାଶ୍ରମ, ଚମ୍ପାପୁରକୁ ବଦଳି ହେଲି । ଏହି ସମୟରୁ ମୁଁ ବ୍ରହ୍ମଗୃହୀଙ୍କର ଦେଖା ପାଇଲି କି ତାଙ୍କର ଘନିଷ୍ଠ ସଂପର୍କରେ ଆସିଲି । ତେବେ ନଭେମ୍ବର, ୧୮ ତାରିଖ, ୧୯୭୩ ମସିହାରେ ତାଙ୍କର ୭୯ ତମ ଜନ୍ମ ଜୟନ୍ତୀ ପାଳନ ହେଉଥିବା ଅବସରରେ ମୁଁ ଏ ଜୟନ୍ତୀ ପାଳନ କମିଟିର ଉପଦେଷ୍ଟା ପ୍ରବୀଣ ରାଜମାତଙ୍କ, ତୀକ୍ଷ୍ଣ କୂଟମାତକ, ପ୍ରଖ୍ୟାତ ଐତିହାସିକ, ପ୍ରଶାସକ ଓ ପ୍ରବୁଦ୍ଧ ସାହିତ୍ୟିକ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ପ୍ରଶଂସା ବାଢ଼ି ବ୍ରହ୍ମଗୃହୀ ମହାଶୟଙ୍କର ଶିକ୍ଷା—ସାହିତ୍ୟ—ସେବା ପ୍ରେମ ଓ ସମସ୍ୟା ସମାଧାନର ବଳିଷ୍ଠ ବ୍ୟକ୍ତିତ୍ୱ ଓ ପ୍ରତିଭା ପାଇଁ ତାଙ୍କ ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ବାଢ଼ି, ଆମର ଭାବୀ ବଂଶଧର ମାନଙ୍କୁ "ବୀରପୂଜା" କରି ଶିଖିବାକୁ ଚେତାଇ ଦେଇ ରହୁଛି ।

● ପ୍ରଧାନ ଶିକ୍ଷକ
ଜଗନ୍ନାଥ ପୁର ହାଇସ୍କୁଲ
ତିରଣ, କଟକ ।



# ସିଏ ଆମର

ଶ୍ରୀ ନିର୍ଭୟ କୁମାର ପାଣି

ଭୁଲିଛୁ ସିଏ ଆପଣା ପର ସଭିଙ୍କୁ କହେ ଏକ,
ତାହାରି ପାଇଁ ବଢେଇ ଆମ ଆମର ସିଏ ଠେକ ।

କେହି ତ ନାହିଁ ଆପଣା ତା'ର କେହି ତ ନାହିଁ ପର,
ପଖୁର ଥରେ କହିବ ସିଏ ଓଡ଼ିଶା ମୋର ଘର ।

ପିଲି କି ବୁଢ଼ା ଶ୍ରେଷ୍ଠ କି ବଡ଼ ସଭିଙ୍କର ସେ ଜଣା,
ଓଡ଼ିଶା ସାଥି ବଢ଼ାଇ ତାର ସଭିଙ୍କ ମନ କଣା ।

ପାଠ ପଢ଼ାଏ ସେ ଶିକ୍ଷକ ଥିଲି କହିଲି ଥରେ—
"ଶୋଇଲି ପୁଅର ଭାଗ କି ଥାଏ ମରତ ପରେ ?"

ବଳଗୋଳ
ଢେଙ୍କାନାଳ



# ସାଧକ ବନମାଳୀ ବ୍ରହ୍ମଚାରୀ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲ

ବନମାଳୀ ବାବୁଙ୍କ ବ୍ରହ୍ମଚାରୀ ସଂଜ୍ଞା ତାଙ୍କର ପାରିବାରିକ କି ଆତ୍ମକୃତ, ଏ ବିଷୟରେ ମୋତେ ବହୁ ଲୋକ ପ୍ରଶ୍ନ ପଚାରିଛନ୍ତି । ମୋର ଅନୁସନ୍ଧିତ୍ସୁ ମନରେ ମଧ୍ୟ ସେହି ପ୍ରଶ୍ନ ଉଦିତ ହୋଇଥିଲା । ବନମାଳୀ ବାବୁ କହନ୍ତି—ତାଙ୍କର କୌଳିକ ସଂଜ୍ଞା ଥିଲା 'ପଣ୍ଡା' । ପଞ୍ଚବିଂଶତିତମ ବର୍ଷ ବୟସରେ ବିପତ୍ନୀକ ହେବାରୁ ସେ ଦ୍ୱିତୀୟ ଦାରପରିଗ୍ରହ ନ କରି ସଂସାର ପ୍ରତି ବୀତସ୍ପୃହ ହୋଇ ପଡ଼ିଲେ ଏବଂ ବ୍ରହ୍ମଚାରୀର ଜୀବନ ଯାପନ କଲେ । ଯେଉଁମାନେ ଏକଥା ଜାଣିଲେ, ସେମାନେ ଚିଠିପତ୍ରରେ 'ବ୍ରହ୍ମଚାରୀ ବନମାଳୀ ପଣ୍ଡା' ବ୍ୟବହାର କଲେ । ଏହିପରି କିଛି ଦିନ ଚାଲିଲା ପରେ ବନମାଳୀ ବାବୁ 'ପଣ୍ଡା' ଶବ୍ଦଟିକୁ ଲୋପ କରି ତା ବଦଳରେ ବ୍ରହ୍ମଚାରୀ ଶବ୍ଦଟି ବ୍ୟବହାର କଲେ ।

ତାଙ୍କ ସହିତ ମୋର ବିଗତ ଅଠାଇଶି ବର୍ଷର ସାହଚର୍ଯ୍ୟ ଯୋଗୁଁ ତାଙ୍କର ଦୈନନ୍ଦିନ ଜୀବନ ଧାରା ସମ୍ପର୍କରେ ମୁଁ ବିଶେଷ ଭାବରେ ଅବହିତ ଏବଂ ତାଙ୍କର ବ୍ରହ୍ମଚାରୀ ଜୀବନର ବାସ୍ତବତାକୁ ମୁଁ ନାନା ଭାବରେ ଉପଲବ୍ଧି କରିପାରିଛି । ଜଣେ ସନ୍ନ୍ୟାସୀ ଅପେକ୍ଷା ଅଧିକ ସମ୍ମାନ ମୁଁ ତାଙ୍କୁ ଦିଏ । ସମସ୍ତ ପ୍ରକାର ବିଳାସ ବ୍ୟସନ, ପ୍ରଲୋଭନ ଏବଂ ଆଧୁନିକ ଜୀବନର ଆଚାର ବ୍ୟବହାର ଓ ପାରିବାରିକ ସମ୍ପର୍କଠାରୁ ଦୂରରେ ରହି ଜଣେ ସନ୍ନ୍ୟାସୀ ଭଗବାନଙ୍କୁ କଠୋର ସାଧନା କରେ । କିନ୍ତୁ ବନମାଳୀ ବାବୁ ଆମରି ଭିତରେ ଏବଂ କନ୍ୟା ଓ ନାତିନାତୁଣୀଙ୍କ ମଧ୍ୟରେ ଜୀବନ ଅତିବାହିତ କରନ୍ତି । ଆଧୁନିକ ଆଚାର ବ୍ୟବହାର ମଧ୍ୟରେ ଥାଇ ସୁଦ୍ଧା ସେ ବିଳାସ ବ୍ୟସନ ପ୍ରତି ବୀତସ୍ପୃହ । ସେ ଚାହା ଖାଆନ୍ତି, ପାନ ଚୋବାନ୍ତି, ସମୟେ ସମୟେ କେହି ସିଗାରେଟ୍‌ଟିଏ ଦେଲେ ତାହାର ମଧ୍ୟ ସଦ୍ ବ୍ୟବହାର କରନ୍ତି । ଚଳଚ୍ଚିତ୍ର ଜଗତ୍ ଠାରୁ ଦୂରରେ ରହି ମଧ୍ୟ କୌଣସି ବନ୍ଧୁଙ୍କ ଏକାନ୍ତ ଅନୁରୋଧ ଏଡ଼ି ନ ପାରି ତାହା ସମୟେ ସମୟେ ଉପଭୋଗ କରିଥାନ୍ତି । ବିଚିତ୍ର ତାଙ୍କର ଚରିତ୍ର ।

ଅନେକ ସମୟରେ ସେ କହନ୍ତି—ଶ୍ରୀମାଙ୍କ ଆଶୀର୍ବାଦ ସମ୍ବଳିତ ହସ୍ତଲିପିକୁ ତକିଆ ତଳେ ରଖି ସମସ୍ତ ପ୍ରକାର ଅନ୍ୟାୟ ଓ ଦୁର୍ନୀତିରେ ଅଭ୍ୟସ୍ତ ହୋଇ ହସ୍ତ ଓ ମସ୍ତିଷ୍କକୁ କଳଙ୍କିତ କରିବା କେଉଁ ବୁଦ୍ଧିମାନ୍‌ର କାର୍ଯ୍ୟ ?

ସନ୍ନ୍ୟାସୀ ପରି ଆସନରେ ବସି ଭଗବାନଙ୍କୁ ଆରାଧନା କରିବାର କେହି କେବେ ତାଙ୍କୁ ଦେଖିନାହିଁ । କିନ୍ତୁ ବାସ୍ତବରେ ସେ ଜଣେ ସତ୍ୟ ପୂଜକ । ଗାନ୍ଧୀଜୀଙ୍କ ଭାଷାରେ 'ଭଗବାନ୍ ହିଁ କର୍ତ୍ତବ୍ୟ ଏବଂ କର୍ତ୍ତବ୍ୟହିଁ ଭଗବାନ' । ଏହାହିଁ ତାଙ୍କର ଜୀବନ ଦର୍ଶନ । ବ୍ରହ୍ମଚାରୀ ଅତି ମାତ୍ରାରେ କର୍ତ୍ତବ୍ୟପରାୟଣ ଏବଂ ଭଗବତ୍-ସୃଷ୍ଟ ପ୍ରତ୍ୟେକ ଜୀବ ପ୍ରତି ସେ ସ୍ନେହଶୀଳ ।

ଜଣେ ଶିକ୍ଷକ ଭାବରେ ଦୋହଲ ସହଯୋଗ ମଧ୍ୟ-ଇଂରାଜୀ ସ୍କୁଲ ପ୍ରତିଷ୍ଠା କରିବା ଓ ତାହାକୁ ପୁଣି ଦୋହଲ ମଡେଲ ହାଇସ୍କୁଲରେ ପରିଣତ କରିବା ପାଇଁ

ସେ ଯେଉଁ ତ୍ୟାଗ କରିଥିଲେ, ତାହାର ଇୟତ୍ତା ନାହିଁ । ତାହା ଛଡ଼ା ସର୍ବସାଧାରଣ ସେଥିପାଇଁ ଅନେକେ ବହୁତେ ଯେଉଁ ଦାନ କରିଥିଲେ, ତହିଁରେ ତାଙ୍କର ପ୍ରେରଣା ନିହିତ ଥିଲା । ସ୍କୁଲଟିକୁ ଆଦର୍ଶ ସ୍ଥାନୀୟ କରିବା ପାଇଁ ତାଙ୍କର ବଳବତ୍ତୀ କାମନା ରୂପାୟିତ ହୋଇ ପାରିଲା ନାହିଁ । ବର୍ତ୍ତମାନର ସାମାଜିକ ଆଭିମୁଖ୍ୟ ସେଥିରୁ ପ୍ରତି ବର୍ଷ କେବଳ କେତୋଟି ମାଟ୍ରିକୁଲେଟ୍ ସୃଷ୍ଟି କରିବାରେ ସହାୟକ ହୋଇଛି ।

ଦୋହଲା-ସହଯୋଗ ମଧ୍ୟ-ଇଂରାଜୀ ବିଦ୍ୟାଳୟର ମାତୃଭାଷା ଶିକ୍ଷକ ଭାବରେ ସେ ଓଡ଼ିଆ ସାହିତ୍ୟ ଓ ଗଣିତ ପଢ଼ାଉଥିଲେ ହେଁ ଅନ୍ୟ ସକଳ ବିଷୟରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ଅବସର ସମୟରେ ସେ ଅନ୍ୟ ଶିକ୍ଷକମାନଙ୍କ ସହିତ ଇଂରାଜୀ ବିତର୍କରେ ଅଂଶ ଗ୍ରହଣ କରି ଇଂରାଜୀ ଭାଷାରେ ଉତ୍ତମ ଜ୍ଞାନ ଆହରଣ କରିପାରୁଥିଲେ । ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାର ବିଭିନ୍ନ ପୁସ୍ତକ ଏବଂ ପତ୍ର ପତ୍ରିକା ସେ ନିୟମିତ ଭାବରେ ପଢ଼ୁଥିଲେ, ଯାହାର ଫଳରେ ସେ ଅନେକ ପାଠ୍ୟ ପୁସ୍ତକ, ଶିଶୁ ସାହିତ୍ୟ ଇତ୍ୟାଦି ପ୍ରଣୟନରେ ସମର୍ଥ ହୋଇଛନ୍ତି । ତାଙ୍କର ଦୁଇ ଖଣ୍ଡ ଶିଶୁ ସାହିତ୍ୟ 'ହୁକେ ହୋ' ଓ 'ବନର ମନ କଥା' ଯଥାକ୍ରମେ ରାଷ୍ଟ୍ରପତି ଓ ରାଜ୍ୟସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଛି । ଏହାଛଡ଼ା 'ଗୁଣ ଦର୍ପଣ', 'କିଏ କେମିତି', 'ଗୁରୁ ଚରିତ' 'ଚରିତ ଚରିତ', ଓ 'ଭକ୍ତ ଓ ଭଗବାନ' ଲେଖି ସେ ଶିଶୁ ଓ କିଶୋରମାନଙ୍କ ମଧ୍ୟରେ ଅତି ପ୍ରିୟ ହୋଇ ପାରିଛନ୍ତି । ଛଅ ସାତ ବର୍ଷର ଶିଶୁ 'ହୁକେ ହୋ' ବହି ଖଣ୍ଡିକ ପଢ଼ି ପାରିବାକୁ ସମର୍ଥ ନ ହେଲେହେଁ, ଅନ୍ୟ କେହି ଜଣେ ପଢ଼ିଲେ, ସେ ତାହା ମନୋଯୋଗ ସହକାରେ ଶୁଣି ଆନନ୍ଦରେ ଆତ୍ମହରା ହେବାର ମୁଁ ଲକ୍ଷ୍ୟ କରିଛି ।

ତାଙ୍କଠାରେ ଜଣେ ଜନନାୟକର ସମସ୍ତ ଗୁଣ ପରିପୂର୍ଣ୍ଣ । ପ୍ରତ୍ୟକ୍ଷ ରାଜନୀତିରେ ଅଂଶ ଗ୍ରହଣ କରିଥିଲେ ସେ ଜଣେ ଉତ୍ତମ ବ୍ୟବସ୍ଥାପକ ହୋଇ ପାରିଥାନ୍ତେ । ଯାହାହେଉ, ସେ ନିଜେ ଶିକ୍ଷକ ସଂଘ ଗଠନ କରି ଦେଶସେବା ପଥରେ ଅଗ୍ରସର ହୋଇଛନ୍ତି । ଭୋଗୀ ଜାଣେ ରୋଗର ଯନ୍ତ୍ରଣା । ସେ ପୂର୍ବେ ଏକାଧିକ ସରୋଇ ବିଦ୍ୟାଳୟରେ ଶିକ୍ଷକତା କରି ଶିକ୍ଷକ ସମାଜର ସୁଖ ଦୁଃଖ ବେଶ୍ ହୃଦୟଙ୍ଗମ କରିପାରିନ୍ତି । ପରିଚାଳନା ସମିତି ତଥା ବିଭାଗୀୟ କର୍ମକର୍ତ୍ତାଙ୍କ ଦ୍ୱାରା ଅନ୍ୟାୟ ଭାବରେ ଲାଞ୍ଛିତ ଶିକ୍ଷକ ପାଖରେ ସେ ସାହସର ସହିତ ଦଣ୍ଡାୟମାନ ହେବାକୁ ଚରମ ଓ ପରମ କର୍ତ୍ତବ୍ୟ ବୋଲି ମନେ କରନ୍ତି ।

୬୮ ବର୍ଷ ବୟସରେ ଦୀର୍ଘ ପଥ ପାଦରେ ଚାଲି, ରାତି ଦୁଇ ଘଣ୍ଟା ପର୍ଯ୍ୟନ୍ତ କାର୍ଯ୍ୟରତ ରହି, ସେ ତାଙ୍କ ଶକ୍ତିମତ୍ତାର ପରିଚୟ ଦେବା ସଙ୍ଗେ ସଙ୍ଗେ ଯୁବକ ମାନଙ୍କ ଶରୀରରେ ଭୟର ଚମକ ସୃଷ୍ଟି କରନ୍ତି । ନିଜର ଫାଇଲ୍ କାମ, କେତେକ ଚିଠିର ଉତ୍ତର ନିଜେ ଲେଖିବା, ସହଯୋଗୀମାନଙ୍କୁ ଲେଖିବା ପାଇଁ କେତେକ ଉତ୍ତର ଡାକ ଦେବା, ସଂଘର ହିସାବ ଠିକ୍‌ନଖି ଦେଖିବା, ଶିକ୍ଷକ ଦର୍ପଣ ପାଇଁ ଲେଖିବା, ପ୍ରାପ୍ତ କବିତା ଓ ପ୍ରବନ୍ଧାଦି ସଂଶୋଧନ କରିବା ଓ ପ୍ରୁଫ୍ ଦେଖିବା ଏବଂ ନିଜର ବହି ଲେଖିବା ଇତ୍ୟାଦି ନାନା କାର୍ଯ୍ୟରେ ସେ ଯେଉଁ ଅକ୍ଳାନ୍ତ ଶ୍ରମର ପରିଚୟ ଦିଅନ୍ତି, ତାହା ଅନୁକରଣୀୟ ।

ବ୍ରହ୍ମଗିରି ବଡ଼ ଦୟାଶୀଳ ବ୍ୟକ୍ତି । ରାସ୍ତା କଡ଼ରେ ବୁଲା କୁକୁରର ଯନ୍ତ୍ରଣା ଦେଖିଲେ ବି ସେ ଅଧୀର ହୋଇ ପଡ଼ନ୍ତି । ଅନେକ ଗରିବ ଛାତ୍ର ତାଙ୍କର ଅକୁଣ୍ଠିତ ଦାନରେ ନିଜକୁ ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ କରି ପାରିଛନ୍ତି । ଅସୂୟାପରାୟଣ କେତେକ ବ୍ୟକ୍ତିଙ୍କୁ ସେ ଘୃଣା ନ କରି ଆନନ୍ଦରେ ସ୍ୱାଗତ କରିଥିବା ମୁଁ ଦେଖିଛି । ସେ ଶତ୍ରୁକୁ ମଧ୍ୟ ତାହାର ବିପଦରେ ସାହାଯ୍ୟ କରିଥାନ୍ତି ।

ସେ ନିଜକୁ ନିଜେ ଗଢ଼ିଛନ୍ତି । ଆଶ୍ଚର୍ଯ୍ୟଜନକ ଭାବରେ ସ୍ୱାବଲମ୍ବନଶୀଳ ହୋଇ ତାଙ୍କର କେତେକ ସହପାଠୀ ଜୀବନରେ ସୁପ୍ରତିଷ୍ଠିତ ଥିଲେ ହେଁ ସ୍ୱାର୍ଥ ପାଇଁ ସେ କେବେ ହେଲେ କାହାରି ଦ୍ୱାରସ୍ଥ ହୋଇ ନାହାନ୍ତି । ବରଂ ଅନ୍ୟମାନଙ୍କୁ ସାହାଯ୍ୟ କରିବାକୁ ସେ

ସେମାନଙ୍କୁ ପ୍ରବର୍ତ୍ତାଇଛନ୍ତି । ତାଙ୍କ ଠାରୁ ଅନେକ ଲୋକ ଧାର ସୂତ୍ରେ ଅର୍ଥ ନେଇ ତାଙ୍କୁ ପ୍ରତାରିତ କରିଥିଲେ ହେଁ ସେ ସେଥିପାଇଁ ବ୍ୟଥିତ ହୋଇ ନାହାନ୍ତି । ସେ ନିଃସ୍ୱାର୍ଥ, ସାଧୁ ଓ ଚରିତ୍ରବାନ୍ । ଆଜିର ନିରାଶବାଦୀ ଯୁବଗୋଷ୍ଠୀ ସେମାନଙ୍କ ସ୍ୱକୀୟ ଚରିତ୍ର ଓ ଭବିଷ୍ୟତ୍ ଗଠନ ପାଇଁ ବନମାଳୀ ବାବୁଙ୍କ ପଦାଙ୍କ ଅନୁସରଣ କରିବା ଉଚିତ ।

ସେ ସମସ୍ତ ଐହିକ ସୁଖ ସମ୍ଭୋଗ ପରିତ୍ୟାଗ କରିଛନ୍ତି । କେହି ପ୍ରତାରଣା ବା ବିଶ୍ୱାସଘାତକତା କଲେ ସେଥିପାଇଁ ସେ ଅସନ୍ତୋଷ ପ୍ରକାଶ କରିବାର ଦେଖାଯାଇ ନାହିଁ । ସେ ନିର୍ବିକାର ଚିତ୍ତରେ ଘାସ ଉପରେ ଅଥବା ତୁଳୀ-ତଳ୍ପ ଉପରେ ଶୋଇ ପାରନ୍ତି । ସନ୍ତୋଷରେ ଆତ୍ମହରା ହେବା କିମ୍ବା ଅସନ୍ତୋଷରେ ମ୍ରିୟମାଣ ହେବା ତାଙ୍କର ପ୍ରକୃତି-ସୁଲଭ ନୁହେଁ । "ଦୁଃଖେଷୁ ଅନୁଦ୍‌ବିଗ୍ନମନା ସୁଖେଷୁ ବିଗତସ୍ପୃହଃ "—ଏହି ଗୀତୋକ୍ତ ବଚନର ସେ ପ୍ରତୀକ । ସୁଖ ଦୁଃଖ ତାଙ୍କ ପାଖରେ ସମାନ ।

କୌଣସି ବ୍ୟକ୍ତି ତାଙ୍କର ଆତିଥ୍ୟ ଗ୍ରହଣ କଲେ ସେ ଦ୍ୱିଧାହୀନ ଭାବରେ ନିଜର ମଶାରି ଖଣ୍ଡିକ ଅତିଥିଙ୍କୁ ଦେଇ ମଶା-ସମାକୀର୍ଣ୍ଣ କଟକ ସହରରେ ଅନାବୃତ ଭାବରେ ଶୋଇ ପାରନ୍ତି । ଯେମନ୍ତ କି ମଶା ଓ ଓଲିଆ ଦଂଶନରେ ତାଙ୍କ ଦେହ ବଧିର ।

ସେ ଏକାଧାରରେ ସନ୍ନ୍ୟାସୀ, ଦେଶପ୍ରେମୀ, ଜନନାୟକ, ବାଗ୍ମୀ, ଲେଖକ, ଶିକ୍ଷକ ଏବଂ ସର୍ବୋପରି ଜଣେ ଉଚ୍ଚ କୋଟିର ସଙ୍ଗଠକ । ତାଙ୍କର ସାଙ୍ଗଠନିକ ଶକ୍ତିର ପଟାନ୍ତର ନାହିଁ । ଭଗବାନ୍ କରନ୍ତୁ, ସେ ଦୀର୍ଘ ଜୀବନ ଲାଭ କରି ଦେଶର ଭବିଷ୍ୟତ୍ ନାଗରିକ-ମାନଙ୍କୁ ସୁପଥର ସନ୍ଧାନ ଦିଅନ୍ତୁ ।

ପରିଶେଷରେ ଜୟନ୍ତୀ ସମିତିପକ୍ଷରୁ ସ୍ମରଣିକା ପ୍ରକାଶ ପାଇଁ ଯେଉଁ ଆନ୍ତରିକ ଉଦ୍ୟମ ହୋଇଛି, ସେଥିପାଇଁ ଏହି ସମିତିର ସମସ୍ତ ସଭ୍ୟଙ୍କୁ ଧନ୍ୟବାଦ ଦେଉଛି । ଏ ପ୍ରବନ୍ଧଟି ଲେଖି ମୁଁ ଆଶା କରୁଛି ଯେ, ଏ ଯୁଗର ଯୁବଗୋଷ୍ଠୀ ବନମାଳୀ ବାବୁଙ୍କ ବିବିଧ ସଦ୍‌ଗୁଣରେ ଅଧିକାରୀ ହେବାକୁ ଚେଷ୍ଟା କରିବେ ଏବଂ ତାଙ୍କର ଜୀବଦ୍ଦଶାରେ ତାଙ୍କୁ ପ୍ରତ୍ୟକ୍ଷ ଭାବେ ଦେଖି ଦେଶକୁ ଉନ୍ନତି ପଥରେ ଆଗେଇ ନେବାକୁ ଚେଷ୍ଟିତ ହେବେ ।

● ପ୍ରଧାନ ଶିକ୍ଷକ
ନନ୍ଦକିଶୋର ବିଦ୍ୟାମନ୍ଦିର
କଟକ



# ମୁଁ ତାଙ୍କୁ ଯେପରି ଜାଣିଛି

ଶ୍ରୀ ମଦନ ମୋହନ ପଣ୍ଡା

'ମୁଁ ତାଙ୍କୁ ଯେପରି ଜାଣିଛି' ଏହି ଶିରୋନାମାରେ ଋଷି ପ୍ରତିମ ପୂଜ୍ୟ ବ୍ରହ୍ମଋଷିଙ୍କ ସମ୍ପର୍କରେ କିଛି ଲେଖିବାକୁ ଯିବା ବେଳେ ଏହାକୁ ଏକ ଦୁଃସାହସିକ ପଦକ୍ଷେପ ବୋଲି ମୁଁ ବିଚାରୁଛି । ଦୁଃସାହସିକ ବୋଲି ଏଇଥିପାଇଁ କହୁଛି ଯେ, ମହାସାଗରର ଗଭୀରତା, ମହାଶୂନ୍ୟର ବିସ୍ତୃତି ଓ ମହାଶୃଙ୍ଗର ଉଚ୍ଚତାକୁ ମାପିବାପାଇଁ ଯେଉଁ ମାପକାଠିର ଆବଶ୍ୟକତା ରହିଛି, ସେପରି ଏକ ମାପକାଠି ସହିତ ମୁଁ ନିଜେ ପ୍ରସ୍ତୁତ କି ନା ତାହା ହିଁ ମୋ ମନର ପ୍ରଶ୍ନ । ମାତ୍ର ମୋ ମନରେ ଏତିକି ମାତ୍ର ସାନ୍ତ୍ୱନା ଯେ, କୌଣସି ଏକ ଦୁଃସାହସିକ ବ୍ୟକ୍ତିତ୍ୱକୁ ଚଳିଲବାକୁ ଯିବା ବେଳେ କିଛିଟା ଦୁଃସାହସିକତା କରିବାକୁ ହିଁ ପଡ଼ିବ ।

ବ୍ରହ୍ମଋଷିଙ୍କ ସହିତ ମୋର ପ୍ରଥମ ସମ୍ପର୍କ ସ୍ଥାପିତ ହୁଏ ଚିଠିପତ୍ର ମାଧ୍ୟମରେ ୧୯୭୫ ମସିହାରେ । ୧୯୭୪ ଜୁଲାଇ ସଂଖ୍ୟା 'ଆସନ୍ତା କାଲି'ରେ କଞ୍ଚା ହାତର ମୋର ପ୍ରଥମ ଗପଟା ପ୍ରକାଶ ପାଇଲା ପରେ ଦ୍ୱିତୀୟ ଗପ 'ଘର ଓ ବାହାର' 'ଶିକ୍ଷକ ଦର୍ପଣ'ରେ ପ୍ରକାଶ ନିମିତ୍ତ ମୁଁ ପ୍ରେରଣ କରେ । ଗପଟି ପଠାଇବାର ମାତ୍ର ସାତ ଆଠଦିନ ମଧ୍ୟରେ ଗୋଟିଏ ଦିନ ଯେଉଁଦିନ ବ୍ରହ୍ମଋଷିଙ୍କର ମୋ ନିକଟକୁ ପ୍ରଥମ ଚିଠିଟି ପଢ଼ିବାର ସୁଯୋଗ ମୋତେ ମିଳେ, ସେହିଦିନଟି ଆଜି ବି ମୋ ପକ୍ଷରେ ଅବିସ୍ମରଣୀୟ । ଚିଠି ତ ନୁହେଁ, ସୃଜନୀ ଶକ୍ତିକୁ ଜାଗ୍ରତ କରାଇବା ଦିଗରେ ଯେପରି ଗୁଡ଼ାଏ ଅକୃତ୍ରିମ ପ୍ରେରଣା, ଅଯାଚିତ କରୁଣା ଏବଂ ହସ୍ତାକ୍ଷର ପ୍ରତି ଦୃଷ୍ଟି ଦେବା ଦିଗରେ ଗୁଡ଼ାଏ ସତ୍ ପରାମର୍ଶର ଅସରନ୍ତି ଧାରା ।

ତା' ପରେ ସମୟକ୍ରମେ ବ୍ରହ୍ମଋଷିଙ୍କୁ ବହୁ ଭାବରେ ବୁଝିବାର ସୁଯୋଗ ଆସେ, ଯେଉଁ ସୁଯୋଗ ବ୍ରହ୍ମଋଷିଙ୍କ ଜୟନ୍ତୀ ସ୍ମରଣିକା ପାଇଁ କିଛିଟା ଲେଖିବାର ଦାବୀ ରଖେ ।

ଆଜିର ଏ ବର୍ତ୍ତମାନ ସମାଜ ବ୍ୟବସ୍ଥା ଏବଂ କ୍ଷୟିଷ୍ଣୁ ମୂଲ୍ୟବୋଧର ବିଷାକ୍ତ ବାୟୁ ମଣ୍ଡଳ ମଧ୍ୟରେ ଗୋଟିଏ ଗୋଟିଏ 'ବ୍ୟତିକ୍ରମ' ଜନ୍ମ ନେବାର ପ୍ରବୃତ୍ତି ଯେ ଏ ଯାବତ୍ ରହି ଆସିଛି, ତାହାହିଁ ବୋଧହୁଏ ମାନବ ସମାଜ ପକ୍ଷରେ ସବୁଠାରୁ ବଡ଼ ଆଶାର କଥା ଓ ବ୍ରହ୍ମଋଷି ନିଜେ ସେହିପରି ଏକ ବ୍ୟତିକ୍ରମର ନମୁନା । ଖାଣ୍ଟି ବିଷ ମିଶ୍ରୁ ନ ଥିବା ଏ ଭେଜାଲ-ସର୍ବସ୍ୱ ସମାଜରେ ବିଶେଷଣ ସବୁ ଯେପରି ଇଜ୍ଜତ ହରାଇ ବସିଛନ୍ତି, ସେପରି କୌଣସି କଳୁଷିତ ବିଶେଷଣ ସାହାଯ୍ୟରେ ବ୍ରହ୍ମଋଷିଙ୍କ ଗୁଣଗାନ କରାଗଲେ ତାଙ୍କ ପ୍ରତି ଅମର୍ଯ୍ୟାଦା ହେବାର ଯଥେଷ୍ଟ ଆଶଙ୍କା ରହିଛି । ଅନ୍ୟ କଥାରେ ବ୍ରହ୍ମଋଷି ସେ ସବୁ ବିଶେଷଣଠାରୁ ଆଶାତୀତ ଊର୍ଦ୍ଧ୍ୱରେ ।

ବ୍ରହ୍ମଋଷିଙ୍କ ସହିତ ମୋର ଆତ୍ମିକ ପରିଚୟ ପ୍ରାୟ ଦୀର୍ଘ ଦଶ ବର୍ଷର । ଏହି ଦଶନ୍ଧି ମଧ୍ୟରେ ତାଙ୍କ ମହତ୍ ଓ ଉଦାର ଚରିତ୍ରର ଯେଉଁ ସବୁ ନଜିର ମୋ

ନଜରକୁ ଆସିଛୁ, ସେଥିରେ କେବଳ ମୁଁ କାହିଁକି ଯେ କୌଣସି ଗୁଣଗ୍ରାହୀ ବ୍ୟକ୍ତି ଅଭିଭୂତ ହେବା ସ୍ୱାଭାବିକ । ଜୟନ୍ତୀ ସମିତିର ସମ୍ପାଦକଙ୍କ ଭାଷାରେ ଯଥାର୍ଥରେ ତାଙ୍କର ଉଚ୍ଚକୋଟୀର ବ୍ୟକ୍ତିତ୍ୱ, ଅଲୌକିକ ପ୍ରତିଭା, ଦୃଢ଼ ମନୋବଳ, କଠୋର ଅଧ୍ୟବସାୟ, ଦୟାର୍ଦ୍ର ହୃଦୟ, ବିସ୍ମୟକର ଦାନଶୀଳତା, ନିଷ୍ଠୁର ସ୍ପଷ୍ଟବାଦିତା, ନିଷ୍ଠାପର କର୍ତ୍ତବ୍ୟବୋଧ ଏବଂ ଗଭୀର ନିଃସ୍ୱାର୍ଥ ଦେଶାତ୍ମବୋଧ ଶିକ୍ଷକ ସମାଜର ଗର୍ବ ଓ ଗୌରବର ବିଷୟ । ଓଡ଼ିଶାର ନିମ୍ନ ମାଧ୍ୟମିକ ଶିକ୍ଷା ଓ ଶିକ୍ଷକ ସମାଜ ବ୍ରହ୍ମଚାରୀଙ୍କ ସୁଦୃଢ଼ ନେତୃତ୍ୱ ଲଭିବା ସୌଭାଗ୍ୟ ପାଇ ନ ଥିଲେ ଏହାର ଗତି କ'ଣ ଯେ ହୋଇଥାନ୍ତା ଭବିଷ୍ୟତ ତା'ର ପ୍ରମାଣ ଦେବ । ତାଙ୍କ ଚରିତ୍ରର ସକଳ ମହନୀୟତା କପରି ତୁଚ୍ଛା ବାକ୍‌ଚାତୁରୀ ଠାରୁ ଊର୍ଦ୍ଧ୍ୱରେ ରହି ନିଷ୍ଠୁର ସତ୍ୟର ଅପେକ୍ଷା ରଖେ, ତାଙ୍କ ସମ୍ପର୍କରେ ଆସି ନ ଥିବା ବ୍ୟକ୍ତିଙ୍କୁ କାହାଣୀ ପରି ମନେ ହୋଇପାରେ । ତାଙ୍କୁ, ତାଙ୍କର ବ୍ୟକ୍ତିତ୍ୱକୁ, ତାଙ୍କ କାର୍ଯ୍ୟବ୍ୟସ୍ତତାକୁ ଓ ତାଙ୍କର ପ୍ରାଣାଧିକ ପ୍ରିୟ ସଂଘ ପରିଚାଳନାକୁ ଯିଏ ନିଜ ଆଖିରେ ନ ଦେଖିଛୁ, ସେପରି ଗୋଟିଏ ବ୍ୟକ୍ତି ଓ ତା'ର କାର୍ଯ୍ୟକୁ ଅନ୍ତତଃ ଥରେ ମାତ୍ର ନିଜ ଆଖିରେ ଦେଖିବା ପାଇଁ ଏ ଲେଖକ ସେମାନଙ୍କୁ ଅନୁରୋଧ କରେ ।

ସାରା ଭାରତରେ ଆଉ ଏପରି ଗୋଟିଏ ଦୃଷ୍ଟାନ୍ତ ଅଛି କି ନାହିଁ ଏ ଲେଖକ ଜାଣେନା, ଯେ କି ସମୟକୁ ଏତେ ବେଶୀ ମର୍ଯ୍ୟାଦା ଦିଏ । ଯେଉଁ ଦେଶର ଲୋକ-ସମାଜକୁ ଦେଖି ଜଣେ ବୈଦେଶିକ ଅତ୍ୟନ୍ତ ବିସ୍ମିତ ଭାବରେ ମନ୍ତବ୍ୟ କରନ୍ତି ଯେ ପୃଥିବୀରେ ଏପରି ଗୋଟିଏ ଦେଶ ଅଛି ଯେଉଁ ଦେଶର ଲୋକେ ଦିନରେ ମଧ୍ୟ ଶୋଇ ରହନ୍ତି, ସେପରି ଗୋଟିଏ ଦେଶରେ ରାତିରେ ମଧ୍ୟ ନ ଶୋଇ କର୍ମରତ ରହୁଥିବା ଗୋଟିଏ ବ୍ୟକ୍ତି ଯେ ଅଦ୍ୱିତୀୟ ନ ହେବ, ଏକଥା କିଏ କହିବ ? ଏ ଲେଖକ ନିଜ ଆଖିରେ ବର୍ଷ ବର୍ଷ ଧରି ଦେଖିଛି ଏବଂ ଏବେ ମଧ୍ୟ ଦେଖୁଛି ୬୯ ବର୍ଷ ବୟସରେ ପଦାର୍ପଣ କରିବାକୁ ଯାଉଥିବା ବ୍ରହ୍ମଚାରୀ ନାମକ ସେହି ବୃଦ୍ଧ ଜଣକ ପ୍ରସିଦ୍ଧ ସେକ୍‌ସପିଅରଙ୍କର "ମୁଁ ବୃଥାରେ ସମୟ ନଷ୍ଟ କରି ଦେଇଥିଲି, ଆଜି ସମୟ ମୋତେ ନଷ୍ଟ କରି ଦେଇଛି" କଥାକୁ କପରି ଅନ୍ତରର ମର୍ଯ୍ୟାଦା ଦେଇଛନ୍ତି ଓ ପୁଣ୍ୟାତ୍ମା ଗୋପବନ୍ଧୁଙ୍କର "ମଣିଷ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ, କର୍ମେ ଜୀଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ"—ଅକ୍ଷୟ ବାଣୀକୁ କପରି ଅକ୍ଷରେ ଅକ୍ଷରେ ପାଳନ କରି ଚାଲିଛନ୍ତି । ପ୍ରତ୍ୟହ ପ୍ରଭାତର ନିତ୍ୟକର୍ମ ପରଠାରୁ ଖାଇବା ସମୟ ବ୍ୟତୀତ ପ୍ରତିଟି ମୁହୂର୍ତ୍ତକୁ କାମରେ ଲଗାଇ ରାତି ୧୨ଟା ବେଳେ ବିଛଣାକୁ ଯିବା ଓ ଠିକ୍ ରାତି ଦୁଇଟା ବେଳକୁ ନିଦରୁ ଉଠି ହାରିକେନ ଆଲୋକରେ ସମ୍ବାଦପତ୍ର ଏବଂ ଅନ୍ୟାନ୍ୟ ପତ୍ର ପତ୍ରିକା ପଢ଼ିବା ଅଭ୍ୟାସର ବ୍ୟତିକ୍ରମ କ୍ୱଚିତ୍ ହୁଏତ ହୋଇପାରେ । ଏହା କ'ଣ ଏକ ଅଲୌକିକ ବ୍ୟକ୍ତିତ୍ୱ ବା କଠୋର ସାଧକ ବିନା ଅନ୍ୟ କାହାରି ଦ୍ୱାରା ସମ୍ଭବ ?

ବ୍ରହ୍ମଚାରୀଙ୍କର ନିଷ୍ଠୁର ସଂଘ ପ୍ରୀତିରୁ ବିଭିନ୍ନ ସଂଘ ଓ ସଂଗଠନ ଗୁଡ଼ିକର ଅଗ୍ରଣୀମାନଙ୍କର ଯେଉଁ ସବୁ ମୂଲ୍ୟବାନ କଥା ଶିଖିବାର ଅଛି, ତା'ର ସମସ୍ତ ଦୃଷ୍ଟାନ୍ତ ଦେଇ ବସିଲେ କେବଳ ତାହାହିଁ ଏକ ବିରାଟ ଗ୍ରନ୍ଥ ହେବ । ଅନ୍ତତଃ ଗୋଟିଏ ଯୋଡ଼ିଏ ଦୃଷ୍ଟାନ୍ତ ଦେବାର ମୋହକୁ ଏ ଲେଖକ ଉପେକ୍ଷା କରି ପାରୁ ନାହିଁ । ଦିନରାତି ମିଶାଇ ୧୮ । ୨୦ ଘଣ୍ଟା ଅକ୍ଳାନ୍ତ ପରିଶ୍ରମ କରୁଥିବା ଏହି ତ୍ୟାଗୀ ପୁରୁଷଟିର ଖାଦ୍ୟ ଯେ କୌଣସି ସାଧାରଣ ଲୋକର ଖାଦ୍ୟ ଠାରୁ ଉତ୍କୃଷ୍ଟ ନୁହେଁ ଓ ପୋଷାକ ବୋଇଲେ ଦୁଇ ହଳ (କେବେ କେବେ ଏକ ହଳ ) ମୋଟା ଖଦଡ଼ର ଧୋତି ଓ କାମିଜ । ତାହାକୁ ପୁଣି ବହୁ ସମୟରେ ମରାମତି କରି ଚଳାଯାଏ । ପ୍ରତିଟି କାର୍ଯ୍ୟ ଓ ଚିନ୍ତାରେ ସଂଘ ପାଣିର ପ୍ରୟୋଜନୀୟ ସଦ୍‌ବିନିଯୋଗ । ଥରେକର ଘଟଣା । ସ୍କୁଲଗୁଡ଼ିକର ବାର୍ଷିକ ପରୀକ୍ଷା ସମୟ । ସଂଘ କର୍ମଚାରୀମାନଙ୍କ ସମେତ ନିଜେ ବ୍ରହ୍ମଚାରୀଙ୍କର ଦିନରାତି ବିଶ୍ରାମ ହୀନ ପରିଶ୍ରମ । ପ୍ରତିଦିନ ପ୍ରଶ୍ନ ପତ୍ର ଶହ ଶହ ପ୍ୟାକେଟ ପ୍ରସ୍ତୁତ ହୋଇ ଡାକରେ ପଠାଯିବାର ଧନ୍ଦା । ଦିନେ

ଏହାପରେ ଯୋଡ଼ାଏ ପ୍ୟାକେଟ୍ ଠିକଣା ଭୁଲ ହେତୁ ଫେରି ଆସିଲା । ସେଦିନ ବ୍ରହ୍ମଗୃହୀଙ୍କ ଆଉ ସମ୍ଭାଳେ କିଏ ? ପ୍ରଶ୍ନ ପାଇ ନ ଥିବା ସ୍କୁଲ ଯୋଡ଼ିକର ଅସୁବିଧା ଓ ଠିକଣା ଭୁଲ ହେତୁ ଅନାବଶ୍ୟକ ଖର୍ଚ୍ଚ ବିଷୟରେ ସେ ଯେପରି ବ୍ୟସ୍ତ ହେଲେ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ସେଥିପାଇଁ ଜଣେ ସ୍ୱତନ୍ତ୍ର ଲୋକ ଦ୍ୱାରା ସମ୍ପୃକ୍ତ ସ୍କୁଲକୁ ପ୍ରଶ୍ନ ପଠାଗଲା । ମାତ୍ର ଜଣେ କର୍ମଚାରୀଙ୍କ ତ୍ରୁଟି ହେତୁ ଭି. ପି. ପି. ଫେରିବା ଓ ସ୍ୱତନ୍ତ୍ର ଭାବରେ ପ୍ରଶ୍ନ ପଠାଯିବା ଦ୍ୱାରା ଯେଉଁ ଅଧିକା ଖର୍ଚ୍ଚ ହେଲା, ତାହା କେଉଁ ବାବଦରେ ମଞ୍ଜୁରୀ ହେବ, ତା'ର କୌଣସି ସଠିକ ଯୁକ୍ତି ସେ ପାଇଲେ ନାହିଁ । ଗଭୀର କ୍ଷୋଭରେ ସମ୍ମତ ହେଲେ ବି ଠିକଣା ଲେଖା ଦାୟିତ୍ୱରେ ଥିବା ସ୍ୱଳ୍ପ ବେତନ ଭୋଗୀ କର୍ମଚାରୀଙ୍କ ଦରମାରୁ ସେତକ ଟଙ୍କା କାଟିବା ହିଁ ଦୟାବାନ ବ୍ରହ୍ମଗୃହୀଙ୍କ ପକ୍ଷରେ ଥିଲା ଏକମାତ୍ର ପନ୍ଥା । ଏହା ନିଷ୍ଠୁର ସମ୍ପ୍ରୀତି ନୁହେଁ ତ ଆଉ କ'ଣ ?

କୌଣସି କାର୍ଯ୍ୟରେ କିଛି ଭୁଲଭ୍ରାନ୍ତି ନ ରହିବା ଦିଗରେ ସେ ନିଜେ ଯେପରି ସଚେତନ, ପ୍ରତ୍ୟେକ ଶିକ୍ଷକଙ୍କୁ ଜଣେ ମାର୍ଜିତ ବ୍ୟକ୍ତିତ୍ୱ ସମ୍ପନ୍ନ ଭାବରେ ଦେଖିବାରେ ତାଙ୍କର ଆଗ୍ରହ ଓ ଯତ୍ନ ମଧ୍ୟ ତତୋଽଧିକ । ସେହି ବ୍ୟାପାରରେ ପ୍ରତ୍ୟହ ଆସୁଥିବା ଶହ ଶହ ଚିଠିରୁ ସେ ନିଜେ କୌଣସିଟିକୁ ପଢ଼ି ନଥିବା ଓ ତାଙ୍କ ଠାରୁ କୌଣସି ଚିଠିର ଉତ୍ତର ନ ମିଳି ଥିବାର ଦୃଷ୍ଟାନ୍ତ ବୋଧହୁଏ ମିଳିବ ନି । ଶିକ୍ଷକ ମାନଙ୍କ ଠାରୁ ଆସୁଥିବା କୌଣସି ଚିଠିରେ ତ୍ରୁଟିପୂର୍ଣ୍ଣ ବାକ୍ୟ ଗଠନ ବା ବର୍ଣ୍ଣାଶୁଦ୍ଧି ତାଙ୍କ ନଜରକୁ ଆସିଲେ ଭବିଷ୍ୟତକୁ ସାବଧାନ ହେବା ମର୍ମରେ ଅତ୍ୟନ୍ତ କଠୋର ଭାଷାରେ ସମ୍ପୃକ୍ତ ଶିକ୍ଷକ ବ୍ରହ୍ମଗୃହୀଙ୍କ ଠାରୁ ଖଣ୍ଡିଏ ଚିଠି ଯେ ନ ପାଇବ, ଏପରି କଥା ବୋଧହୁଏ ନାହିଁ । ନିଜେ କିଛି ଲେଖିବାବେଳେ ବାକ୍ୟ ଗଠନ ବା ଉପଯୁକ୍ତ ଶବ୍ଦ ପ୍ରୟୋଗକୁ ନେଇ ତାଙ୍କର ସାମାନ୍ୟ ସନ୍ଦେହ ହେଲେ ଲେଖା ବନ୍ଦ କରି ସେ ଛାତ୍ରସୁଲଭ ମନୋବୃତ୍ତିରେ Dictionary ବା Grammar ଖୋଜିବା ଏବଂ ଏପରି କି ତାଙ୍କ ନିକଟରେ ଉପସ୍ଥିତ ଥିବା ଶିକ୍ଷିତ ବ୍ୟକ୍ତି ବା ବ୍ୟକ୍ତିମାନଙ୍କୁ ଠିକ୍ଟା କ'ଣ ବୋଲି ଜିଜ୍ଞାସା କରି ବ୍ୟସ୍ତ କରି ପକାଇବାଟା ତାଙ୍କ ପକ୍ଷରେ ଏକ ମାମୁଲି କଥା ।

କେବଳ ଶିକ୍ଷକର ନୁହେଁ, ଏ ଦେଶରେ ଶିକ୍ଷାର ଉନ୍ନତି ପାଇଁ ତାଙ୍କ ପ୍ରାଣରେ ଯେଉଁ ଗଭୀର ବ୍ୟାକୁଳତା ରହିଛି, ତା'ର ବର୍ଣ୍ଣନା ଦେବା ପାଇଁ ଏ ଲେଖକ ଭାଷାର ଦାରିଦ୍ର୍ୟ ଅନୁଭବ କରେ । ଚକୁଳିଆ ପଣ୍ଡା ଧର୍ମୀ ଏ ଦେଶର ଶିକ୍ଷା ମଠାଧୀଶ ରାଜନୈତିକ ଚରିତ୍ରମାନଙ୍କର ଶିକ୍ଷା ଓ ଶିକ୍ଷକ ସମସ୍ୟା ସମ୍ପର୍କୀୟ ହାସ୍ୟାସ୍ପଦ ଆଦର୍ଶ ବଖାଣ ଓ ଉପଦେଶ ବାଣୀକୁ ରୁକ୍ଷ ବାସ୍ତବବାଦୀ ଦୃଷ୍ଟିକୋଣରୁ ବ୍ରହ୍ମଗୃହୀଙ୍କ ସହିତ ନାନା ଭାବରେ ଆଲୋଚନା କରିବାର ସୁଯୋଗ ଏ ଲେଖକକୁ ମିଳିଛି । ସକଳ ଅନୁଚିତ ଏବଂ ଅନ୍ୟାୟ କାର୍ଯ୍ୟ ଓ ଚିନ୍ତାରେ ସଦା ସର୍ବଦା ଲିପ୍ତଥିବା ରାଜନୈତିକ ଭଣ୍ଡ ତପସ୍ୱୀ ଓ ଅମଲାତନ୍ତ୍ରର ଛତ୍ରଧାରୀ ବଡ଼ ପଣ୍ଡାମାନେ ଶିକ୍ଷକ ଓ ଶିକ୍ଷାନୁଷ୍ଠାନ ଆଦର୍ଶପୂର୍ଣ୍ଣ ହେବା ଉଚିତ ବୋଲି ଉପଦେଶ ବାଣୀ ଶୁଣାଇବାଟା ଜୀବନରେ ଥରେ ମାତ୍ର କଣିକାଏ ତଣ୍ଡୁଳ ବା କଡ଼ାଟାଏ କଉଡ଼ି ଦାନ କରିବାର ଦୃଷ୍ଟାନ୍ତ ସୃଷ୍ଟି କରି ନ ଥିବା ଚକୁଳିଆ ପଣ୍ଡାର ଗ୍ରାମ ଗ୍ରାମ ଦେଶ ଦେଶ ବୁଲି ଦାନର ମାହାତ୍ମ୍ୟ ସମ୍ପର୍କରେ ଉଚ୍ଚ କଣ୍ଠରେ ରଡ଼ି କରିବା ସହିତ ସମାନ ନୁହେଁ ତ କ'ଣ ? ଅନାବଶ୍ୟକ ଭାବରେ ବକ୍ତୃତା ଓ ବିବୃତିଗୁଡ଼ିକରେ ଉଚିତ ଶବ୍ଦର ଗୁଡ଼ାଏ ଭିଡ଼ କରାଇଲେ ଶ୍ରମ ଓ ଶକ୍ତିର ଅପଚୟ ଛଡ଼ା ଆଉ ଅଧିକ କ'ଣ ଆଶା କରାଯାଇ ପାରେ ? ଏବେ ବି ଅମଲାତାନ୍ତ୍ରିକ ଦୁରାଚାର ଓ ପ୍ରବଞ୍ଚନା ସମିତିର ଦୌରାତ୍ମ୍ୟ ଭିତରେ ଶିକ୍ଷକର ଅନ୍ତରାତ୍ମା ଆହି ଆହି ଡାକ ଛାଡ଼ୁଛି । ଶିକ୍ଷକର ନ୍ୟାଯ୍ୟ ସ୍ୱାର୍ଥ ସମ୍ପର୍କିତ ବିଭାଗୀୟ କାର୍ଯ୍ୟରେ ଏପରି କି ଶିକ୍ଷା ବିଭାଗୀୟ କାର୍ଯ୍ୟାଳୟଗୁଡ଼ିକରେ ତାକୁ ଉଦ୍ଦେଶ୍ୟମୂଳକ ଭାବରେ ଅଯଥା ହଇରାଣ କରାଯାଇ ତା'ଠାରୁ ଉତ୍କୋଚ ଆଦାୟ କରିବା ପାଇଁ ଅମଲା ଓ ଚପରାଶୀ ପର୍ଯ୍ୟନ୍ତ ଏବେ ବି ଟାକି ବସିଛନ୍ତି । ଶିକ୍ଷା କ୍ଷେତ୍ରରେ ଏହି

ଅମଲାତାନ୍ତ୍ରିକ ଷଡ଼ଯନ୍ତ୍ର ଓ କୁତ୍ସିତ ପରମ୍ପରା ବିରୁଦ୍ଧରେ ବ୍ରହ୍ମଗ୍ରହୀଙ୍କର କଠୋର ସମାଲୋଚନା ରୂପକ ତୀକ୍ଷ୍ଣ ଖଡ୍ଗ ଉତ୍ତୋଳନ ଏ ଦେଶର କଳଙ୍କମୟ ଶିକ୍ଷା ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଅଧ୍ୟାୟ ଭାବରେ ଲିପିବଦ୍ଧ ହୋଇ ରହିବ ।

ଶିକ୍ଷା ଓ ଶିକ୍ଷକ ସମସ୍ୟା ସଙ୍ଗେ ସଙ୍ଗେ ଏ ଜାତିର ସାହିତ୍ୟ ଓ ସାହିତ୍ୟିକମାନଙ୍କର ଦୁର୍ଦ୍ଦଶା ଓ ଦୁର୍ଗତି ବିଷୟରେ ବ୍ରହ୍ମଗ୍ରହୀ ଅବହିତ ଓ ସେ ଦିଗରେ କିଛିଟା ଶକ୍ତି ବିନିଯୋଗ କରିବାରେ ତାଙ୍କର ଆଗ୍ରହ ଅକୁଣ୍ଠ । ଦୁଃସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ କରିବା ଏବଂ ନୂତନ ସାହିତ୍ୟ ସୃଷ୍ଟିକୁ ଉତ୍ସାହିତ କରିବା ତାଙ୍କ ଜୀବନର ଅନ୍ୟତମ ଲକ୍ଷ୍ୟ । ଶିଶୁ ସାହିତ୍ୟିକ ଭାବରେ ନିଜେ ଖ୍ୟାତି ଅର୍ଜ୍ଜନ କରିବା ସଙ୍ଗେ ସଙ୍ଗେ 'ଶିକ୍ଷକ ଦର୍ପଣ' ମାଧ୍ୟମରେ ଶିକ୍ଷକର ସୃଜନ ପ୍ରତିଭାକୁ ଜାଗ୍ରତ କରାଇବାରେ ତାଙ୍କର ଉଦ୍ୟମ ଶିକ୍ଷକ ସମାଜ ପାଇଁ ଏକ ମହାନ ଅବଦାନ । ପ୍ରକାଶନର ଦାୟିତ୍ୱ ନେଇ ଅବହେଳିତ ପ୍ରତିଭାମାନଙ୍କୁ ଲୋକଲୋଚନକୁ ଆଣିବାରେ ବ୍ରହ୍ମଗ୍ରହୀ ମୁକ୍ତହସ୍ତ । 'ଶ୍ରେଷ୍ଠଗଳ୍ପ ଆଜି ଓ କାଲିର' ଗଳ୍ପ ସଙ୍କଳନ ପ୍ରକାଶନ ଦିଗରେ ଏ ଲେଖକ ନିଜେ ତାଙ୍କର ଦ୍ୱାରସ୍ଥ ହୋଇ ଅକୁଣ୍ଠ ସାହାଯ୍ୟ ପାଇଛି ।

ଅଧିକନ୍ତୁ ଅସହାୟ ବା ବିପଦ ଗ୍ରସ୍ତ ବ୍ୟକ୍ତିକୁ ଆର୍ଥିକ ସହାୟତା ଦେବା ବ୍ରହ୍ମଗ୍ରହୀଙ୍କ ଚରିତ୍ରର ଏକ ଦୁର୍ବଳତା । ମାତ୍ର ଧାର ସୂତ୍ରରେ ସାହାଯ୍ୟ ପାଇଥିବା ବ୍ୟକ୍ତି ଟଙ୍କା ଫେରାଇବା ପାଇଁ କଥା କରିଥିବା ନିର୍ଦ୍ଦିଷ୍ଟ ସମୟର ଖିଲାପ କଲେ ସେ କିପରି କ୍ଷୁବ୍ଧ ହୁଅନ୍ତି, ତା'ର ଏକ ଦୃଷ୍ଟାନ୍ତ ନ ଦେଇ ରହି ପାରୁ ନାହିଁ । ଲେଖକର ଜଣେ ବନ୍ଧୁ ( ଯେକି ବ୍ରହ୍ମଗ୍ରହୀଙ୍କ ନିକଟରେ ଅପରିଚିତ ) ଥରେ ଅସୁବିଧାରେ ପଡ଼ି ଧାର ସୂତ୍ରରେ ତାଙ୍କ ଠାରୁ କିଛି ଟଙ୍କା ଆଣିବା ଓ ନିର୍ଦ୍ଦିଷ୍ଟ ତାରିଖରେ ଟଙ୍କା ନ ଦେବା ଫଳରେ ବ୍ରହ୍ମଗ୍ରହୀଙ୍କ ଠାରୁ ଯେଉଁ ଶିଠ ପାଇଥିଲେ, ସେ ଶିଠିଟିର ବାକ୍ୟ ଯୋଡ଼ିକ ହେଉଛି, "ତମେ ଯାହାଠାରୁ ଉପକାର ପାଇବ, ତାକୁ ଅସୁବିଧାରେ ପକାଇବା କ'ଣ ତମର ଶିକ୍ଷା ? ସୁଝିବାର ଶକ୍ତି ନ ଥିଲେ କାହାରିଠାରୁ ଧାର କରିବାର ଅଧିକାର ତୁମର ନାହିଁ ବୋଲି ଭୁଲି ଗଲେ କିପରି ଚଳିବ ?" ଏହି ପ୍ରସଙ୍ଗରେ ଉଲ୍ଲେଖ କରିବା ଆବଶ୍ୟକ ମନେ କରେ ଯେ, ଟଙ୍କା ଫେରି ପାଇବା ଇଚ୍ଛା ସଙ୍ଗେ ସଙ୍ଗେ ଏ ଦୁନିଆର ପ୍ରତ୍ୟେକ ବ୍ୟକ୍ତିଠାରେ ସଚ୍ଚୋଟ ପଣିଆ ଦେଖିବାରେ ତାଙ୍କ ଅନ୍ତରର ବ୍ୟାକୁଳତା ହିଁ ଅଧିକ ସୁସ୍ପଷ୍ଟ ଏବଂ ଏହା ମଧ୍ୟ ତାଙ୍କ ଚରିତ୍ର ସମ୍ପର୍କରେ ଏ ଲେଖକର ନିଜସ୍ୱ ଅନୁଧ୍ୟାନ ଓ ତାଙ୍କ ଚରିତ୍ରର ଅନ୍ୟାନ୍ୟ ବହୁ ଶିକ୍ଷଣୀୟ କଥା ମଧ୍ୟରୁ ଲେଖକ ପକ୍ଷରେ ଏହା ମଧ୍ୟ ଏକ କଠୋର ଶିକ୍ଷା ।

ଏହି ଲେଖାଟିର ପରିସର ମଧ୍ୟରେ ବ୍ରହ୍ମଗ୍ରହୀଙ୍କ ମହାନ୍ ଚରିତ୍ରର ସମସ୍ତ ଶିକ୍ଷଣୀୟ ଦିଗକୁ ଆଲୋଚନା କରିବା ତ ଦୂରର କଥା, ସ୍ପର୍ଶ କରିବା ମଧ୍ୟ ସମ୍ଭବ ନୁହେଁ । ସଂକ୍ଷେପରେ ତାଙ୍କ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ବ୍ରହ୍ମଗ୍ରହୀ ଜଣେ ଶିକ୍ଷକ ପରି ଶିକ୍ଷକ, ଛାତ୍ର ପରି ଛାତ୍ର, ସଂଗଠକ ପରି ସଂଗଠକ, ସାହିତ୍ୟିକ ପରି ସାହିତ୍ୟିକ, ସମାଜସେବୀ ପରି ସମାଜସେବୀ ଏବଂ ସର୍ବୋପରି ଜଣେ ମଣିଷ ପରି ମଣିଷ ।

ସମାନ ଆକୃତି ବିଶିଷ୍ଟ, ଗୁଡ଼ାଏ ନିର୍ଦ୍ଦିଷ୍ଟ ଧରଣର ଜୀବଙ୍କୁ ମଣିଷ ବୋଲି କୁହାଯାଉ ଥିବାର ପ୍ରଚଳିତ ବିଶ୍ୱାସ ହେତୁ ସମସ୍ତେ ମଣିଷ ପରି ଦେଖା ଯାଉଥିବା ଏ ଜାନୁୟାର-ପ୍ରଧାନ ସମାଜରେ ସଠିକ ମଣିଷ-ପଣିଆର ଦୀକ୍ଷା ଗ୍ରହଣ ସୁଯୋଗରୁ ଈଶ୍ୱର ଏ ଜାତିକୁ ଶୀଘ୍ର ବଞ୍ଚିତ ନ କରନ୍ତୁ, ବ୍ରହ୍ମଗ୍ରହୀଙ୍କର ୬୧ତମ ଜୟନ୍ତୀ ଅବସରରେ ଏହାହିଁ ଏ ଲେଖକର ଈଶ୍ୱରଙ୍କ ଠାରେ ପ୍ରାର୍ଥନା ।

● ଗୋପବନ୍ଧୁ ନଗର
ଦଶରଥ ପୁର
ବାଲେଶ୍ୱର

# ନଭେମ୍ବର ଅଷ୍ଟାଦଶ

**ଶ୍ରୀ ମାଗୁଣି ଚରଣ ଦୁବେ**

ନଭେମ୍ବର ଅଷ୍ଟାଦଶ—
ତୁମେ ଆସିଛ ?
ଆଗାମୀ ଊଷାର ବୋଧମ୍ମ ଗାଇ
ବିଞ୍ଚୁଇ ତୃପ୍ତ ହସ,
ପଞ୍ଚୁଇ ସବୁ କ୍ଳେଶ,
ଚମକ ଚନ୍ଦ୍ରା ମଞ୍ଜୁଳ ରାତି,
ସଜାଇ ତୁମ ପାଶ ।

ନଭେମ୍ବର ଅଷ୍ଟାଦଶ—
ଦେଖିଛ ତୁମେ ?
ଶୋଣିତ ପଥରେ ଚରଣ ଚିହ୍ନ
ଯେଉଁଠି ଠେକୁଛି ଯଶ,
ପଦଲେହନର ଶେଷ,
( ଯାର ) ଅଯୁତ ଶୀରାର ରକ୍ତକଣିକା,
ହୋଇନି କେବେ ଅବଶ ।

ନଭେମ୍ବର ଅଷ୍ଟାଦଶ—
ତୁମେ ଶୁଣିଛ !
ଲକ୍ଷ କଣ୍ଠର କରୁଣ କାନ୍ଦଣା,
ଶିକ୍ଷକ ଅମଣିଷ,
ଶାସନ ବିକଟ ହସ,
ପାଷାଣ ଦୁର୍ଗର ବିଷ,
ଦଇନ ଦୁରନ୍ତ ବଳୟ ପିନ୍ଧି,
ମଣିଷ ଗୁଡ଼ୁଛି ଶ୍ୱାସ ।

ନଭେମ୍ବର ଅଷ୍ଟାଦଶ—
ହସିଛ ତୁମେ,
ହସିଛି ଯେ ଲୋକ ଅନ୍ଧାର ଘେରେ,
ଯଉବନ କର ଶେଷ,
ବିଷକୁ କର ପୀୟୂଷ,
ନାଗାସାକି ହିରୋସୀମା ସୃଷ୍ଟି କର,
ରଖିନି ଯାତନା ଲେଶ ।

ନଭେମ୍ବର ଅଷ୍ଟାଦଶ—
ଚିହ୍ନିଛ ତୁମେ ?
(ଯେ) ନର ଦାନବର ମେଲଣ ପାଡ଼ି—
ହଲଇ ଶୃଗାଳ ନଶ,
କୋକୁଆର ଭୀମ ଭାଷ,
ଠେକିବା ପାଇଁକ ଯଶ,
ମନ୍ତ୍ରୀ-ମୁକୁଟ ପିନ୍ଧି ସେହି,
ଭିଆଇଛି ସର୍ବନାଶ ।

ନଭେମ୍ବର ଅଷ୍ଟାଦଶ—
ବାନ୍ଛିଛ ସାଥି,
ଆମରି ପାଇଁ ଦୈନ୍ୟ ଠେଲି—
କରିଛି ସର୍ବ ନିକାଶ,
କୋଳଥିଆ ନାଗବିଷ,
କଷଟି ପଥର ରସ,
ଦେଖାଇ ଦେଇଛି ସ୍ପଷ୍ଟବାଦୀତାର
ହର୍ମ୍ୟପଟ୍ଠା ହସ,
ନଭେମ୍ବର ଅଷ୍ଟାଦଶ ।

● ପ୍ରଧାନ ଶିକ୍ଷକ
ଆଶ୍ରମପାଟଣା ମଧ୍ୟ ଇଂରାଜୀ ବିଦ୍ୟାଳୟ



# ଶିଶୁ ସାହିତ୍ୟିକ ବ୍ରହ୍ମଚାରୀ : ଏକ ସମୀକ୍ଷା

**ଶ୍ରୀ ରମାକାନ୍ତ ବେହେରା**

ଚିର ସଂଗ୍ରାମୀ ବ୍ରହ୍ମଚାରୀ ଅବସର ସମୟରେ ଲେଖିଛନ୍ତି କୋମଳ ମତି ଶିଶୁ କିଶୋରଙ୍କ ପାଇଁ କେତେକ ଶିକ୍ଷଣୀୟ କାହାଣୀ—'ବନିର ମନ କଥା', 'ହୁକେ ହୋ', 'ଚରିତ ଓ ଚରିତ୍ର', 'କିଏ କେମିତି', 'ଗୁରୁ ଚରିତ୍ର', 'ଭକ୍ତ ଓ ଭଗବାନ୍' । ପ୍ରତ୍ୟେକ ଲେଖା ନିଜସ୍ୱ ଶକ୍ତିରେ ବଳିଷ୍ଠ । ଶିଶୁପ୍ରାଣର ମନସ୍ତତ୍ତ୍ୱ ଉପରେ ଗଭୀର ଅନ୍ତର୍ଦୃଷ୍ଟିସମ୍ପନ୍ନ ଲେଖା ଗୁଡ଼ିକ ବେଶ୍ ସୁନ୍ଦର, ସ୍ୱାଦ୍ୟ ଓ ପ୍ରୀତିକର ।

ମହାପୁରୁଷ ମାନଙ୍କ ଜୀବନାଲେଖ୍ୟ କେବଳ ଶିଶୁ ପ୍ରାଣର ଆଦର୍ଶ କରି ଲେଖି ନାହାନ୍ତି । ଗଭୀର ଅନୁଧ୍ୟାନ କଲେ ଉପଲବ୍ଧି ହୁଏ, ଅନେକ କିଛୁ ଆଦର୍ଶକୁ ସେ ନିଜ ଜୀବନରେ ବାସ୍ତବ କରି ତୋଳିଛନ୍ତି । ଖୋଜି ବସିଲେ ଅସଂଖ୍ୟ ଉଦାହରଣ ବାହାରିବ । ଗୋଟିଏ ଦିଓଟି ଉଦାହରଣ ଏଠାରେ ଦିଆଯାଉଛି ।

ଉତ୍କଳମଣି ଗୋପବନ୍ଧୁ ୨୩ ବର୍ଷ ବୟସରେ ବିପତ୍ନୀକ ହେଲେ । ବଂଶରକ୍ଷା ପାଇଁ ପୁତ୍ର ନାହିଁ । ବନ୍ଧୁମାନଙ୍କ ଅନୁରୋଧକୁ ଏଡ଼ି ସେ ଯାହା କହିଥିଲେ, ବ୍ରହ୍ମଚାରୀ ତାହାର ଉଦାହରଣ 'ଚରିତ ଓ ଚରିତ୍ର' ପୁସ୍ତକରେ କହିଛନ୍ତି—"ସ୍ତ୍ରୀଟିଏ ବିଧବା ହେବା ପରେ ଆଉଥରେ ବିବାହ କରି ପାରିବ ନାହିଁ ବୋଲି ହିନ୍ଦୁ ଶାସ୍ତ୍ରରେ ଲେଖା ଅଛି । ମାତ୍ର ପୁରୁଷର ସ୍ତ୍ରୀ ମରିଗଲେ ସେ ତିନି ଚାରି ଥର ପର୍ଯ୍ୟନ୍ତ ବିବାହ କରିବାରେ ମନା ନାହିଁ । ଏହା କେମିତିକା ନ୍ୟାୟ ? ବିଧବା ସ୍ତ୍ରୀ ଯଦି ତାହାର ମୃତ ସ୍ୱାମୀ ପ୍ରତି ଭକ୍ତି ରଖି କାଳ କଟାଇ ପାରୁଛି, ତେବେ ତାହାଠାରୁ ବେଶୀ ଜାଣିଲା ବାଲା ପୁରୁଷ କାହିଁକି ବିବାହ ନ କରି ରହି ପାରିବ ନାହିଁ ? ମୋର ସ୍ତ୍ରୀ ମରିଗଲା, ଏହା ମୋ ଭାଗ୍ୟର କଥା । ଭଗବାନଙ୍କ ଇଚ୍ଛା ମୁଁ ସନ୍ନ୍ୟାସୀ ପରି ରହି ଦେଶସେବା କରେ । ମୁଁ ତାହାହିଁ କରିବି । ପୁଣି ସଂସାର ବନ୍ଧନରେ ଯାଇ ପଡ଼ିବା ବିବେକୀର କାର୍ଯ୍ୟ ନୁହେଁ ।"

ବ୍ରହ୍ମଚାରୀ ମାତ୍ର ୨୭ ବର୍ଷ ବୟସରେ ବିପତ୍ନୀକ ହୋଇ ମଧ୍ୟ ପୁନର୍ବାର ବିବାହ କରିନାହାନ୍ତି । ଗୋପବନ୍ଧୁଙ୍କ ଉକ୍ତି ଛଳରେ ତାଙ୍କର ନିଜ ଅଭିବ୍ୟକ୍ତି ଏଥିରେ ଫୁଟି ନାହିଁ କି ?

'ବନିର ମନ କଥା' ଏକ କାହାଣୀ ମାଳା । ଏହା ସତ୍ୟ ଯେ, ଏ 'ବନି' ଆଉ କେହି ନୁହେଁ—ବନମାଳୀ ନିଜେ । କିନ୍ତୁ ଗଳ୍ପ କହିବାର କି ଅଭିନବ ଠାଣି । ତାଙ୍କର ନିଜ ଜୀବନର କେତେକ ଇତିବୃତ୍ତର ଏପରି ସରଳ ତରଳ ରୂପାୟନ ଶିଶୁ ପ୍ରାଣକୁ ଯଥାର୍ଥରେ ଚୁମ୍ବକ ଭଳି ଛୁଇଁଯାଏ ଏବଂ ସଙ୍ଗେ ସଙ୍ଗେ ସ୍ମୃତିରେ ଜାଳିଦିଏ ଭଲ ହେବାର ଓ ଆଦର୍ଶ ହେବାର ଅଲିଭା ଦୀପ ।

'ମୁଁ ଭଲ ମଣିଷ ହେବି' ଗଳ୍ପର ଶେଷରେ ବନିର ଅଭିବ୍ୟକ୍ତି—"ଯେଉଁ ଲୋକ ଗରିବ, ଯାହାର ସାହା କେହି ନାହିଁ, ଯିଏ ବିପଦରେ ପଡ଼ିଛି, ସେହିମାନେ ହିଁ ମୋର ଦେବତା । ତାଙ୍କର ସେବା କଲେ ଭଗବାନ୍ ଖୁସି ହେବେ । ଭଲ କାମ କଲେ ମନରୁ ପାପ ଗୁଳିଯାଏ

ଓ ଭଗବାନ୍ ଦେଖା ଦିଅନ୍ତି ।" ଏହା ନିର୍ଦ୍ଦିଷ୍ଟଭାବରେ ବନମାଳୀଙ୍କ ନିଜସ୍ୱ ସ୍ୱର ଉଚ୍ଚାରଣ କରେ । ଏମିତି ଭାବରେ ତାଙ୍କର ଲେଖାରେ ସେ ନିଜକୁ ହିଁ ଖୋଲି ଦେଇଛନ୍ତି, ପ୍ରକାଶ କରିଛନ୍ତି । ବାସ୍ତବରେ 'ସୃଷ୍ଟି ଭିତରେ ହିଁ ସ୍ରଷ୍ଟାର ପ୍ରକାଶ' । ବନମାଳୀଙ୍କ ଲେଖନୀର ଅନ୍ତର୍ଲିପି ଏହାକୁ ହିଁ ବାସ୍ତବାୟିତ କରେ ।

ତାଙ୍କ ପ୍ରଣୀତ 'ଦୟାନନ୍ଦ ସରସ୍ୱତୀ' ଓ ନେପୋଲି-ୟନ ବୋନାପାର୍ଟ' ଆଜି ଦୁଷ୍ପ୍ରାପ୍ୟ । ଅଶ୍ଳୀଳ ଡିଟେକ୍ଟିଭ ଓ ନଭେଲ ରୋମାନ୍ସ ଯୁଗରେ ଏସବୁର ଉପାଦେୟତା ସ୍ୱୀକାର କରିବାକୁ ହେବ ।

'ଶିକ୍ଷକ ଦର୍ପଣ' ଶିକ୍ଷକଙ୍କ ଲେଖନୀର ଏକ ଦର୍ପଣ । ଅଧୁନା ସାହିତ୍ୟର କଳେବର ବହୁ ପରିବର୍ତ୍ତିତ, ରଙ୍ଗାୟିତ ଓ ବର୍ଦ୍ଧିତ । କିନ୍ତୁ ସାହିତ୍ୟର ଆତ୍ମା କି କେବେ ବଦଳି ପାରେ ? ଆତ୍ମା ଅବିନଶ୍ୱର, ମାତ୍ର ଯୁଗଧର୍ମର ଅଶ୍ଳୀଳ ନଗ୍ନତା, କୃତ୍ରିମ ଦୁର୍ବୋଧତା ଆଉ ସଂଯମହୀନ ପ୍ରଗତିଧର୍ମୀ ଅଭିପ୍ସାରେ ସତେ ଅବା ସେ ଆଜି ରୁଦ୍ଧଶ୍ୱାସ—ଆଲୋକମୁଖୀ ହେବାକୁ ଯାଇ ତାର ଦୁର୍ବାର ଗତି କେଉଁ ତମସାଚ୍ଛନ୍ନ ଆଶ୍ଳେଷରେ ବନ୍ଦୀ । ଏ ପରିପ୍ରେକ୍ଷୀରେ ବ୍ରହ୍ମଗୃହୀଙ୍କ ବଳିଷ୍ଠ ସମ୍ପାଦନ ଶିକ୍ଷକ ଦର୍ପଣର ସାହିତ୍ୟ ବିଭାଗ ଏକ ଶାନ୍ତ ସୌମ୍ୟ ଦିଗନ୍ତର ସନ୍ଧାନ ଦିଏ । ଅଗଣିତ ଲେଖକ ସୃଷ୍ଟି ହୋଇଛନ୍ତି ଏହାର ପୃଷ୍ଠାକୁ ଉପଜୀବ୍ୟ କରି । ନୀରବ, ନିରଳସ, ଅବିଚଳିତ ଭାବରେ ସେ ବର୍ଷ ବର୍ଷ ଧରି ଏକ ଅବହେଳିତ ଊଷର ଭୂଇଁରେ ସାହିତ୍ୟ ଚାଷ କରି ଚାଲିଛନ୍ତି । ନିଶ୍ଚୟ ଦିନ ଆସିବ, ଯେଉଁ ଫସଲର ବର୍ଣ୍ଣାଢ଼୍ୟ ସମ୍ଭାର ଉଜ୍ଜ୍ୱଳର ସାରସ୍ୱତ ଉଦ୍ୟାନରେ ପାରିଜାତ-ଶୋଭିତ ନନ୍ଦନ କାନନ ସୃଷ୍ଟି କରିବ ।

ବ୍ରହ୍ମଗୃହୀଙ୍କ ସମାଜସଂସ୍କାର ତଥା ବ୍ୟକ୍ତି-ଚରିତ୍ର ଅନ୍ୟସବୁ ବିଭବ ଅସାଧାରଣ ବୈଶିଷ୍ଟ୍ୟର ପରିଚାୟକ ।

● କାଂଶ ହାଇସ୍କୁଲ
ବାଲେଶ୍ୱର



# ଏବଂ ଅନେକ

ଶ୍ରୀ ଦେଶବନ୍ଧୁ ସ୍ୱାଇଁ

ଭୋରରେ ଉଠିବା ଏକ ବଡ଼ଲୋକୀ ବିଳାସ । ତେଣୁ ମୁଁ ସକାଳ ସାତଟାରେ ବାହାରିଲି । ଭାବିଲି, ହୁଏତ ବ୍ରହ୍ମଚାରୀ ନିତ୍ୟକର୍ମ ଆରମ୍ଭ କରୁଥିବେ ଏବଂ ସେହି ଅବସରରେ ମୁଁ ତାଙ୍କ ସହିତ କିଛି ଆଳାପ-ଆଲୋଚନା କରିପାରିବି । ତାଙ୍କର ମୂଲ୍ୟବାନ ସମୟ ନଷ୍ଟ ନ କରିବା ଉଦ୍ଦେଶ୍ୟରେ ମୁଁ ଯଥେଷ୍ଟ ସତର୍କ ଥିଲି ।

କିନ୍ତୁ ଆଶ୍ଚର୍ଯ୍ୟ, ବ୍ରହ୍ମଚାରୀ ସେତେବେଳକୁ ଗାଧୋଇ-ପାଧୋଇ ଅଫିସରେ କର୍ମରତ !

ଦୁଆର ମୁହଁରେ ପହଞ୍ଚି ଭାବିଲି ଫେରି ଆସିବି । ରାଜା ବଗିଚାର 'ଭାରତ ସେବକ ସମାଜ' ଅଫିସରେ ମୁଁ ରହୁଥାଏ । ଦୂରତ୍ୱ ଖୁବ୍ କମ୍ । ତେଣୁ ଅନ୍ୟ ସମୟରେ ଆସିବି ବୋଲି ଠିକ୍ କରି ଫେରିଲା ବେଳକୁ ବ୍ରହ୍ମଚାରୀ ଫାଇଲ ଉପରୁ ମୁହଁ ଉଠାଇ ମୋତେ ଡାକିଲେ । ଅଗତ୍ୟା ମୁଁ ଗଲି ଏବଂ ତାଙ୍କର ସକାଳୁ ଶଯ୍ୟା ତ୍ୟାଗ କରିବା ନେଇ ବିସ୍ମୟ ପ୍ରକାଶ କରିବାରୁ ସେ ହସି ହସି କହିଲେ—"ରାତି ବାର ପୂର୍ବରୁ ମୋର କେବେ କାମ ସରେନି । ତେବେ ଶୋଇବାରେ ଯେତେ ଡେରି ହେଲେ ବି ମୁଁ ସର୍ବଦା ବଡ଼ି ଭୋରୁ ଉଠିପଡ଼େ । ନ ହେଲେ କିଏ ଏସବୁ କରିବ ?" ସେ ଗଦା ଗଦା ରେକର୍ଡ଼-ପତ୍ର ଆଡ଼କୁ ହାତ ଠାରି ଦେଲେ ।

ପରିଣତ ବୟସରେ ତାଙ୍କର କର୍ମ ତତ୍ପରତା ଲକ୍ଷ୍ୟ କରି ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ନିଜର ଅଳସୁଆମି ସ୍ମରଣ କରି ମନେ ମନେ ଲଜ୍ଜିତ ବି ହେଲି ।

ସମ୍ଭାଷଣର ପ୍ରଥମ ପର୍ବ ସରିଗଲା ପରେ ମୁଁ ପ୍ରଶ୍ନ କଲି—ବେସରକାରୀ ଶିକ୍ଷକମାନଙ୍କ ପାଇଁ କ'ଣ ସବୁ ଆଉ କରୁଛନ୍ତି ?

ବ୍ରହ୍ମଚାରୀ ରାଗାନ୍ୱିତ କଣ୍ଠରେ ଉତ୍ତର ଦେଲେ—ନାଇଁ, ମୁଁ ଆଉ କିଛି କରିବି ନି । ସେମାନେ ସେକ୍ରେଟେରୀମାନଙ୍କ ଠାରୁ ଆହୁରି ଗୋଇଠା ମାଡ଼ ଖାଇବା ଆବଶ୍ୟକ ।

ମୁଁ ସ୍ତମ୍ଭୀଭୂତ ହୋଇଗଲି । ଯେଉଁ ଲୋକ ନିଷ୍ପେଷିତ ଶିକ୍ଷକ ମାନଙ୍କର ତ୍ରାଣକର୍ତ୍ତା, ତା କଣ୍ଠରୁ ପୁଣି ଏ ବିଷୋଦ୍‌ଗାର କାହିଁକି ?

କିନ୍ତୁ ପରେ ଜାଣିଲି, ସେ ଥିଲା ତାଙ୍କର ଅଭିମାନ—ରୋଷ ନୁହେଁ ।

ସେ ମୋତେ ବୁଝାଇଲେ । କହିଲେ, ଗତକାଲି ସେ ଜଣେ ଶିକ୍ଷକକୁ ପଚାରିଲେ ଗୋପବନ୍ଧୁ ଦାସ କିଏ ? ସେ କହି ପାରିଲେ ନାହିଁ । ଏପରିକି ଉକ୍ତ ଶିକ୍ଷକଙ୍କୁ ଭାରତର ରାଷ୍ଟ୍ରପତି, ଓଡ଼ିଶାର ରାଜ୍ୟପାଳ ପ୍ରଭୃତିଙ୍କ ନାମ ସୁଦ୍ଧା ମାଲୁମ ନ ଥିଲା । ଜଣେ ନୁହଁ, ଅନେକ ଶିକ୍ଷକଙ୍କର ଜ୍ଞାନ-ଗରିମା ସେ ବର୍ଣ୍ଣନା କରିଗଲେ । ତାଙ୍କ କ୍ଷୋଭର ପ୍ରଧାନ କାରଣ ଥିଲା ଯେ, ତଥା କଥିତ ଶିକ୍ଷିତ ବୋଲାଉଥିବା ଅନେକ ମୂର୍ଖ ଶିକ୍ଷକ ହୋଇ ଆମର ଭବିଷ୍ୟତ ବଂଶଧର ମାନଙ୍କୁ ହତ୍ୟା କରି ଚାଲିଛନ୍ତି । ଏସବୁ ଯେ କେବଳ

ସେକ୍ରେଟେରୀମାନଙ୍କର ପ୍ରିୟା-ପ୍ରୀତି ନିଯୁକ୍ତି ଯୋଗୁଁ, ତା ନୁହେଁ । ଅନେକ ଭଲ ଛାତ୍ର ମଧ୍ୟ ଚାକିରୀ ଖଣ୍ଡେ ପାଇଗଲା ପରେ ବହି ସହିତ ସମ୍ପର୍କ ତୁଟାଇ ଦେଉଛନ୍ତି । ସେମାନେ ବୁଝନ୍ତି ନାହାନ୍ତି ଯେ ଶିକ୍ଷକ ସବୁ ପ୍ରଥମେ ଜଣେ ଛାତ୍ର, ତା ପରେ ସେ ଶିକ୍ଷକ । ପଚାଶିଟି କଥା ଜାଣିଲେ ସିନା ପାଞ୍ଚ କଥା କହିବ । କିନ୍ତୁ ପରିଶ୍ରମ-କାତରତା ଆମର ଯୁବକ ମାନଙ୍କ ଠାରେ କ୍ଷୟ ରୋଗ ଭଳି ପ୍ରବେଶ କରି ସେମାନଙ୍କୁ ପଙ୍ଗୁ, ଅଥର୍ବ କରି ଦେଲାଣି ।

ଭାବ ପ୍ରବଣ ହୋଇ ସେ ଶିକ୍ଷକର ଧର୍ମ ସମ୍ବନ୍ଧରେ ଅନେକ କଥା ଗାଇଗଲେ । ଟିକିଏ ଦମ୍ ନେଇ ପୁଣି ସେ ଆରମ୍ଭ କଲେ—ଏପରି ଶିକ୍ଷକ ମାନଙ୍କୁ ଖଣ୍ଡେ ଚିଠି ବି ଲେଖି ଆସୁନି; ହଜାରେ ଭୁଲ । ମନିଅର୍ଡ଼ରର ଫର୍ମ ପୂରଣ କରି ଆସୁନି । ଇତ୍ୟାଦି ଇତ୍ୟାଦି । ଓଡ଼ିଶାରେ କେତେ ଅଣତାଲିମ ଶିକ୍ଷକ ଅଛନ୍ତି ଓ ପ୍ରକୃତରେ ସେମାନେ କେତେ ଲେଖାଁ ଦରମା ନିଅନ୍ତି, ସେ ସବୁ ଜାଣି ସେହି ଅନୁଯାୟୀ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପିତ କରିବା ପାଇଁ ସଂଘ ତରଫରୁ ଯେଉଁ ପ୍ରୋଫର୍ମା ପ୍ରତ୍ୟେକ ସ୍କୁଲକୁ ପଠା ଯାଇଥିଲା, ତାହା ମଧ୍ୟ ଅଧିକାଂଶ ସ୍କୁଲରୁ ବାରମ୍ବାର ଅନୁରୋଧ ସତ୍ତ୍ୱେ ଆସିଲା ନାହିଁ । ଯେଉଁମାନଙ୍କ ପାଇଁ ସେ ନୀଳକଣ୍ଠ ସାଜିଛନ୍ତି, ସେମାନଙ୍କର ଯଦି କୁମ୍ଭକର୍ଣ୍ଣ ନିଦ୍ରା ନ ଭାଙ୍ଗିଲା, ତେବେ ସେ କାହିଁକି ବୃଥାରେ ବାଡ଼େଇ କଣ୍ଢ଼ ହେବେ ?

ଅଯୋଗ୍ୟ ଶିକ୍ଷକମାନଙ୍କୁ ଅନେକ ଗାଳି ଦେବା ପରେ ସେ କ୍ରମଶଃ ଶାନ୍ତ ପଡ଼ି ଆସିଲେ ଏବଂ କହିଲେ—“ଏହି ସବୁ ଶିକ୍ଷକମାନଙ୍କର ଦୋଷ-ଦୁର୍ବଳତା ମୁଁ ଆଉ ବରଦାସ୍ତ କରିପାରୁନି । ଏଥର ‘ଶିକ୍ଷକ ଦର୍ପଣ’ରେ ଏ ବିଷୟରେ ଲେଖି ସେମାନଙ୍କୁ ଚେତାବନୀ ଦେବି ।

ବିଦାୟ ନେଇ ମୁଁ ଫେରିଲି । କିନ୍ତୁ ଅନ୍ୟ ନେତା ମାନଙ୍କ ପରି ବ୍ରହ୍ମଗୃଷୀ ସେ ଜଣେ କୁହା ମୁଣ୍ଡା କପିଳା ହୋଇ ନ ଥିବେ, ଏ ବିଷୟରେ ମୁଁ ସନ୍ଦିହାନ ଥିଲି । କାରଣ ଯେଉଁ ଶିକ୍ଷକମାନଙ୍କ ଲାଗି ବୁଢ଼ା ଏତେବଡ଼ ଗାଦିରେ ଆସୀନ, ସେହିମାନଙ୍କୁ ପୁଣି ସମାଲୋଚନା କରିବାକୁ ଦମ୍ ପାଇବ ତ ?

କିନ୍ତୁ ବୁଢ଼ାର ଦମ୍ କେତେ, ତା ମୁଁ ମାସକ ପରେ ଜାଣିଲି । ସତକୁ ସତ ବୁଢ଼ା ମୋ ଆଗରେ ଗପିଥିବା ସମସ୍ତ କଥା ‘ଶିକ୍ଷକ ଦର୍ପଣ’ରେ ପ୍ରକାଶ କରି ଦେଇଥିଲା !

ଅଣ୍ଟି କିଆଁକୁ କେତେ ଜଣ ବାହାରକୁ ଫୋପାଡ଼ି ଦିଅନ୍ତି ? ସେତିକି ସଚ୍ଚୋଟ, ସେତିକି ନିର୍ଭୀକ, ସେତିକି ନ୍ୟାୟବାନ୍ ହେଲେ ତ ।

ଦୂରରେ ଥାଇ ବି ସେଦିନ ବ୍ରହ୍ମଗୃଷୀଙ୍କ ପରି ମହାନ୍ କର୍ମବୀରଙ୍କ ବ୍ୟକ୍ତିତ୍ୱ ନିକଟରେ ମୋର ମଥା ସ୍ୱତଃ ନଇଁଗଲା ।

● ପ୍ରଧାନ ଶିକ୍ଷକ
ବିକ୍ରମଦେବ ମ: ଇ: ସ୍କୁଲ
ପୁରୀ



# ଜୟହେ ବ୍ରହ୍ମଜବା

ଶ୍ରୀ ନାରାୟଣ ସାମଲ

ସୂର୍ଚୀଭେଦ୍ୟ ଅନ୍ଧକାରେ
ଦୁରନ୍ତ ଦୁର୍ଭାଗ୍ୟ ଘେରା ତାମସ ଶବଂଶ ଲୋକେ
ଅସହାୟ ଆର୍ତ୍ତନାଦ ଶୁଭୁଥିଲା । ଆକାଶେ ବତାସେ
ଜହ୍ଲାଦର ଦରବାରେ ଲୋଟୁଥିଲା ଆକୁଳ ମିନତି
ନିଷ୍ପେଷିତ ଅଥର୍ବର କ୍ଳୀବ ଭାଷା ଉପେକ୍ଷିତ ଶିକ୍ଷକର ଆତ୍ମା
ଅଶ୍ରୁମୟୀ ନାରୀର କାରୁଣ୍ୟ ନେଇ
ଶାସକର ସିଂହାସନ ତଳେ
ଝୁରୁଥିଲା ଅନାଦରେ ଲାଞ୍ଛନାର ଅଶ୍ରୁଳ ଲଗ୍ନରେ
ଲୁଚୁଥିଲା ସିଂହନାଦ—ଅଲୌକିକ ଶୌର୍ଯ୍ୟ
ଅନ୍ଧକାର ଗିରି କନ୍ଦରରେ
ଭୟାର୍ତ୍ତ ଶୀତ୍କାରେ ଥରୁଥିଲା ଦଧୀଚିର କାନ୍ତି ।
ଏଇ ନିଷ୍କ୍ରିୟ ମୁହୂର୍ତ୍ତେ
ତମେ ଦୁର୍ବାସାର ବ୍ରହ୍ମାଗ୍ନି
ତମେ ପିନାକୀର ଅନଳ ନୟନ
ସୂର୍ଯ୍ୟାବର୍ତ୍ତ ପ୍ରଚଣ୍ଡ ଘୂର୍ଣ୍ଣନ
ଅନ୍ଧକାରେ ଉଦ୍ଦୀପ୍ତ ଆଲୋକ ଉତ୍ତାଳ ସମୀର,
ହେ ଜ୍ୱଳନ୍ତ ଆଗ୍ନେୟ ପୌରୁଷ
ହେ ଦୁର୍ଦ୍ଦାନ୍ତ ଖଡ୍ଗ ତମେ ଶୋଷକର ପ୍ରାଣେ
ହେ ଦୁର୍ମତି-ତିମିର-ଧ୍ୱଂସକ
ଶୁଦ୍ଧ ବ୍ରହ୍ମଶୃଙ୍ଗ !
ଶ୍ୟାମବନ ନୀଳଦୂର୍ବା ଲହର ଖେଳାଇ
ସ୍ନେହ ସ୍ନିଗ୍ଧ ଗୁରୁ ମହିମାରେ ହସନ୍ତ ଭାସ୍ୱର
ଅନିର୍ବାଣ ଦୀପ ଶିଖା ତମେ

ଲକ୍ଷ ପ୍ରାଣେ—ଏକ ଲକ୍ଷ୍ୟ—ଏକ ତୃଷ୍ଣା
ମୁକ୍ତିର ଆକାଙ୍‌କ୍ଷା—ସ୍ପନ୍ଦିତ—ସଞ୍ଜୀବିତ—
କଲ ମହାପ୍ରାଣ ।
ଅଶ୍ରୁର ପ୍ଲାବନ ନୁହେଁ
ପ୍ରଜ୍ଞାର ଆହ୍ୱାନ ଆଉ
ସଂଗ୍ରାମୀ ଶପଥ ଦେଇ
ବିଜୟର ଚକ୍ରାଲେଖ୍ୟ—ଲକ୍ଷ ଭାଲେ ଆଙ୍କି
ଫୁଟାଇଲ ବ୍ରହ୍ମଜବା ତମେ ।
ସେ ଜବା ଫୁଟିଛି ଆଜି ଅଯୁତ ବର୍ଷରେ
ସେ ବହ୍ନି ଜଳୁଛି ଆଜି ସହସ୍ର ହୃଦୟେ
ଧ୍ୱଂସିବାକୁ ସମାଜ କଳୁଷ,
ଏ ଶିକ୍ଷାର ପାପ ମେଧ ଯଜ୍ଞେ
ହେ ପୁରୋଧା ତୁମେ ଦିଅ ଉଦ୍ଦୀପ୍ତ ଆହୁତି
ଜଳି ଯାଉ ହୀନତା ଭୀରୁତା, ଶାସକର ପ୍ରବଞ୍ଚନା
ଶ୍ୱାନ ମତ ହାକିମର ଶ୍ରୀଖଣ୍ଡି ବିହାର
ଅମୃତର ଚରୁ ଅନ୍ନ କର ବିତରଣ
ମୁମୂର୍ଷୁ ଶିକ୍ଷକ ହାତେ ଯୁଗ ଯୁଗ ଧରି ।
ଶତ ସମ୍ବତ୍ସରେ ଶତ ଶରତର ଦିବ୍ୟ ଜ୍ୟୋତ୍ସ୍ନାପରେ
ତମେ ହୁଅ ଅଂଶୁମାନ ଶୁଭ୍ର ଜୀବ ଜ୍ୟୋତି
ଅନିର୍ବାଣ, ଅଖଣ୍ଡ, ସ୍ଫୁଲିଙ୍ଗ
ଦିଗ ଦ୍ରଷ୍ଟା ଶିକ୍ଷକ ଜାତିର
ଜନ୍ମତିଥି ପବିତ୍ର ପାର୍ବଣେ
ତୁମେ ହୁଅ ସହସ୍ର ଶୀର୍ଷ, ସହସ୍ର ପାଦଯୁକ୍ତ
ନାଶିବାକୁ ବର୍ତ୍ତମାନ ଶିକ୍ଷକର ଦୁଃଖ
ଆଉ ଘେନିବାକୁ କୋଟି ପୂଜାଞ୍ଜଳି ।

● ଶିକ୍ଷକ
ଭଗୀରଥିପୁର ହାଇସ୍କୁଲ
ଢେଙ୍କାନାଳ



# ନେତା

**ଶ୍ରୀ ବନୁ ମହାପାତ୍ର**

ଜୀବନର ଚଲାପଥରେ ପ୍ରତିମୁହୂର୍ତ୍ତ ବହୁ ଘଟଣାର ସମ୍ମୁଖୀନ ହେଲେ ମଧ୍ୟ ଯାହା ଆଦର୍ଶ-ଜନକ ମାନବିକତାର ଚରମ ପରାକାଷ୍ଠା ତଥା ଅତୁଳନୀୟ, ସେହି ଅବିସ୍ମରଣୀୟ ଦୃଶ୍ୟ ପଟକୁ ଜନତା ଦର-ବାରରେ ପୁନରୁକ୍ତ କରିବା ହିଁ କୃତଜ୍ଞତାର ନିଦର୍ଶନ ।

ବିଗତର ସେହି ଅଭୂତପୂର୍ବ ପରିସ୍ଥିତି, ନିର୍ମଳ-ଶାସନର ଅନ୍ତରାଳରେ ଯେଉଁ ଅମାନୁଷିକ ଅନ୍ଧକାର ରାଜତ୍ୱ ଚାଲିଛି, ସେହି ନିର୍ମମ କଷାଘାତେ ଜର୍ଜ୍ଜରିତ ଓ ନିର୍ଯ୍ୟାତିତ କତିପୟ ନିରୀହ କର୍ମଚାରୀ କ୍ଷମତାଶୀଳ କର୍ମକର୍ତ୍ତାଙ୍କର ଜୁଲୁମର ବିହିତ ପ୍ରତିକାର ଦୋଷରେ ହୋଇଛନ୍ତି "ଚାକରିରୁ ବିତାଡ଼ିତ···ଦରମା ବନ୍ଦ ।"

···ତା ପରେ···ସତ୍ୟ ନ୍ୟାୟ ସପକ୍ଷରେ ଜାତିର ଜନକ ପୂଜ୍ୟ ବାପୁଜୀଙ୍କ ଆମୋଘ ଅସ୍ତ୍ର ପ୍ରୟୋଗ କରିଛନ୍ତି "ଆମରଣ ଅନଶନ"···

ସେ ଦିନକୁ ଭୁଲି ହୁଏନା ।

ଗତ କେତେଦିନ ଅବିରାମ ବର୍ଷଣ ଫଳରେ ବର୍ଣ୍ଣିତ ସହରଠୁଁ ଦୁରନ୍ତ ଏହି ପୁରପଲ୍ଲୀର ପରିବେଶ ହୁଏ ଜଘନ୍ୟତମ । ଘୋଟ-ଲଢ଼େଇ-ପ୍ରସୁତ କଚ୍ଚା ସଡ଼କଟି ଆଣୁଏ କାଦୁ, ଛୁଣ୍ଡାଘାଇରେ ଗୋଳା ଜଳ ଭରା-ଦୁର୍ଗନ୍ଧ ଦୁର୍ଯୋଗ ।

ସିଦ୍ଧାନ୍ତକୁ ଉପର ମହଲ ଧାକମଙ୍କୁ ବହୁପୂର୍ବେ ଜଣାଣ ହୋଇଥିଲେ ମଧ୍ୟ, ହୁଏତ ସ୍ୱାର୍ଥ ଦୃଷ୍ଟିରୁ କୌଣସି ପ୍ରତିକାର ବ୍ୟବସ୍ଥା ହେଲା ନାହିଁ । ଫଳରେ ଭବିଷ୍ୟତ୍ ଆଶଙ୍କାରେ ଅନ୍ତର ବିଳାପ କରି ଉଠିଲେ ମଧ୍ୟ, କର୍ତ୍ତବ୍ୟକୁ ସଫଳକାମ କରିବା ଲାଗି ଉକ୍ତ ବିତାଡ଼ିତ, ଭିକାରୀ ପ୍ରାୟ ନିଃସ୍ୱ କତିପୟ କର୍ମଚାରୀ ଅନୁଷ୍ଠାନ ପ୍ରାଙ୍ଗଣରେ "ଆମରଣ-ଅନଶନ" ମହାଯଜ୍ଞ ଉଦ୍‌ଘାଟନ କଲେ ।

ଅଭୂତପୂର୍ବ ଆବିଷ୍କାର···ନୂତନ ଅଧ୍ୟାୟ···ତେଣୁ ଭୁଣ୍ଡିବାଇଦ ଚାଲିଗଲା ଦଣ ମୌଜା । ମନରେ ଉତ୍ସୁକ ଭାବ···ପରିଣାମର ଅଜଣା ଆଶଙ୍କାରେ ଦର୍ଶକଙ୍କ ସଂଖ୍ୟା କ୍ରମେ ବୃଦ୍ଧି ପାଇ ଚାଲିଲା ।

ସମୟ ବୋଧହୁଏ ଦ୍ୱିପ୍ରହର···

ଜନତା ଭିଡ଼ ଭାଙ୍ଗି ସର୍ବାଙ୍ଗପ୍ରାପ୍ତ କାଦୁଅ ଗୋଳା ଜଳମଖା ଦୂତବୋର୍ଯୀ ଆଗନ୍ତୁକ ଅନଶନ-କାରୀଙ୍କ ନିକଟରେ ଛିଡ଼ା ହୋଇ ପ୍ରଶାନ୍ତ ବଦନରେ ଗାବଗମ୍ଭୀର ଦୃପ୍ତ କଣ୍ଠରେ କହିଲେ "ସଙ୍ଘ—ଜିନ୍ଦାବାଦ ।"

ଉକ୍ତ ଶ୍ଳୋଗାନରେ କେଉଁ ମହାମନ୍ତ୍ର ଥିଲା କେଜାଣି ସେହି ଅବଶ ଓ ବିଫଳ ମନୋରଥ ମଣିଷଗୁଡ଼ାଙ୍କ ପ୍ରାଣରେ ସତେକି ନବଜୀବନ ଲାଭ ହେଲା । ଉନ୍ମାଦଭରା କଣ୍ଠରେ ସେମାନେ ଚିତ୍କାର କରି ଉଠିଲେ—

"ଜିନ୍ଦାବାଦ—ଜିନ୍ଦାବାଦ୍" ।

ଆଗନ୍ତୁକ ସେମାନଙ୍କର ଅପରିଚିତ ନୁହନ୍ତି । ତେଣୁ ସେମାନେ ବ୍ୟସ୍ତ ଚଞ୍ଚଳ ହୋଇ ପଡ଼ିଲେ ।

—ସାର୍, ଆପଣ ଆସିଛନ୍ତି ! ରାସ୍ତା ଏତେ କଦର୍ଯ୍ୟ ଦୁର୍ଗମ···ଆପଣ ଖବର ଦେଇଥିଲେ···

ହସିଲେ ସେ । ସ୍ନେହକୋମଳ କଣ୍ଠରେ କହିଲେ—

କଣ ସବାରୀ କି ଶଗଡ଼ ପଠେଇ ଦେଇଥାନ୍ତି ! ପାଗଳା···ଆଠମାସ ଦରମା ନ ପାଇ ତ ଘରୁ କଂସା, ଲୋଟା ବିକି ଖାଇଲଣି, ଆଜି କଣ ସ୍ତ୍ରୀର ଗହଣା ବନ୍ଧକ ରଖି ସବାରୀ ପଠେଇ ଥାନ୍ତ ? ମୁଁ କଣ ତୁମର ଭାଇ ନୁହେଁ ? ଯେଉଁ କଦର୍ଯ୍ୟ ଦୁର୍ଗମ ରାସ୍ତାରେ ସାରା ଜୀବନ ତୁମ୍ଭେମାନେ ଚାଲୁଥିବ, ଆଜି ତୁମମାନଙ୍କ ଏହି ଦୁରବସ୍ଥା ସମୟରେ, ମୁଁ କ'ଣ ସେହି ରାସ୍ତାର ଦୋହାଇ ଦେଇ ତୁମମାନଙ୍କୁ ମରଣ ମୁହଁରେ ଫିଙ୍ଗି ଦେଇ ପାରିବ ? ଆରେ ସେହି ମହାନ୍ନଭୂତି, ଏକତା ପାଇଁ ପରା ସଂଘର ଜନ୍ମ ।

ସହସା ଧାଇଁ ଆସିଲେ କର୍ମକର୍ତ୍ତା ମଣ୍ଡଳୀ । ମଧୁ-ସମ୍ଭାଷଣର ବନ୍ୟା ଉଚ୍ଛୁଳି ଉଠିଲା ଆଗନ୍ତୁକ ପ୍ରତି । ସତେକି ଅତି ଚିନ୍ତିତ ସେମାନେ । ଏହି ଆଗନ୍ତୁକଙ୍କ ପଥଶ୍ରମରେ ।

"ଆରେ ଚଉକିଟିଏ ନେଇଆସ । ଆଜ୍ଞା···ଆପଣ ପୁଣି ଏହି ନରକରେ ପାଦ ଦେଲେ ? ଆମର କି ସୌଭାଗ୍ୟ ।" ଇତ୍ୟାଦି—ଇତ୍ୟାଦି ।

କିନ୍ତୁ ଆଗନ୍ତୁକ ନିର୍ବିକାର । ପ୍ରଶାନ୍ତ ମୁଖମଣ୍ଡଳରେ ମନେ ହେଲା ସୂର୍ଯ୍ୟୋଦୟର ରକ୍ତିମ ଆଭା ବିଚ୍ଛୁରି ପଡ଼ୁଛି ।

ଚଉକି ଆସିଗଲା । କେହି ଜଣେ ଗ୍ଲାସେ ସରବତ ବଢ଼େଇ ଦେଲେ ଆଗନ୍ତୁକଙ୍କ ହାତକୁ । କିନ୍ତୁ ସେ ଚହଟି ଉଠିଲେ ।

ମୁଁ ଆପଣଙ୍କ ଘରକୁ କୁଟୀଆ ସାଜି ଆସିନାହିଁ ଆଜ୍ଞା । ମୁଁ ଆସିଛି ମୋର ଏଇ ସର୍ବହରା—ଜର୍ଜରିତ ଭାଇମାନଙ୍କ ସହ ମରିବାକୁ । ଏ'ପ୍ରୀତ ଆପଣମାନେ ଭାବୁଛନ୍ତି ? ଆଉ ଏହି ସରବତ···ଆପଣମାନେ କଣ ମନେ କରନ୍ତନ୍ତି ମୁଁ ଗୋଟିଏ ଅସୁର, ତେଣୁ ମୋ ଭାଇମାନଙ୍କର ତାଜା ରକ୍ତ ପିଇବି ? ଏହା ସରବତ ନୁହେଁ···ଏ କ୍ଷେତ୍ରରେ ବିଷବତ୍···

ସଭାରେ ଗୋଇଠା ଖାଇ, ମୁହଁରେ ଚାଉଁଶ ବୋଳି ସେଇମାନେ ଖସି ପଳେଇ ଗଲେ···

* * *

ସେହି ଦୁର୍ଯ୍ୟୋଗ ପାଗ ଓ ଦୁର୍ଗମ ପଥ ଅତିକ୍ରମ କରି କପରି ଯେ ଉପର ମହଲ ହାକିମ ମହୋଦୟ ହାଜର ହେଲେ, ମୁଁ କାହିଁକି, ଆପଣ ମଧ୍ୟ ଆଶ୍ଚର୍ଯ୍ୟ ହେବେ ନିଶ୍ଚୟ । * * *

ଆଗତ ସନ୍ଧ୍ୟା । ଦକ୍ଷିଣା ମୌସୁମୀରେ ଭାସି କେବେଠୁଁ ଅପସରି ଗଲେଣି ବିଗତର ଭୟପ୍ରଦ ବଜ୍ରଗର୍ଭା ମେଘମାଳା । ମାଳ ନିର୍ମଳ ଆକାଶ । ପୂର୍ବ ଲଲାଟରେ ହସୁଛି ଶୁଭଦର୍ଶିନୀ ଶୁକ୍ର ତାରାଟି···

ହଁ···ପରିସ୍ଥିତି ମଧ୍ୟ ବାତ୍ୟାବହୁରୁ କରିଥିଲା ମୁକ୍ତି ଲାଭ । ଜୟ ହେଲା କର୍ମଚାରୀ କାତିପୟଙ୍କର । ଆଗନ୍ତୁକ ସଂଘର ନିର୍ଦ୍ଦେଶକ (ଯୋନେଜାଣ୍ଟ) ମହାଶୟଙ୍କ ଉପସ୍ଥିତିରେ ଘର୍ଷଦାନର ସମସ୍ତ ଅନ୍ୟାୟ ଜୁଲୁମର ହେଲା ଚିର ଅବସାନ । ଜୟ ହେଲା ସଙ୍ଘର । ନା— ଜୟ ହେଲା ସତ୍ୟ-ଅହିଂସାର ସାରଥି ଜାତିର ଜନକ ବାପୁଜୀଙ୍କର ।

···ଆପଣଙ୍କୁ ନ ଜଣେଇଲେ ମଧ୍ୟ ପ୍ରତ୍ୟେକେ ନିଃସନ୍ଦେହରେ କହିଦେଇ ପାରିବେ, ଉକ୍ତ ଅଜାତ-ଶତ୍ରୁ, ଦିଗ୍‌ବିଜୟୀ, ସଂଘର ନିର୍ଦ୍ଦେଶକ ମହାଶୟ··· ପରମ ଭକ୍ତିଭାଜନ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଚାରୀ ।

ଏହି ମହାନ ତ୍ୟାଗ, ଆଦର୍ଶ କର୍ତ୍ତବ୍ୟ ନିଷ୍ଠା, ଅତୁଳନୀୟ କର୍ମକୁଶଳତା ଲାଗି, ଆଜି ସେ କଳିଙ୍ଗ-ବରପୁତ୍ର, ବରଣୀୟ **ନେତା** ବୋଲି ସର୍ବଜନ-ପରିଚିତ ହେବେ ।

● ଶିକ୍ଷକ
ହାଟଗଡ଼ ମ. ଇ. ସ୍କୁଲ
ବାଲେଶ୍ୱର

# ମଣିଷ ଏକ କୋଣାର୍କର

ଶ୍ରୀ ପଦ୍ମଚରଣ ମଲ୍ଲିକ

ସେ ଏକ ଅଜେୟ ଦୁର୍ଗ
ଗୁରୁକୁଳ ଗର୍ବ ବାରବାଟୀ ।

ସେ ଏକ ଆଲୋକ ଶିଖା
ପୋଛୁ ହାତେ ଅମା ଅନ୍ଧକାର
ଏ ଜାତିକୁ ଲକ୍ଷ୍ୟ ପଥେ
କରାଇଛୁ ଗର୍ବେ ଆଗୁସାର
ସେ ଜାତିର ଗର୍ବ ଗଉରବ
ଶିକ୍ଷକ ଜାତିର କୋଟି କୋଣାର୍କ ସେ
ସେ ଆମର ଭାଗ୍ୟ ।

ସେ ରତ୍ନ ଭଣ୍ଡାର ଏକ
ଜ୍ଞାନସ୍ତୂପ ମହାନ୍ ପୁସ୍ତକ
ତା ପୃଷ୍ଠାର ସମନ୍ୱୟ
ସାଧନାର ଚରମ ବିକାଶ ।
ସେ ବିରାଟ ଏକ ଅନୁଷ୍ଠାନ
ସେ ଗୁରୁ କୁଳର ଶ୍ରେଷ୍ଠ,
ଶୀର୍ଷତମ ଉନ୍ନତ ସୋପାନ ।

ବାଣୀ ତୀର୍ଥ
ଦେଉଳତର



# ଶିକ୍ଷାବନ୍ଧୁ ପଣ୍ଡିତଜୀ, ମୁଁ ଏବଂ ସଂଘ: ଏକ ଦଶନ୍ଧି

**ଶ୍ରୀ ଚୈତନ୍ୟ କୁମାର ସାହୁ**

୧୯୬୩ରୁ ୧୯୭୩ । ଠିକ ଦଶ ବର୍ଷ ତଳେ । ସଂଘର ଆଜ ଯେଉଁ ଦ୍ୱିତଳ ପ୍ରାସାଦ ନିର୍ଯ୍ୟାତନାର ମୁକାବିଲା କରିବା ପାଇଁ ସଦର୍ପେ ଠିଆ ହୋଇଛି, ଦଶବର୍ଷ ତଳେ ତାହା ଅନ୍ୟ ରୂପେ ରାଜା ବଗିଚା ବଢ଼େଇ ସାହିର ଏକ ଗଳି ବସ୍ତିରେ ଥିଲା । ସେ ପୁଣି ଭଡ଼ାଘର । ତାପରେ ସଂଘର ନିଜ ଘର ହେଲା ପର୍ଯ୍ୟନ୍ତ ଝାଞ୍ଜିରିମଙ୍ଗଳାର ଅନ୍ୟ ଏକ ଲମ୍ବା ଧାଉଡ଼ି ପ୍ରାନ୍ତରେ ବସା ଘର ଥିଲା । ସେତେବେଳେ ସଂଘ ବୋଇଲେ ଯାହା ବୁଝାଉ ଥିଲା—ଏବେ ତାହା ପରିପ୍ରେକ୍ଷୀରେ ଦ୍ୱିଗୁଣିତ ହୋଇଛି । ସଂଘ ଅର୍ଥ ଥିଲା ବ୍ରହ୍ମଗିରି । ବ୍ରହ୍ମଗିରି ଅର୍ଥ ସଂଘ । ଏହିପରି ଦୁଇଟି ନାମ ଅତି ପରସ୍ପର ଜଡ଼ିତ ହୋଇ ସମସ୍ତଙ୍କୁ ସଂଘ ଅର୍ଥ କେବଳ ବ୍ରହ୍ମଗିରି ହିଁ ବୁଝାଉ ଥିଲା । ଏବେ ମୁଁ ଦେଖୁଛି, ତାହା ଦ୍ୱିଗୁଣିତ ହୋଇ ଓଡ଼ିଶାର ପ୍ରତି ପ୍ରାନ୍ତରେ, ହୁଏ ତ ପୁରପଲ୍ଲୀର ଶିକ୍ଷାୟତନରେ ବା ପ୍ରଶାସନିକ କ୍ଷେତ୍ରରେ, ବ୍ରହ୍ମଗିରିର ଅର୍ଥ ବିଭକ୍ତିକରଣ ହୋଇଛି । ସେ ବର୍ତ୍ତମାନ କେବଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ସଂଗଠକ କି ସଂପାଦକ ନୁହଁନ୍ତି । ନିମ୍ନ ମାଧ୍ୟମିକ ସ୍କୁଲ, ହାଇସ୍କୁଲ ଓ କଲେଜ ସଂଘମାନଙ୍କୁ ନେଇ ଗଢ଼ି ଉଠିଥିବା ଶିକ୍ଷକ ମହାସଂଘର ସେ ସଭାପତି । ସେତେବେଳେ ସମସ୍ୟା ଯାହା ଥିଲା, ଏବେ ସେ ସମସ୍ୟା ଦ୍ୱିଗୁଣିତ ହୋଇ ଓଡ଼ିଶାର ପ୍ରତି କେନ୍ଦ୍ରରେ ଗୁମ୍ପା ଓ କାମ୍ପା ପରି ବିସ୍ତାର କରିଛି । ପଞ୍ଚବାର୍ଷିକ ଯୋଜନା ଭିତରେ ଶିକ୍ଷାର ପ୍ରସାରଣ ଭିତ୍ତିରେ ନୂତନ କରି ଗଢ଼ି ଉଠିଥିବା ସ୍କୁଲ କଲେଜମାନ ଶିକ୍ଷାୟତନକୁ ଯେ ଦ୍ୱିଗୁଣିତ କରିଛି, ତାହା ପରିସଂଖ୍ୟାନରୁ ବେଶ୍ ଅନୁମିତ ହୁଏ । ସେହି ଅନୁପାତରେ ଜନସଂଖ୍ୟା ମାନ ଭୂମିରେ ସ୍ଥିର ତଥା ଶିକ୍ଷକ ଯେ ଯୌଗିକ ଚକ୍ରବୃଦ୍ଧିରେ ବୃଦ୍ଧି ପାଇଛନ୍ତି, ତାହା ଅସ୍ୱୀକାର କରି ହେବ ନାହିଁ । ବର୍ତ୍ତମାନର କଳୁଷିତ ସମାଜରେ ବିଶେଷ କରି ଶିକ୍ଷାୟତନ ମାନଙ୍କରେ ଯେଉଁ କରାଳ, ରାକ୍ଷସରୂପୀ ଦାନବମାନେ ଶିକ୍ଷାର ମାନଦଣ୍ଡକୁ ଦୃଢ଼ କରିବାକୁ ଯାଇଁ ଯେଉଁ ମେରୁ ବେଙ୍ଗଳା ବୁଲାଉଛନ୍ତି, ସେଥିରେ ଶିକ୍ଷକ ସମାଜ ବଳଦ ପରି ନିଜେ ପେଷି ହୋଇ, ବୁଦ୍ଧି ବିବେକ ହରାଇ ଯେପରି ଘାଉଁରି ଖାଉଛନ୍ତି, ତାହାର ଉଦାହରଣ ବିରଳ ନୁହେଁ । ଏସବୁ ଅତ୍ୟନ୍ତ ମର୍ମନ୍ତୁଦ, ପ୍ରାଣସ୍ପର୍ଶୀ ଘଟଣା । ହା ଅନ୍ନର ଚିତ୍କାର ଅହରହ ଲାଗି ରହିଛି । ଘରେ କଂସା ତାଟିଆ ବିକି ହେଲାବେଳେ ବେସରକାରୀ ସ୍କୁଲ ସଂପାଦକଙ୍କର ତାଡ଼ନା, ଭର୍ତ୍ସନା, ଶୋଷଣ ମାରଣ ମନ୍ତ୍ର ପୁଣି ଗୃହ ଖଟେଇ, ଅଗ୍ନିନିକ ଛଟେଇ, ବୁଭୁକ୍ଷୁ ଶିକ୍ଷକର ପ୍ରାଣରେ ଭୂମିକମ୍ପର କରାଳ ଧ୍ୱନି ସୃଷ୍ଟି କରୁଛି । ଅବିଶ୍ରାନ୍ତ—ଶେଷ ନାହିଁ ତାର । ପ୍ରତ୍ୟେକ ପ୍ରତ୍ୟେକଟିର ଇତିହାସ । କରୁଣ ଜୀବନୀର ଆତ୍ମଲିପି । ବ୍ରହ୍ମଗିରି ଏ ସବୁକୁ ଅନୁଧ୍ୟାନ, ଅନୁଶୀଳନ କରି କରି କଠୋର ତପସ୍ୟା ମଗ୍ନ । ଉର୍ଦ୍ଧ୍ୱ ଦଶବର୍ଷ ତଳରୁ ଏପର୍ଯ୍ୟନ୍ତ ତପସ୍ୟା । ଋଷି ପ୍ରାଣ ତପସ୍ୟା । ସେ ତପସ୍ୟାରେ ନାହିଁ ହରି ନାମ କି ରାମ ନାମ । ଅଛି ଶତ

ଶତ, କୋଟି କୋଟି ବୁଭୁକ୍ଷୁ, ନିର୍ଯ୍ୟାତିତ ନିଷ୍ପେଷିତ ଶିକ୍ଷକ ସମାଜର ଯାତନା, ବେଦନା, ଅନୁଶୋଚନା। ଗଭୀର ଆତ୍ମ ପ୍ରତ୍ୟୟ, ପ୍ରାଣ ପ୍ରତ୍ୟୟର ନିର୍ଯ୍ୟାସ ନ ଥିଲେ ତପସ୍ୟାରେ ସିଦ୍ଧି ମିଳେନା। ତାଙ୍କ ତପସ୍ୟାରେ ଅଛି କଠୋର ସାଧନା, ଦୃଢ଼ ମନୋବଳ, ନିଷ୍ଠୁର ସତ୍ୟ, ସ୍ପଷ୍ଟବାଦିତା ଏବଂ ଅନ୍ୟାୟର ନିର୍ମମ ନିର୍ଦ୍ଦୟ ସମାଲୋଚନା। ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ପବିତ୍ରତାର ମନ୍ତ୍ରପୂତ ଆଧାର। ଏଥିରେ କୌଣସିଟିର ବ୍ୟତିକ୍ରମହିଁ ବ୍ରହ୍ମର୍ଷି ତପସ୍ୟାର ଖଣ୍ଡପ୍ରଳୟ ସୃଷ୍ଟି। ସେ ଝଡ଼ର ଅଦ୍ୟାବଧି ପରିସମାପ୍ତି ନାହିଁ। ତାହା ନିର୍ଲିପ୍ତ ନିର୍ବିକାର ଭାବରେ ପ୍ରବାହିତ ହେଉଛି। ସେହି ବ୍ରହ୍ମର୍ଷି—ଶିକ୍ଷାପ୍ରେମୀ, ଶିକ୍ଷାରତ୍ନ ବ୍ରହ୍ମର୍ଷି। ଶିକ୍ଷକ କଣ୍ଠରେ ଶିକ୍ଷାବିଦ୍ ବ୍ରହ୍ମର୍ଷି। ଅଦ୍ଭୁତ ଏ ଲୋକ। ବଦ୍ଧ ପାଗଳ। ପାଗଳ ନିଜ ପାଇଁ ନୁହେଁ ସଂଘ ପାଇଁ। ଏଠାରେ ମୋର କେତେକ ବ୍ୟକ୍ତିଗତ ଅନୁଭୂତିକୁ ଆଭାସ ଦେବାର ଅଭିଳାଷ ଏଡ଼ାଇ ପାରୁନି।

ଠିକେ ଫେରି ଯିବାକୁ ହେବ ସେହି ଦଶବର୍ଷ ତଳକୁ। ରାଜାବଗିଚା ଭଡ଼ା ଘରେ ଦୁଇଟି ପ୍ରକୋଷ୍ଠ। ଗୋଟିକରେ ତାଙ୍କ ସଙ୍ଘର ଅଫିସ, ଦୁନିଆ ଯାକର ଥାକ ଥାକ, ଗଦା ଗଦା ସମସ୍ୟା, କାଗଜ ପତ୍ର ଓ ସେ ନିଜେ। ତଳେ ସତରଞ୍ଚ ଖଣ୍ଡିଏ। ପାଖରେ କଲମଟିଏ, ରୁଲବାଡ଼ି, ପେନ୍‌ସିଲ ଓ ଆଉ ଯେତେବେଳେ ଯାହା ଦରକାର ହେଲା। ଠିକ୍ ପୂର୍ବକାଳର ଗାଁ ଅବଧାନ ପଣ୍ଡିତ। ନିଜର ଗାମୁଛାଟିଏ ଓ ଖଣ୍ଡିଏ ଲୁଗା। ସେ ପୁଣି ଖଦଡ଼। ତେଣିକି ଧ୍ୟାନ ନାହିଁ। ମଇଳା କି ସଫା। ଦିନରାତି ଚମ୍ପା ଚାଲି ଥାଏ। କାଗଜ ପରେ କାଗଜ। ସେଥିରେ କଣ ହେଉଥାଏ ତାହା କେବଳ ସେ ଜାଣନ୍ତି। ଆମେ ତୁମେ ଜାଣିବାର ବାଟ ନାହିଁ। କିଏ ଆସିଲେ ଗଲେ ସେତିକି ବି ନଜର ନାହିଁ। କେବଳ ଏତିକି ବୁଝା ଯାଉଥାଏ, ଛପାକଳରେ ଫୁଲାଏ କାଗଜ ପୂରାଇ ଦେଲେ, ସେ ଯେପରି ଥୋଡ଼ା ଛପା ସମ୍ବାଦ ପରିବେଷଣ କରି ଦିଏ, ସେହିପରି ତାଙ୍କ ବ୍ୟସ୍ତତାରୁ ଜଣାଯାଏ ଯେ, ସେଠୁ ଯାହା ବାହାରୁଛି ତାହା ବିଭିନ୍ନ ସମସ୍ୟାର ରାୟ ବା ସମାଧାନର ଥାକ। ତାଙ୍କୁ ଚାହିଁଲେ, ଦେଖିଲେ ବା ବୁଝିବାକୁ ଚେଷ୍ଟା କଲେ, ସାଧାରଣ ଲୋକର ମୁଣ୍ଡ ଠିକ୍ ଭାବେ ଧରିବ ନାହିଁ।

ସେ ଦିନ ମୁଁ ଚୌଦ୍ୱାରରୁ ଚାଲି ଚାଲି ପହଞ୍ଚି ଥାଏ। ସାକ୍ଷାତ ଅପେକ୍ଷାରେ ପ୍ରାୟ ଦୁଇ ଘଣ୍ଟା ହୋଇଗଲାଣି। ତଥାପି ନଜର ନାହିଁ। ସେ ତାଙ୍କ କାଗଜ କଲମ ସହିତ କଣ କଥାବାର୍ତ୍ତା କରୁଥାନ୍ତି। ଦୁଆର ବନ୍ଧରେ ମୋର ଗୋଡ଼ ସେତେବେଳକୁ କଟ ମଟ ହେଲାଣି। ବସି ଯାନ୍ତି, ହେଲେ ପାରୁଛି କେଉଁଠି? ତାଙ୍କ ଟେବୁଲ୍ ଘଣ୍ଟା ଦେଖି ଜାଣିଲି ସେ ଦୁଇ ଘଣ୍ଟା ପରେ ଉଠିଲେ ଏକ କରି। ଏକ ଦୃଷ୍ଟିରେ ସେ ମୋତେ ଦେଖିଲେ। ମୁଁ ସହକର୍ମୀ ପାଇଁ ଉତ୍କଣ୍ଠିତ ହୋଇ ଆସି ଥାଏ। ସେ ଏକ ସାର ଆସିଲେ। ମୁଁ କିପରି କଣ କେତେବେଳେ ଆସିଲି ସେ ବିଷୟ ଆଉ ପଚାରିବାକୁ ଦରକାର ପଡ଼ିଲାନି। ମୋତେ କାମ ବରାଦ ଦିଆଗଲା। ସେତେ ବେଳକୁ ପ୍ରାୟ ୧୨ଟା ବାଜିବ। ମୋତେ ଭାରି ଭୋକ ହେଉଥାଏ। ଚୌଦ୍ୱାରରୁ ଚାଲି ଚାଲି ଆସିବା ଦ୍ୱାରା ଅଳସ ବି ଲାଗୁଥାଏ। ସହକର୍ମୀ ପାଇଁ ଯୋଗ୍ୟ କି ନୁହେଁ, ସେହି ଦିନ କାମରୁ ଜଣା ପଡ଼ିବ ବୋଲି ସେ ମୋତେ କହି ଦେଲେ। ମୁଁ ତେଣୁ ନିଜକୁ ସଙ୍ଗେ ସଙ୍ଗେ ପ୍ରସ୍ତୁତ କରିନେଲି।

ଦଶହରା ସମୟ। ବାହାରେ ନୂଆ ହୋଇ ଆସିଥିବା ଏହି ନଗର ବାସୀଙ୍କର ଉଲ୍ଲାସ ମୟ କୋଳାହଳ, ଧାଁ ଧପଡ଼, ପିଲାମାନଙ୍କର ହା ହୁଲ୍ଲାରି ଆନନ୍ଦ ଚିତ୍କାର ମୋତେ ସେ ବନ୍ଦ କୋଠରୀରେ ରୁଦ୍ଧ-ପ୍ରାୟ କରିଥାଏ। କିନ୍ତୁ ନିରୁପାୟ। ସେ ମୋ ନିକଟରେ ବସି ଥିଲେ ଠିକ୍ ଚଟାଣ ଉପରେ। ଦଶହରା ପରେ ଷାଣ୍ମାସିକ ପରୀକ୍ଷା। ତା ପୂର୍ବରୁ ଅର୍ଡ଼ର କାର୍ଡ଼ ଓ କେତୋଟି ସୁଚିନ୍ତିତ ପ୍ରଶ୍ନ ବ୍ୟବସାୟ ମୂଳକ ଆହ୍ୱାନ ଓ ସଂଘର ବିବରଣୀ ପାମ୍ଫଲେଟ ଚାରି ଫରଦ ଭଙ୍ଗା ହୋଇ ଲଫାପାରେ ପଶିବ। ଏହିପରି ୫୦୦୦ କରିବାକୁ ପଡ଼ିବ।

କାମ ଆରମ୍ଭ ହେଲା । ମୋତେ ଗୋଟିଏ କପର ହେବ ଦେଖାଇ ଦେଇ ସେ ନିଜେ ଲାଗି ପଡ଼ିଲେ । ଘଣ୍ଟାକୁ ଦେଖିଲେ । ମୁଁ ଚାହିଁଥାଏ । ସେ କାଗଜରେ ୧୨ଟା ଲେଖି ରଖିଲେ । ତାପରେ ମୁଁ ତାଙ୍କୁ ଆଉ ନ ଚାହିଁ ମୋ କାମରେ ଲାଗି ପଡ଼ିଲି । ମୁଁ ମୋ ହାତକୁ ବାଣ୍ଟୁଳି ଖଡ଼ାରୁ ବାଣ୍ଟୁଳି ଯେତିକି ବେଗରେ ଯାଏ ସେତିକି ବେଗରେ ଛୁଟାଇଲି । ଭିତରେ ଗଞ୍ଜି ନ ଥାଏ । ସାର୍ଟ ଖଣ୍ଡିକ ଭେଦ କରି ଝାଳ ସବୁ ମୋ ଦେହରୁ ଚଟାଣରେ ପଡ଼ି ପୁଣି ଶୁଖି ଯାଉଥାନ୍ତି । ମୁଁ ସେ ସବୁ ଲକ୍ଷ୍ୟ ନ ରଖି ଖାଲି ଖୋଳରେ ମସଲା ଭର୍ତ୍ତି କରି ଗୋଟାକୁ ଗୋଟା ଚିତ୍‌ପଟାଙ୍ଗ କରି ପକାଉଥାଏ ।

କେତେ ବେଳ ପରେ କେଜାଣି, ବାଣ୍ଟୁଳିଖଡ଼ାରୁ ବାଣ୍ଟୁଳି ସରି ଆସିଲା ପରେ ମୋ ଦେହରୁ ସମସ୍ତ ଘର୍ମିଳ ବାଷ୍ପ ସରି ଆସୁଥାଏ । ଦେହ ଅବସନ୍ନ ଓ କ୍ଷୀଣ ହୋଇ ଆସୁଥାଏ । ହାଇ ପରେ ହାଇ । ଆଙ୍ଗୁଠିଗୁଡ଼ିକ ନିଆଁରେ ବାଉଁଶ ପରି ଠୋ ଠା ଫୁଟୁଥାନ୍ତି । ବାହୁ ଗୁଡ଼ିକ ତଳକୁ ଝୁଲି ରହି ଉପରକୁ ଉଠାଇବାର ଶକ୍ତି ହରାଇଥାନ୍ତି । ଆଖିରୁ ଜୁଳୁ ଜୁଳିଆ ପୋକଗୁଡ଼ାକ ଡେଇଁ ଡେଇଁ ମୋ ସାମନାରେ ବୁଲୁବାର ମୁଁ ଦେଖୁଥାଏ । ଚୌଦ୍ୱାରରୁ ଚାଲି ଚାଲି ଆସିବାରୁ ମୋର ସେହି ପାଦ ଦୁଇଟି ଶ୍ଳଥ ନିଶୀଥ ପରି ସୁଦୀର୍ଘ ଲମ୍ବା ରାସ୍ତାରୁ ବହନ କରି ଆଣିଥିବା ଧୂଳିକଣା ସେ ପର୍ଯ୍ୟନ୍ତ ଚକ୍ ଚକ୍ କରୁଥାଏ । ସକାଳ ଗାଧୁଆର ପ୍ରଥମ କେଶ ପ୍ରସାଧାନ ଆଲୁଳାୟିତ କେଶରାଶି ବେପରୁଆ ଭାବରେ ମୁକ୍ତ ପବନରେ ଧାନ କେଣ୍ଡା ସଦୃଶ ସଂଚରଣ କରୁଥିବାର ମୁଁ ହସ୍ତ ସ୍ପର୍ଶରୁ ଅନୁଭବ କରୁଥାଏ ମାତ୍ର । ସେତେବେଳେ ମୋର ସୁଶୀତଳ କୈଶୋରପୂର୍ଣ୍ଣଶ୍ରୀ ପ୍ରାପ୍ତ ମୁଖମଣ୍ଡଳଟି ଯେ କି ଅବସ୍ଥା ଧାରଣା କରିଥାଏ, ତାହା ମୋର ଜାଣିବାର ଉପାୟ ନଥାଏ । ବୁଢ଼ା ହଡ଼ାକୁ ପାଞ୍ଚଣ ପିଟି ବେଙ୍ଗଳା ବୁଲେଇଲେ ଯାହା, ଧାନ ମକଚ ନ ମକଚିଲା ପରି ମୋର ଅବସ୍ଥା ପ୍ରାୟ ହେଇଆ । ମୋର ପଞ୍ଚତ୍ୱ ପ୍ରାପ୍ତିର ଆଶଙ୍କା କହିଲେ ଠିକ୍ ହେବ । କାରଣ ମୋର ମେରୁଦଣ୍ଡଟା ହଠାତ୍ **Titanus** ରେ ଆକ୍ରାନ୍ତ ହେଲା ପରି ଲାଗିଲା । ମାତ୍ର ମୁଁ ଉହ୍ନିଙ୍କ ଦେଖିଲି ବ୍ରହ୍ମଚାରୀ ଓ ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ଠିକ୍ ଦୋଳ ବେଦୀରେ ଦୋଳି ଝୁଲଣ ସଦୃଶ ହଲୁଛି ଓ ଝୁଲୁଛି । ସେ ଲାଗିଛନ୍ତି ପୋକପରି ଠିକ୍ ପୋକ ସଦୃଶ । ହାତ ତାଙ୍କର ପବନ ବେଗରେ ସାଇଁ ସାଇଁ, ସଟାସଟ୍ ଉଡ଼ୁଛି । ଆଉ ସେ ଗୋଟାକ ପରେ ଗୋଟିଏ ଲଫାପାକୁ ମୋଡ଼ି ସେଥିରୁ ଜାତ ହେଉଥିବା ଶ୍ରେଷ୍ଠ ଶୃଙ୍ଗକୁ ବଡ଼ କରି ଚାଲିଛନ୍ତି ।

ମୁଁ ଥକି ପଡ଼ିଲି । ଲଥ କରି ବସି ରହିଲି । ସେ କହି ଉଠିଲେ, "କଣ ମିଷ୍ଟର ! ଏସା ନେହିଁ ଚଲେଗି । ଯୋ ହୋଗା ଆଜ ହୋଗା । **You are young . I am old.** କି ବୋଲ୍‌ଛେନ୍ ।"

"ଧେତ୍ ତେରିକ ।" ମୋ ପାଟିରେ ଭାଷା ନାହିଁ । ମୋ ଆଖିରୁ ଅଲୁହା ଅଦେଖା ପାଣି ଛୁଟିଲା । ପେଟଟା ମୋଡ଼ି କାଁ କାଁ ହେଉଛି । ବ୍ରହ୍ମଚାରୀ ଉଠିଲେ । ଅପରାହ୍ନ ସାଢ଼େ ଚାରି । ତାଙ୍କ କାମ ସରିଲା । ମୋ ହାତ କେତେ-ବେଳୁ ଆପେ ଆପେ ବନ୍ଦ ହୋଇ ଯାଇଥାଏ । ୪୨ ଘଣ୍ଟାରେ ମୁଁ ମୋ କାମକୁ କେତେଦୂର ବିସ୍ତାର ସହିତ କରିଛି ଓ କେତେ ପରିମାଣ କରିଛି, ତାଙ୍କ କାମ ସହିତ ଅନୁପାତ ନିକାଶ କଲେ । ଘଣ୍ଟାରେ ଏତେ...ଅଧ ଘଣ୍ଟାରେ ଏତେ...ମିନିଟରେ ଏତେ...ସେକେଣ୍ଡକୁ... ଇତ୍ୟାଦି ଇତ୍ୟାଦି । ସେତେବେଳକୁ ସହକାରୀ ହେବାର ମୋହ ମୁଦ୍‌ଗରତା କ୍ଷୀଣ ହୋଇ ଆସୁଥାଏ ।

ସେ ପେଟରେ ସାମାନ୍ୟ ହାତ ବୁଲାଇ ଆଣି କହିଲେ, "ଆଜି ଖାଇ ହେଲାନି । କାମ ପଡ଼ିଲେ ଏମିତି ଖାଇବା ଭୁଲି ଯିବାକୁ ହେବ ।" ଏସବୁ କଥା ମୋ କର୍ଣ୍ଣ ଗହ୍ୱରରେ ପ୍ରବେଶ କରି ପୁଣି ହତବାକ୍ ହୋଇ ଫେରି ଯାଉଥାଏ । କାଳ ବିଳମ୍ବ ନ କରି ସେ ଆଲମାରିରୁ ଡାକ ଟିକଟ ପୁଳାଏ ବାହାର କରି ସେହି ଲଫାପା ଗୁଡ଼ିକୁ ବନ୍ଦ କରି ଟିକଟ ମାରିବାରେ ଲାଗି ପଡ଼ିଲେ । ମୁଁ ମୋ କାର୍ଯ୍ୟର ଫଳାଫଳକୁ ଅପେକ୍ଷା ନ କରି ଚୌଦ୍ୱାର ଫେରିବାର ସ୍ୱପ୍ନ ଦେଖୁଥିବା ସମୟରେ ସେ ପୁଣି କହି ଉଠିଲେ, "ଡେରି କଲେ

ଚାଲିବନି । ୭ଟାରେ R. M. S. Posting ହେବ । ଏ ସବୁ ଜରୁରୀ ।'' ମୋ ଅନିଚ୍ଛାରେ ସୁଆରେ ଭାଙ୍ଗି ସେ ପାଣି ଚାଟିଆ ଓ ଟିକେଟ୍ ବଢ଼ାଇ ଦେଲେ । ତା ପରେ ସେ ଜଣେ ନିଷ୍ଠୁର ନିର୍ମମ ଲୋକ ବୋଲି ମୋର ସତ୍ୟ ପ୍ରତ୍ୟୟ ହେଲା । ମୁଁ ମନେ ମନେ ସେଦିନ ତାଙ୍କୁ ଯାହା ଗାଳି ଦେଲି ତାହା ସେ ଜାଣି ନାହାନ୍ତି, କେବଳ ମୁଁ ଜାଣିଛି । ଯାହା ହେଉ ହାଡ଼ ଭଙ୍ଗା ପରିଶ୍ରମ ପରେ ସେ ଦିନ ସମସ୍ତ ଚିଠି ଗୁଡ଼ିକ R. M. S. ରେ Posting ହେଲା । ରିକ୍‌ସାରେ ଯାଇଁ ଖାଲି ଗୋଡ଼ରେ ଫେରିବାକୁ ପଡ଼ିଲା । ସେ ମୁକ୍ତପଦ । ମୁଁ ବାଟା ଚପଲ ପିନ୍ଧି ଥାଏ । ସେ ଚାଲି ଥାଆନ୍ତି, ମୁଁ ଖାଲି ଧାଇଁ ଥାଏ । ତାଙ୍କ ଚାଲି ମୋତେ ଲାଗୁଥାଏ ସେ ଦଉଡ଼ିବାରେ ଲାଗିଛନ୍ତି, ଆଉ ମୁଁ ନ ଦୌଡ଼ିଲେ ଦୁହେଁ ପରସ୍ପରକୁ କେଉଁଠି ହଜେଇ ଦେଇ ପାରୁଁ । ରାତି ୯ଟାରେ ସେ କେଉଁ ଦିନର ସାଇତା ୩୦୦ ଗ୍ରାମ ଭଳି ଚୂଡ଼ା ବାହାର କଲେ । ୧୫୦ ଗ୍ରାମ ଚୂଡ଼ା ଭିଜାଇ ପାଟିରେ ପକାଇବାକୁ ଲାଗିଲେ । ମୋ ପାଟିରେ ପାଟିଏ ଭୋକ ଉବୁ ଟୁବୁ ହେଉ ଥାଏ । ସେହି ଚୂଡ଼ା ଦି'ଟାକୁ ଦେଖି ମୋ ପାଟିଟା ସତ୍‌ସେଇ ଉଠିଲା । କିନ୍ତୁ ଦୁର୍ଭାଗ୍ୟ । ଅବଶିଷ୍ଟତକ ସେ ଆଲମାରିରେ ଯତ୍ନରେ ସଜାଡ଼ାଇ ରଖିଲେ । ଖାଲି ଚୂଡ଼ାରେ ଲୁଣ ଟିକେ ପକାଇ ଖାଉ ଖାଉ ଚିତ୍କାର କରି ଉଠିଲେ "ଯା ସବୁ ଗୋଳମାଳ ହୋଇଗଲା । ଦୁଇଟା ସ୍କୁଲ୍‌କୁ Order Card ନ ଯିବାର ଥିଲା । ଭୁଲରେ ଚାଲିଗଲା । ତିରିଶି ପଇସା କ୍ଷତି ହେଲା । କେତେ ବଡ଼ ଅସାବଧାନତା ! ସେ ସ୍କୁଲର ଶିକ୍ଷକମାନଙ୍କୁ ତାହା ହାତରେ ଆଗରୁ ଦିଆ ହୋଇଛି ।'' ଚୂଡ଼ା ଗଣ୍ଡାକ ତଳେ ଥୋଇ ଦେଇ ଗୁମ୍ କରି ତଳେ ବସି ପଡ଼ିଲେ । ତା ପରେ କଣ ଭାବି କିଛି କ୍ଷଣ ପରେ ମୋ ଖାଇବାର ଅନୁସନ୍ଧାନ କରି ବସିଲେ । ମୁଁ ଯେ ସେ ପର୍ଯ୍ୟନ୍ତ କିଛି ଖାଇନି, ତାହା ତାଙ୍କ କଳ୍ପନାରେ ବି ପଶି ନ ଥିଲା । ସେ ସଫେଇ ଦେଲେ "କାମ ଭିତରେ ମୁଁ ନିଜ ଖାଇବା କଥା ଭୁଲି ଯାଏଁ, ତେଣୁ ନିଜେ ନିଜର ଖାଇବା ଠିକ୍ କରି ନେବା ଉଚିତ । ମୁଁ ଧାଇଁଲି ପାଖ ହୋଟେଲକୁ । ରାତି ଶେଷ ଭୋଜନ ପାଇଁ ସାଇତା ହୋଇଥିବା ହୋଟେଲ ମାଲିକର ସମସ୍ତ ଖାଦ୍ୟ-ସାମଗ୍ରୀକୁ ସେ ଦିନ ମୁଁ ଯେଉଁ ଭାବେ ଆରମ୍ଭ କରି ଶେଷ କରିବାର ଉପକ୍ରମଣିକା ନେଲି ସେ ଦିନ ଯେ ଦେଖିଲା ସେ ହସିଲା ।

ଦଶହରା ପରେ ଷାଣ୍ମାସିକ ପରୀକ୍ଷା ଚାଲିଥାଏ । ଧମାଧମ୍ ଘମାଘୋଟ ପ୍ରଶ୍ନ ବ୍ୟବସାୟ । ସଂଘର ଯେଉଁ ସ୍କୁଲମାନ ମେମ୍ବର ସେହିମାନେ ପ୍ରଶ୍ନ ନେଉ ଥାଆନ୍ତି । ଆଜି ବୋଧେ ସଙ୍ଘର ସ୍କୁଲ ମେମ୍ବର ସଂଖ୍ୟା ୫୦୦୦ ୬୦୦୦ ହେବ । ମାତ୍ର ସେତେବେଳେ ସଙ୍ଘର ସଭ୍ୟ ସଂଖ୍ୟା ୧୦୦୦ । ୯୦୦ ଭଳି ସ୍କୁଲ ଥାଆନ୍ତି । ସେହି ଅନୁପାତରେ ସଙ୍ଘର ପ୍ରଶ୍ନ ବ୍ୟବସାୟ ଚାଲିଥାଏ । ବର୍ତ୍ତମାନ ଏହି ପ୍ରଶ୍ନ ବ୍ୟବସାୟ ଚୁଲାଇବା ପାଇଁ ପାଞ୍ଚ ଜଣ ସହକର୍ମୀ ଯୁକ୍ତ ବ୍ରହ୍ମଚାରୀ ଯୁକ୍ତ ଦପ୍ତରୀ ୩।୪ ଜଣ ଯୁକ୍ତ ପିଅନ ଏମିତି ୧୦ ଜଣ ପାଖାପାଖି ଲୋକ ଦରକାର ହେଉଛନ୍ତି । ସେତେବେଳେ କିନ୍ତୁ ଏହି କାମ ଚୁଲାଇବା ପାଇଁ ବ୍ରହ୍ମଚାରୀ ନିଜେ, ମୁଁ ଓ ଦପ୍ତରୀ ଦୁଇ ଜଣ ଥିଲୁ । ଦପ୍ତରୀ କାମ ଆମେ ବି ବେଳେ ବେଳେ କରୁଁ । ବ୍ରହ୍ମଚାରୀ ନିଜେ ୩।୪ ଜଣ ଲୋକର କାମ କରୁଥିଲେ, ଏବେ ବି କରୁଛନ୍ତି । ଯୋଡା ସିଲାଇ ଠାରୁ ଚଣ୍ଡୀପାଠ ପର୍ଯ୍ୟନ୍ତ ସେ ନିଜେ କରନ୍ତି ଓ ଅନ୍ୟକୁ କରାନ୍ତି । ସକାଳ ୫ଟାରୁ କାମ ଆରମ୍ଭ ହୋଇ ରାତି କେତେଟା ଯେତେ ସମୟ ପର୍ଯ୍ୟନ୍ତ ଚାଲିବ, ତାର ହିସାବ ନଥାଏ । ହୁଏ ତ ରାତି ପାହି ଯାଇପାରେ । ଆପତ୍ତି ନାହିଁ କି ଅଭିଯୋଗ ନ ଥାଏ । ଖାଇବା ଶୋଇବା ଭୁଲି ଯିବାକୁ ହେଉଥିଲା । ମୁଁ ଏମିତି ଥରେ ନଖାଇ ନ ପିଇ ରାତି ଦିନ ଖଟିବା ଦ୍ୱାରା Medical ହଇଜା ଓ୍ୱାର୍ଡ଼କୁ ବୁହା ହୋଇ ଯାଇଥିଲି । ସେଥିରେ ବିଚଳିତ ହେବାର କିଛି ମାନେ ନାହିଁ । ଏଇଟା ବ୍ରହ୍ମଚାରୀଙ୍କର ସୁଆହିଲା ପରି ଅନୁଭୂତି । କାମ କଲେ ଏମିତି ହୁଏ । ତାକୁ ଖାପ ଖୁଆଇବାକୁ ପଡ଼ିବ । ମୁଁ ନୂଆ, ପାରୁଛି କେତେକେ ? ବିଶ୍ରାମ କି ଶୋଇବା

ଏଇଠା ସ୍ୱପ୍ନରେ ଗୋଲାପ ସଙ୍ଗେ କେଳି କଲି ସଦ୍ଧ୍ୟଶ ଥିଲି । ସେତେବେଳେ ଭଡ଼ାଘର ଦୁଇଟି ଯାକ ରୁମ୍ ପ୍ରଶ୍ନ କାଗଜ ପତ୍ର ଓ ବ୍ୟବସାୟ ହିସାବ ପତ୍ରରେ ଭରପୂର ହୋଇଥାଏ । ତଳେ ଚଟାଣ ତା ଉପରେ ସଉପ ଖଣ୍ଡିକ, ନଚେତ୍ ଖାଲି ତଳ । ବର୍ତ୍ତମାନ ପରି ଚେୟାର ଟେବୁଲ ନ ଥିଲି । ପାଖରେ ପେଟ୍ରୋମାକ୍ସ ଲାଇଟ୍ । ଲକ୍ଷ୍ୟ ରଖି ମଝିରେ ମଝିରେ ପମ୍ପ ଦେବାକୁ ପଡ଼ିବ । ସେଥିରେ ଯେମିତି ବ୍ୟତିକ୍ରମ ନ ହୁଏ । ରାତିରେ ଦୁଇ ପଟ ରୁଟି, ଚିନି ବା ପିଆଜ ଖଣ୍ଡେ । ଦିନରେ ଭାତ, ଡାଲମା ନଚେତ୍ ଖାଲି ମିଠା ଅରୁଆ ଖେଚଡ଼ି ଠିକେ । ବେଶ୍ ହୋଇଗଲି । ତାପରେ ଯନ୍ତ୍ରମତ କାମ । ମଝିରେ ମଝିରେ ହେଲି ତ ପାନ ଖଣ୍ଡେ ବା ବଡ଼ିକ ସିଗାରେଟ୍‌ଟା ଯଦିଓ ଅଭ୍ୟାସ ନୁହେଁ । ଏ ଘରୁ ସେଘର, ବାହାରୁ ଭିତର ଯୁଆଡ଼ୁ ଗୁହାଁବ ଖାଲି କାମ, କାଗଜ କଲମ କାମ, ଧାଁ ଧପଡ଼ କାମ । ନିଜେ ରିକ୍ସା ଡାକିବା, ପୋଷ୍ଟ ଅଫିସ୍ ଦଉଡ଼ିବା, ସେଠି ନମ୍ବର କରି ତଳେ ବସି ଷ୍ଟାମ୍ପ ମାରିବା ଏସବୁ ମାତିଦିନିଆ ଅଭ୍ୟାସଗତ କାମ । ସେଥିରେ ସଙ୍କୋଚ କରିବାର କିଛି କାରଣ ନାହିଁ । ଏହି ହେଲି ତାଙ୍କ ଆଦର୍ଶ । ସେ ଆଦର୍ଶ ଅନ୍ୟ କାହାକୁ ପ୍ରଭାବିତ କରୁ କି ନକରୁ, ସେ କିନ୍ତୁ ଅଟଳ ଅଚଳ । ପଇସାଟିଏ ବରବାଦ ହେଲେ ସତେ ଯେପରି କଲିଜା ଫାଟିଯିବ । ତେଣୁ ସେ କଲିଜା ଫଟାଇ ନିଜେ ଖଟୁଥିଲେ ଓ ଖଟାଉଥିଲେ । କିଏ ଭଲ ପାଉ, କିଏ ଖରାପ ପାଉ । ନଚେତ୍ ଆଜି ଯେଉଁ ସଙ୍ଘର ଲକ୍ଷାଧିକ ଅର୍ଥ ବ୍ୟୟରେ ସୁଉଚ୍ଚ ଅଟ୍ଟାଳିକା ଠିଆ ହୋଇଛି, ତାହା କେବେ ସମ୍ଭବ ହୋଇ ନ ଥାଆନ୍ତା । ଏହା ତାଙ୍କର ଆତ୍ମନିର୍ଭରଶୀଳତା, କଠିନ କର୍ମଠତା, ନିଜସ୍ୱ ଯୋଜନା ଓ ନୈତିକତା ଏବଂ ସର୍ବୋପରି ଆନ୍ତରିକତା ଓ ମିତବ୍ୟୟିତାହିଁ ତାଙ୍କୁ ଏତେଦୂର ଅଗ୍ରସର କରାଇ ପାରିଛି—ଏହା ସର୍ବଜନ ସ୍ୱୀକାର୍ଯ୍ୟ ।

ଗୋଟିଏ କାମକୁ ଆରମ୍ଭ କରି ଶେଷ ନ କରିବା ଯାଏ ସେଥିରେ ଲାଗିବା ତାଙ୍କ ଜୀବନରେ ମୂଳ ମନ୍ତ୍ର । 'କର୍ମ ଏବ ଧର୍ମ' ଏହାହିଁ ତାଙ୍କର ମହାନ ଆଦର୍ଶ ।

ସେ ଯେ ସଙ୍ଘ ପାଇଁ କେତେଦୂର କାଙ୍ଗାଳ ଓ ପାଗଳ, ତାର ଗୋଟିଏ ଉଦାହରଣ ମୁଁ ଏଠି ଦେଉଛି । ପରୀକ୍ଷା କାମ ସରିଥାଏ । ସେଦିନ କାମ ଠିକେ କୋହଳ କରି ରାତି ୧।୩୦ରେ ସହଳ ଶୋଇବା ପାଇଁ ବ୍ରହ୍ମଚାରୀ ଠିକ୍ କଲେ । ସେ ଦିନ ବଡ଼ ଭାଗ୍ୟ ବୋଲି ମନେ କଲି । ମୁଁ ଏତେ କ୍ଳାନ୍ତ ହୋଇଥାଏ ଯେ, ତଳେ ବସୁ ବସୁ ଲମ୍ବ ହୋଇ ପଡ଼ିଗଲି । ମୋତେ କିଛି ମାଲୁମ ନ ଥାଏ । ଦୀର୍ଘ ଦିନର କଠୋର ପରିଶ୍ରମ ଓ ସେ ଦିନର ଗଭୀର ନିଦ୍ରା ମୋତେ ନିଦ୍ରା ଦେବୀଙ୍କ ସ୍ୱପ୍ନପୁରକୁ ନେଇ ଯାଇଥାଏ । କିଛି ସମୟ ପରେ ଠିକ୍ ସେହି ନିଦ୍ରାରେ ମୁଁ ଅନୁଭବ କଲି, କାହାର କଣ୍ଠ ସ୍ୱର । ସେଥିରେ କେବଳ କ୍ରନ୍ଦନର ସେଁ ସେଁ ଶବ୍ଦ । ମୁଁ ଅବାକ୍ ହେଲି—ଚମକି ପଡ଼ିଲି । ରାତ୍ରିର ଗମ୍ଭୀରତା ଏବଂ ଶୀତର ପ୍ରକୋପରେ ମୁଁ ପ୍ରଥମେ ହିଡ଼ବିଡ଼େଇ ଗଲି । ଉଠିଲି । ଯାହା ଦେଖିଲି ସେଥିରେ ମୋର ନିଶ୍ୱାସ ଆସିଲାନି । ବ୍ରହ୍ମଚାରୀ ସଉପ ଉପରେ ବସି କାନ୍ଦିବାରେ ଲାଗିଛନ୍ତି । ପଚାରି ବସିଲି "କଣ ହେଲି ଆଜ୍ଞା ?"

"କଣ ନ ହୁଅନ୍ତା ? ବିରାଟ ବଡ଼ ଭୁଲ ହୋଇଗଲି । ରାତିରେ ନିଦ ହେଲି ନା । ଉଠି ବସି କିଛି କାମ କରୁ କରୁ ଏ ଭୁଲ ଆଖିରେ ପଡ଼ିଗଲି । କେତେକ ସ୍କୁଲକୁ ଇଂରାଜୀ ପ୍ରଶ୍ନ ବଦଳରେ ଡବଲ ହିନ୍ଦି ଚାଲି ଯାଇଛି । କାଲି ପରୀକ୍ଷା ଆରମ୍ଭ । ଇଂରାଜୀ ଚତୁର୍ଥ ଦିନ ଅଛି । କଣ କରିବି ସେଇଆ ଭାବୁଛି । ସଙ୍ଘରୁ ଯେଉଁ ମାନେ ପ୍ରଶ୍ନ ନେଉଛନ୍ତି ସଙ୍ଘର ଏପରି ଭୁଲ ଦେଖିଲେ ଆଉ ସେ ସଙ୍ଘକୁ କାହିଁକି ଆସିବେ ? ଏଇଟା ସତ କଥା । ଏତେ କଷ୍ଟକରି ଯେଉଁମାନଙ୍କୁ ସଙ୍ଘର ଆପଣାର କରାଇଛି ସେମାନେ ଦୁରେଇ ଗଲେ ମୁଁ ବଞ୍ଚିବି କେମିତି ? ଏ ଭୁଲ ନିଶ୍ଚୟ ମୋର । ଭୁଲ-ଭୁଲ-ବିରାଟ ବଡ଼ ଭୁଲ ।" ଏକା ନିଶ୍ୱାସକେ ସେ ଏତକ କହି ଗଲେ । ଆଖିରେ ତାଙ୍କର ଧାର ଧାର ଲୁହ । ମୁଁ ଦେଖିଲି ଏବଂ ଶୁଣିଲି । କଳ୍ପନା କରି ପାରିଲି ନି, ଏଇଥି ପାଇଁ ରାତି ୪।୩୦ରେ ବ୍ରହ୍ମଚାରୀ ପିଲାଙ୍କ ପରି କାନ୍ଦିବାରେ ଲାଗିଛନ୍ତି । ବ୍ରହ୍ମଚାରୀ ! ପୁଣି

ଭୁଲ !! ଏ ବଡ଼ ଅଦ୍ଭୁତ କଥା; ମୁଁ ବିସ୍ମିତ ହେଲି ।

ତା ପର ଦିନ ସେ ଅଖିଆ, ଅପିଆ, ଅଗାଧୁଆ କେତେକ ପାଖ ସ୍କୁଲକୁ ଧାଇଁଲେ । ହାତେ ହାତେ ପ୍ରଶ୍ନ ନେଇ ନିଜେ ବୁଲି ବାଣ୍ଟିଲେ । କ୍ଷମା ଭିକ୍ଷା ମାଗିଲେ । ବାକି ଦୂର ଜାଗାକୁ **Express regd Parcel** ଦ୍ୱାରା ଇଂରାଜୀ ପ୍ରଶ୍ନଟିକ ପଠାଗଲା । ସ୍କୁଲ-ପାଇଁ ତାଙ୍କର କି ଜ୍ୱଳନ୍ତ ପ୍ରେମ ତାହା ଏଥିରୁ ନିଶ୍ଚୟ ବୁଝାଯିବ ।

ଆଉ ଦିନକର କଥା । ତାଙ୍କ ସ୍କୁଲର ପିଅନଟିଏ । ସେ ହେଉଛି ନୃସିଂହ । ଚାକର, ପୁଝାରୀ, ପିଅନକୁ ପୁତ୍ରବତ୍ ସ୍ନେହ କରିବା ତାଙ୍କର ଗୋଟିଏ ଆଦିମ ପ୍ରକୃତି । ତାଙ୍କ ସ୍କୁଲର ସହକର୍ମୀ, ଝିଅ-ଜ୍ୱାଇଁ, ନାତି-ନାତୁଣୀ, ବନ୍ଧୁ-ବାନ୍ଧବ ବା ଶିକ୍ଷକମାନଙ୍କୁ ଯେତେ ସ୍ନେହ, ପ୍ରେମ ବା ଆଦର ନ କରନ୍ତି, ଏମାନଙ୍କୁ ତାଠାରୁ ବେଶି । ଏମାନେ ଭୁଲ କଲେ କ୍ଷମା ପାଇବେ, ଦୋଷ କଲେ ଦଣ୍ଡରୁ ମୁକ୍ତ ହୋଇ ପାରିବେ କିନ୍ତୁ ସହକର୍ମୀ, କି ଘର ଲୋକ, କି ଶିକ୍ଷକ କିଛି ସାମାନ୍ୟ ଅପରାଧ କଲେ ସେ ଯେ କି ଖପା ହୁଅନ୍ତି ତାହା ଏଠି ବର୍ଣ୍ଣନା ନ କରିବା ହିଁ ଭଲ । ତାଙ୍କ ନୃସିଂହକୁ ଥରେ ବେମାର ପଡ଼ିଲା । କି ବେମାରି ଜଣାଗଲାନି । ରାତି ଅଧରେ **Medical** ର **emergeney ward** ରେ ଭର୍ତ୍ତି ହେଲା । ତା ପର ଦିନ ବ୍ରହ୍ମପୁରୀ ଗୁରୁତର କାମରେ ଦୂର ଜାଗାକୁ ଯିବା କଥା । ତାକୁ ସେ ହଠାତ୍ ବନ୍ଦ କଲେ । ରାତି ସାରା ଜଣେ ଲୋକ ନୃସିଂହକୁ ଜଗି ବସିଲା । ତା ପରଦିନ ଡାକ୍ତର **Titanus** ବୋଲି ଘୋଷଣା କଲେ । ସବୁ କାମ ବନ୍ଦ କରି ବ୍ରହ୍ମପୁରୀ ଲୋକ ଲଗାଇ ରୋଗୀକୁ ଦିନ ରାତି ଜଗି ବସିଲେ । ପ୍ରଥମ ଦିନ ପରେ ଦ୍ୱିତୀୟ ଦିନ ରୋଗ ସାଙ୍ଘାତିକ ଆକାର ଧାରଣ କଲା । ସେ ମୋତେ ଧରି **Medical** ରେ ଥିବା ଗାଁର ଜଣେ ବଡ଼ ଡାକ୍ତର ପାଖକୁ ଧାଇଁଲେ । ସେ ଡାକ୍ତର ବାବୁ ତାଙ୍କର ଜଣେ ଛାତ୍ର । ସେ ତାଙ୍କୁ ନେହୁରା ନିମନ୍ତ ହୋଇ ନିଜେ ରୋଗୀର ଦେଖାଜଡ଼ କରିବା ପାଇଁ କହିଲେ । ସେ ଛାତ୍ର ଆଜି ଯେ ଜଣେ ବଡ଼ ଡାକ୍ତର ଏବଂ ରୋଗୀ ଦେଖା ଫିସ୍ ନେବା, ଔଷଧ ଦେବା, ରୋଗୀ ମରିବା—ଏଇଟା ଯେ ସାଧାରଣ ମାମୁଲି କଥା, ତାହା ଗୁରୁଙ୍କ ସାକ୍ଷାତରେ ଅଶ୍ରୁଧାରେ ଛଳ ଛଳ ହବ ହେଇ ସେ ମନେ ମନେ ଆତ୍ମ ସମୀକ୍ଷା ଝାଡ଼ିଲେ । ଗୁରୁ କିନ୍ତୁ ନିଜ ଆବେଦନରେ ସନ୍ତୋଷ ଅନୁଭବ କରି ଝଡ଼ ବେଗରେ ପଦାକୁ ମାଡ଼ି ଆସିଲେ ଏବଂ କିଛି କ୍ଷଣ ପାଇଁ ମୁକ୍ତ ଆକାଶକୁ ଚାହିଁ ରହିଲେ । ସେତେବେଳକୁ ସେ ପିଅନଟି ତାର ଦରମା ଗୁଡ଼ା ତାଙ୍କଠାରୁ ହାତ ଉଧାର ପାଞ୍ଚ ଶହରୁ ଊର୍ଦ୍ଧ୍ୱ ଟଙ୍କା ନେଇଥାଏ । ତାର ଘରେ ବାପ-ମାଆ, ଭାଇ-ଭଉଣୀ, ନୂଆ ବିବାହିତ ସ୍ତ୍ରୀ—ଏହିପରି ଦଶ ଜଣ କୁଟୁମ୍ବ । ବାପ ଅକ୍ଷମ, ଭାଇ ଗୁଡ଼ିକ ନିହାତି ଛୋଟ ଛୋଟ । ଘରକୁ ରୋଜଗାରିଆ କେବଳ ସେ ଏକା । ମାସର ପ୍ରଥମ କେଇଦିନ ଛାଡ଼ି ଦେଲେ ହାଣ୍ଡିଶାଳେ ଚୁଲି ପ୍ରାୟ ଖାଲି ପଡ଼ି-ଥାଏ । ଏ ମୋ ଦେଖା ଶୁଣା କଥା । ଏଇ ସବୁକୁ ଗୋଟି ଗୋଟି ଆଲୋଚନା କରି ସେ କେତେ କଣ ଭାବି ଯାଉ ଥାଆନ୍ତି । ତାଙ୍କ ସ୍ତ୍ରୀ ଏହି **Titanus** ରେ ମରିବାର ମୋତେ ସ୍ମରଣ କରାଇ ଦେଲେ ଏବଂ କହିଲେ ଏ ରୋଗ ଅତି ସାଙ୍ଘାତିକ । ଏ ରୋଗ କାହାକୁ ଛାଡ଼େ ନାହିଁ । ଏଥିରେ ବଞ୍ଚିବାର ଆଶା ଖୁବ୍ କମ୍ । ରିକ୍ସା ଚାଲିଛି । ମୁଁ ରିକ୍ସା ପରଦା ଦେଇ ରାସ୍ତାର ଶୁଭ୍ର ଆଲୋକ ସହିତ ବାଟର ଲାଇଟ୍ ପୋଷ୍ଟରର ଖାମ୍ବ ବିଜୁଳିବତୀଗୁଡ଼ିକୁ ଗାଣିତିକ୍ ନିରୀକ୍ଷଣ କରୁଥାଏ । ସେ କଣ କହୁଥାଆନ୍ତି ମୁଁ ଶୁଣି ନ ଶୁଣିଲା ପରି— କିନ୍ତୁ ହଠାତ୍ ସେଦିନ ପୁଣି ସେହି ସାଇଁ ସାଇଁ ଶବ୍ଦରେ ମୋର ଧ୍ୟାନ ଭଗ୍ନ ହେଲା । ଆଖି ବୁଲାଇ ଦେଖେ ତ ସେ ନିହାତି ଛୋଟ ଶିଶୁ ପରି କାଇଁ କାଇଁ ହୋଇ କାନ୍ଦିବାରେ ଲାଗିଛନ୍ତି । କଣ ହେଲା କଣ ହେଲା ବୋଲି ମୁଁ କିଛି ବୁଝି ପାରୁ ନ ଥାଏ । ସେ ମୋତେ ଦେଖି ଆହୁରି ଜୋରରେ କାନ୍ଦି ଉଠିଲେ । ମୁଁ ମାରିବ ନିଶ୍ଚଳ । ସେ କୋହ ସମ୍ବରଣ ପୂର୍ବକ ମୋତେ କହିଲେ, "କାଲି ଏହାର ସଂସାର ଉଜୁଡ଼ି ଯିବ । ଆଜି ବୋଧେ ରାତି ପାଇବନି । ଘରେ ତ କିଛି ନାହିଁ

କଣ କରବ ? ପଲଟିଅଛା ଏବେ ଆସିଛୁ । ହତ-ଭଗିମା । ପିଲ ଗୁଡ଼ା ମରଯିବେ । ଏମିତି କେତେ କଣ ଅସରନ୍ତ ଗପ କହି ଗ୍ଲଲଥାଆନ୍ତ, ମୋତେ ଜଣା ନାହିଁ । ରିକ୍ସା ଆସି ଦୁଆର ମୁହଁରେ ଲଗିଲ ! । ଠିକ୍ ରାତି ଭିନଟା । ତେଣୁ ଖବର ଆସିଲା ନୃସିଂହ ଆଉ ନାହିଁ । ସେ ନିଜେ ଶବ ସଂସ୍କାର ଓ ଶୁଦ୍ଧି କ୍ରିୟା କରାଇଲେ । ପୁଣି ନିଜେ ଦଉଡ଼ିଲେ ତା ଗାଁକୁ । ଘର ଭଳ ସମସ୍ତ ଭଲ ମନ୍ଦ, ପରିବାର ଥଇଥାନ······ ···ଇତ୍ୟାଦି—ଇତ୍ୟାଦି କରାଇଲେ ।

ଏହି ଦୀର୍ଘ ଦଶବର୍ଷ ମୁଁ ତାଙ୍କ ପାଖେ ରହି ଆସିଛୁ । ଏହି ଦଶବର୍ଷର ଇତିହାସ ମୋ ଜୀବନର ଏକ ପ୍ରତିଫଳକ ନୁହେଁ, ଏ ସଂଘର ଏକ ଅବିଚ୍ଛିନ୍ନ ଅଧ୍ୟାୟ । ସେ କପରି ସଂଘପାଇଁ ପାଗଳ ତାହା କେବଳ ମୁଁ ମୂକସାକ୍ଷୀ ନୁହେଁ, ଯେ ଯେତେବେଳେ ତାଙ୍କ ପାଖକୁ ଆସିଛି, ସେ ଦେଖିଛି । ସେ କପରି ଧବମାନ ଘୋଟକ । ସେ କର୍ମରେ ଲିପ୍ତ ଥିଲା ବେଳେ ବ୍ୟାଘ୍ର ଶିକାରକୁ ଯାବୁଡ଼ି ଧରିଲା ପରି ସେ କପରି କର୍ମକୁ କାମୁଡ଼ି ଧରିଥାନ୍ତି—ତାହା ଦେଖିବାର କଥା, ଶିଖିବାର କଥା । ସତେ ଯେପରି ସଂଘ ତାଙ୍କର ନିଜର ଘର । ଘରକୁ ଉନ୍ନତତର ଅବସ୍ଥାକୁ ଆଣିବାକୁ ହେଲେ ଯେପରି ଲୋକ ଦିନରାତି ଅନ୍ଧ ହୋଇ ଗୃହ ଧନ୍ଦାରେ ଲଗିଥାଆନ୍ତି, ସେ ସେହିପରି ନିଜକୁ ନଷ୍ଟଭ୍ରଷ୍ଟ କରି, ବିପର୍ଯ୍ୟସ୍ତ କରି, ତିଳତିଳ ଧ୍ୱଂସ କରି, କପରି ଶିକ୍ଷକ ସମାଜର ଦୁଃଖ ଦୈନ୍ୟ ଦୂର କରିବେ ସେହିପରି ଦୃଢ଼ ପ୍ରତିଜ୍ଞାରେ ଥାନ୍ତି । ଏହି ସଂଘର ବୋଧିଦ୍ରୁମ ତଳେ ସେ ଯେଉଁ ସମାଜର ପତିତପାବନଙ୍କ ଦୈନ୍ୟ ମୂଳକ ଆଦର୍ଶ ଆହରଣ କରିଛନ୍ତି ତାହା ତାଙ୍କର ଶୀର୍ଘ ପ୍ରଶୀର୍ଘ ଭେଦକରି ସମଗ୍ର ଶିକ୍ଷକ ସମାଜକୁ ଆହ୍ୱାନ ଦେଇଛି । ଶେଷରେ ତାଙ୍କର ଆହ୍ୱାନ ବେଦନାପ୍ଲୁତ ଶିକ୍ଷକ ଜାତିକୁ ପ୍ରତିଧ୍ୱନିତ କରିଛି ।

"ବୁଦ୍ଧଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି ।"

ଶେଷରେ ତାଙ୍କର ସିଦ୍ଧି ସଫଳ ହୋଇଛି । ଓଡ଼ିଶାର ପ୍ରତି କେନ୍ଦ୍ରରୁ ନିର୍ଯ୍ୟାତିତ, ଦଳିତ ଶିକ୍ଷକ-ଗୋଷ୍ଠୀ ଦଳ ଦଳ ହୋଇ ଧାଇଁ ଆସିଛନ୍ତି । ସେ ବାଟ କଢ଼ାଇ ନେଇଛନ୍ତି ଦୁର୍ଦ୍ଦିନର ମୁକାବିଲା ପାଇଁ । ସେ ସାଧନା ଏବେ ବି ଅବ୍ୟାହତ ରହିଛି ।

● ଝାଞ୍ଜିରିମଙ୍ଗଳା
କଟକ-୯



# ହେ ସାଧକ ବ୍ରହ୍ମଚାରୀ !

ଶ୍ରୀ ପ୍ରଭାସ ଚନ୍ଦ୍ର ମଣ୍ଡଳ

ତୁମେ ନରେଖିଲ ଦୀନ ଗୁରୁକୁଳ ନୟନେ ତପତ ଲୁହ,
ତୁମେ ମାପିଥିଲ ଅନ୍ତରେ ତାର ବେଦନା-ବିଧୁର କୋହ,
ତୁମେ ଶୁଣାଇଛ ଶ୍ରବଣେ ତାହାର ମୁକ୍ତି-ମନ୍ତ୍ରର ବାଣୀ,
ପ୍ରତିଟି ପରାଣେ ଜଗାଇଛ ତୁମେ ସତେ ଶତ ଚେତାବନୀ,
ଆହେ ବୀର ଧନଞ୍ଜୟ,
ହତାଶ ପରାଣେ ଦେଇଅଛ ଆଶା, ଦେଇଅଛ ବରାଭୟ ।
ବ୍ରହ୍ମଚର୍ଯ୍ୟର କଠୋର ଦୀକ୍ଷା ଦୀପ୍ତ ଶପଥ ପୁଣି,
ତୁମେ ଘେନଥିଲ ମନରେ ସେଦିନ କେତେ କଥା ମନେ ଗୁଣି,
ଯଉବନ-ବନ ଜଉବନପରି ତଳେ ତଳେ ଦେଇ ଜାଳି,
ଜନସେବା ପାଇଁ ଶପଥ ସେଦିନ ଘେନଥିଲ ବନମାଳୀ,
ହେ ସାଧକ ବ୍ରହ୍ମଚାରୀ,
ଗଗନ ପବନ ଚଉଦିଗେ ଆଜ ଶୁଭେ ତବ ଜୟ ଭେରୀ ।
ଆଜ ବି ପଚିଶ ବରଷ ବୃଦ୍ଧ ମନରେ କାମନା-ବହ୍ନି,
ତରୁଣୀ-ପୀରତି-ବରଣ ପାଇଁ ତ ପୁଲକ ଉଠଇ ଗ୍ରନ୍ଥି,
ଶଙ୍ଖ ମହୁରୀ ବଜାଇ ଷୋଡ଼ଶୀ କୋଳେ ନିଏ ସତେ ତୋଳି,
ପଚିଶ ବରଷେ ତୁମେ କେଉଁପରି ମଦନକୁ ଦେଲ ଜାଳି ?
ଭାବି ପାରୁ ନାହିଁ ମୁହିଁ
ଅତୁଳ କୀରତି ରଚିଗଲ ସିନା ରକତ ମାଉଁସ ବହି ।
ତୁମେ ତ ସାଧକ ତୁମେ ତ ଲେଖକ ପଣ୍ଡିତ ସିନା ତୁମେ,
ଶିକ୍ଷକ କୁଳ ସ୍ୱାର୍ଥସାଧନେ ସେନାପତି ରଣ ଭୂମେ
ତୁମ ପାଞ୍ଚଜନ୍ୟ ଶବଦ ଶୁଭଇ ଚଉଦିଗେ ଘନ ଘନ
ତୁମ ନନ୍ଦଘୋଷ ଶିକ୍ଷକ ସଙ୍ଘ ସଦନେ ବିଜୟ ଚିହ୍ନ
ଆହେ ବୀର ବନମାଳୀ,
ଅଭିନନ୍ଦନ ପାଇଁ ତୁମ ଆଜ ଜଳେ ଶତ ଦୀପାବଳୀ ।

ଦୁଃସ୍ଥ ଶିକ୍ଷକ ବକ୍ଷ ବିଦାରି ଉଠିଲେ କାତର ଧ୍ୱନି,
ସାନ୍ତ୍ୱନା ଦେଇ ଲାଘବିବା ପାଇଁ ତା ବୁକୁ ବେଦନା ବହ୍ନି,
ଭୀମ ସମ ତବ କଣ୍ଠରୁ ଫିଟେ ସିଂହନାଦର ନିଆଁ,
ଶିକ୍ଷା ବିଭାଗ କର୍ମଗୃହିର ଚମକେ ଉଠଇ ହିଆ ।
ଦୁର୍ନୀତି-ଜାଲେ ସେଚ୍ଛେଚ୍ଛେରୀ ବା କେଉଁ ବିଦ୍ୟାଳୟେ ବସି,
ଅର୍ଥାଗମର ସପନ ଦେଖଇ ମନେ ମନେ ହୋଇ ଖୁସି,
ବାଜଲେ ତୁମର ବାଣ,
ବାସନା ତାହାର ହୋଇଯାଏ ଚୂନା, ସବୁ ବୁଦ୍ଧି ଅକାରଣ ।
ଶିକ୍ଷକ ଦୁଃଖ ମୋଚନ ପାଇଁ ତ ଭୁଲିଯାଅ ଭୋକ ଶୋଷ,
ସକଳ ଯାତନା ସହିପାର ମୁଖେ ଫୁଟାଇବା ପାଇଁ ହସ,
ନୟନରେ ତୁମ ଭାସିଯାଏ ଛବି କେଉଁ ପଲ୍ଲୀର କୋଣେ,
ଢାଳୁଥିବ ଧାରି ନୟନ କୋଣରୁ ଅଭାଗିନୀ ବାଳା ଜଣେ,
ଯଉବନ-ଧନ ଘୋଡ଼ାଇବା ପାଇଁ ନ ଥିବ ଖଣ୍ଡିଏ ବାସ,
ବରଷା ଝଡ଼ରେ ହାଡ଼ଥରା ଜାଡ଼େ ନ ଥିବ ତାହାର ବାସ,
ଅନ୍ନ ବିହୁନେ ହଂସ କ ସତେ ହେଉଥିବ ତାର ହାନି,
ରୋଗପାଇଁ ପଥ୍ୟ ଅଉଷଧ କେବେ ପାଉଥିବ ନାହିଁ କିଣି,
ଏହିପରି ଗୁରୁ ଦଶା
ତୁଟିବ ନାହିଁ କି କଷଣ ତାହାର ପୂରିବ ନାହିଁକି ଆଶା ?
ଆନ୍ଦୋଳନର ଯଜ୍ଞ ବେଦୀରେ ସେଦିନ ହେ ବନମାଳୀ,
ସାଜିଲ ପୁରୋଧା ପଢ଼ିଲ ମନ୍ତ୍ର ଘୃତର ଆହୁତି ଢାଳି,
କୃଷ୍ଣ ଅଙ୍ଗାର ଜୀବନ ଲଭିଲା ରକ୍ତିମ ଆଭା ପାଇ,
ଜାଳି ଦେଇଥିଲ ସହସ୍ର ପ୍ରଦୀପ ଗୋଟିଏ ପ୍ରଦୀପ ହୋଇ,
ଜଳାଇଲ ନିଆଁ 'ଅବନୀ' ବୁକୁରେ 'ବିବେକାନନ୍ଦ'ର ମନେ,
ସଞ୍ଚରିଗଲା ସେ ନିଆଁ ସତେ କି ପଲକେ ଉତ୍କଳ ଭୂମେ
ଝାସ ଦେଲେ ଯୁବାଦଳ,
ଶତ ଶିକ୍ଷକ ବକ୍ଷେ ଅତଳ ହୋଇଗଲା ଉଚ୍ଛୁଳ ।
ରାଜଧାନୀ ବୁକେ ସଚିବାଳୟରେ ଶିକ୍ଷକ ଆନ୍ଦୋଳନ,
ବିକ୍ଷୋଭ ଆଉ ଧାରଣା ପାଇଁ କି ଅର୍ଥର ଆୟୋଜନ,
କରୁଥିଲ ତୁମେ ସଙ୍କୋଚ ଏଡ଼ି ମନରେ ସାହସ ଧରି,
ତଥାପି ସବୁବା କେତେବେଳେ ତୁମ ହାତ ହୋଇଯାଏ ଖାଲି,
ଝିଅ ସୁନା ଅଳଙ୍କାର
ବନ୍ଧକ ଦେଇ ଚଳାଇଛ କାମ ଦେଖିଛି ନୟନ ମୋର ।
ହେ ମହାସାରଥି ବନମାଳୀ ତୁମେ ସତେକି ଚକ୍ରଧାରୀ
ଚଳାଇଲ ରଥ ବିଜୟର ପଥେ କେତେ କଉଶଳ କରି,

ଶତ ଅନ୍ୟାୟ ଦୁର୍ଯୋଧନର ଦୁଃଶାସନର ଝଣ୍ଡ
ଧ୍ୱଂସ କରିବା ପାଇଁ ସମାଜରୁ ହୋଇଥିଲ ଯିନା କୃଷ୍ଣ
ହେ ବୀର ନାୟକ ବନ,
ମନକଥା ତୁମ ନୁହେଁ ସାଧାରଣ ସେ ତ ବିଧାତାର ଦାନ ।

ନିଜ ପାଇଁ ନୁହେଁ ପରପାଇଁ ଖାଲି ସେଥିରେ ତୁମର ହସ
ସେଇ ତ ତୁମର ଅଳଙ୍କାର ସେଇ ତୁମ ପଉରୁଷ
ଏତେଦିନ ପରେ 'ଜାତି-ପ୍ରେମ-ବହ୍ନି' ତୁମକୁ ପାଇଲା ଯିନା,
ଏ ଜାତି ବଞ୍ଚିଛି ଉଡ଼ାଇବା ପାଇଁ ତୁମର ବିଜୟବାନା ।
ବାର୍ଦ୍ଧକ୍ୟ ଯିନା ଛୁଇଁଛି ତୁମକୁ କରି ପାରିନାହିଁ କାବୁ,
ସତୁରିରୁ ଊଣା ଏକ ବୟସେ ବି ତୁମେ କରୁଅଛ ସବୁ
ଏବେ ବି ଅଳସ ଛୁଇଁ ନାହିଁ ଦେହେ ଜୀବନର ଅପରାହ୍ନେ,
ଚାରିଗୁଣ ଯୁବା ବୟସର କାମ କରୁଅଛ ଏକା ତୁମେ,
ବିଭୁପାଶେ କରେ ଅଳି
ଶତାୟୁ କାମନା କରଇ ତୁମର ଆହେ ତାତ ବନମାଳୀ ।

● ଝାନଡ଼ା
ମୟୂରଭଞ୍ଜ



# ସାରଥିର ସ୍ମୃତି

ଶ୍ରୀ ରାଜକିଶୋର ପାଢ଼ୀ

ଅନ୍ଧାର ଚିର
ଦୁର୍ଗମ ପଥ ଡେଇଁ
ତମେ ଯେ ଧାଇଁଛ
ସକାଳ-ସ୍ୱପ୍ନ ପାଇଁ ।
ହାତରେ ପ୍ରଦୀପ ଧରି
ବୁକୁରେ ବେଦନା ଭରି
ବଜାଇ ଶଙ୍ଖ ଭେରୀ
ଡାକିଛ ଆମକୁ,
'ଆସରେ ସମରଭୂଇଁ
ଉଆଁସ ରାତିର ଆଶୁ ଅବସାନ ପାଇଁ ।'
ଚଳାଇଛ ରଥ
ସାରଥି ସମାନ
ଦେଖାଇଛ ପଥ
ଡେଇଁ ଅସମାନ

ଆଖିରୁ ଢାଳିଛ ସହାନୁଭୂତିର ଲୁହ
ଆଶା ଭରସାର ପ୍ରତୀକ ସେ ଏକ ମୁହଁ,
ଗତିରେ ଲକ୍ଷ୍ୟ ସାଧନ ନିମିତ୍ତ ପଣ
ମତିରେ କେବଳ ଶାନ୍ତି, ହେଲେ ବି ରଣ ।
ହାତର ଲେଖନୀ ନିର୍ଭୟ ବିଭୟ
ଜୀବନେ ଗୃହିଁଛି ପ୍ରଭାତ, ଆଲୋକମୟ,
ଆଜି ତୁମ ପାଇଁ ଏ ମୋର କବିତା ଲେଖା
ଦୃଷ୍ଟିର ସ୍ଥିର ଦର୍ପଣ ମୁହଁ ଦେଖା ।
ଆଜି ବି ଆସୁଛି ରଣଭୂମେ ଅବସାଦ
ତେଣୁ ମନେ ପଡ଼ି
ତୁମେ ହେ ସାରଥି.
ଦୂର କର ମନୁ ସକଳ ବିଷାଦ ବାଦ ।

● ପୂର୍ବାଞ୍ଚଳ ଭାଷାକେନ୍ଦ୍ର
ଭୁବନେଶ୍ୱର



# ମାତ୍ର ତିନି ଘଣ୍ଟିକାର ପରିଚୟ

ଶ୍ରୀ ରାଧାମାଧବ ଗିରି

ସ୍ୱଳ୍ପ ବିଦ୍ୟା, ଅପରିଣତ ବୟସ ଓ ସୀମିତ ଦୃଷ୍ଟି ନେଇ ଲେଖାଲେଖି କରୁଥାଏଁ । ଜୁଳୁଜୁଳିଆ ପୋକର ବିଷ ବା ଦୀପ୍ତି—ତଥାପି ସିଏବି ଦପ୍ ଦପ୍ କରେ । ଗୋଟିଏ ଗଳ୍ପ । 'ଘୁନାମୁଣ୍ଡା' ଓ ଗୋଟିଏ ପ୍ରବନ୍ଧ 'କଉଡ଼ି ବନାମ ଭାରତୀୟ ମୁଦ୍ରା' ଲେଖି କରି ଉତ୍କଳ ସାହିତ୍ୟର ପ୍ରବୀଣ ସମ୍ପାଦକ ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ଠାକୁ ପଠାଇଲି । ଲେଖା ଦୁଇଟା ଅଳିଆ ଗଦାରେ ପଡ଼ି ସାଁ' ହେଇଥିବ । କୌତୂହଳ ବଶତଃ ବଙ୍ଗଳାରେ ଗୋଟିଏ ପ୍ରବନ୍ଧ ଲେଖି 'ବଙ୍ଗବାସୀ' ସମ୍ପାଦକ ସ୍ୱର୍ଗତ ବରଦା ପ୍ରସାଦ ବସୁଙ୍କ ପାଖକୁ ପଠାଇଦେଲି । ଅବିଳମ୍ବେ ତାହା ବଙ୍ଗବାସୀରେ ବାହାରିଲା । ବାବା ପତ୍ରିକା ପଢ଼ି ଖୁସି ହେଲେ—ଦୁଃଖିତ ହେଲେ ବି । କହିଲେ, "ବାବା ! ବଙ୍ଗଳା କାଗଜରେ ଲେଖି ଆମର କି ଲାଭ ହେବ ?"

ବ୍ରହ୍ମପୁରିଙ୍କ ଜୟନ୍ତୀ ସହିତ ଏ ପ୍ରକାର ଲେଖାର କି ସମ୍ପର୍କ ? ନିଜର ଅଧମରି ମନକୁ ଟିକିଏ ହେଲେ ତେଜ ଦେଇ ହେବ ତ !

ପଦ୍ୟ ହିଁ ହେଉଛି ରଚନାର ପ୍ରାଥମିକ ଅବସ୍ଥା । ଆଦିକାବ୍ୟ ରାମାୟଣ ବା ତତ୍ ପରବର୍ତ୍ତୀ ବଡ଼ ବଡ଼ କାବ୍ୟ, ମହାକାବ୍ୟ ବା ପୁରାଣାଦି ପଦ୍ୟରେ ହିଁ ଲିଖିତ । ବିଶେଷତଃ ଓଡ଼ିଆଭାଷା ପଦ୍ୟ ସମ୍ଭାରରେ ପରିପୁଷ୍ଟ । ପଦ୍ୟରେ ହିଁ ଗୁଡ଼ାଏ ଲେଖିଲି—ନାମଜାଦା କବିମାନେ ପ୍ରଥମରେ ପଦ୍ୟ ରଚନାରେ ଯେମିତି ବ୍ରତୀ ହୋଇଥାନ୍ତି । ଏଗାରଟି ସର୍ଗ ବିଶିଷ୍ଟ 'ଲଙ୍କେଶ୍ୱର' କାବ୍ୟ ଲେଖିଲି । ପିତୃଦେବ ସମଗ୍ର କାବ୍ୟଟି 'ମୁକୁର' ପତ୍ରିକାର ସମ୍ପାଦକ ବ୍ରଜସୁନ୍ଦର ଦାଶଙ୍କ ପାଖକୁ ପଠାଇ ଦେଲେ । ଦୀର୍ଘ ଦିନ ଧରି ତାହା 'ମୁକୁର'ରେ ପ୍ରକାଶ ପାଇଲା । ସେଇଠୁ ଲେଖିବା ପାଇଁ ଆଗ୍ରହ ବଢ଼ିଲା । ମାତ୍ର ତୃପ୍ତି ଆସିଲା ନାହିଁ । 'ଉତ୍କଳ ପ୍ରଦୀପ' ନାମ ଦେଇ ଖଣ୍ଡିଏ ସାପ୍ତାହିକ ସାହିତ୍ୟ ପତ୍ର ବାଲେଶ୍ୱରରୁ ପ୍ରକାଶ କଲି । ମାସିକ ବା ତ୍ରୈମାସିକ କରିଥିଲେ ହୁଏତ କିଛିଦିନ ତିଷ୍ଠି ପାରିଥାନ୍ତା । 'ପ୍ରଦୀପ' ଗ୍ରୀଷ୍ମମାସ ଜଳିଲା ପରେ ସପ୍ତାହ ବ୍ୟାପୀ ଝଡ଼ ତୋଫାନ ଦ୍ୱାରା ଲିଭିଗଲା; ତତ୍ସଙ୍ଗେ ହଜାରେ କପି ମୁଦ୍ରିତ 'ଲଙ୍କେଶ୍ୱର' ମଧ୍ୟ ପ୍ରେସ ମଧ୍ୟରେ ଉଇ ହୁଙ୍କାରେ ପରିଣତ ହୋଇଗଲା ।

ହାଣ୍ଡିଏ ଭାତରୁ ଗୋଟିଏ ଚିପି ପାରିଲେ ତ ! ମୋ ଜନ୍ମ ଉତ୍ତର-ବାଲେଶ୍ୱରର ଗୋଟିଏ ଅଜ୍ଞାତ ପଲ୍ଲୀ-କୋଣରେ । ମୋ ଭଳି ବହୁ ସାହିତ୍ୟସେବୀଙ୍କ ଅବସ୍ଥା ଠିକ୍ ଏଇଆ । ସମଗ୍ର ଓଡ଼ିଶାରେ ଆଖି ପକାଇଲେ ଏଇଭଳି ହତଭାଗ୍ୟ ସାହିତ୍ୟସେବୀ ବହୁତ ପାଇବେ । ଏତକ ଆତ୍ମ ପ୍ରଶସ୍ତିର ଢେଙ୍ଗୁରା ବୋଲି ଭାବିବେ ନାହିଁ ।

ଆମେ ଶିକ୍ଷକ ଅର୍ଥରେ ବୁଝିଥାଉଁ, ସାଧାରଣ ଶିକ୍ଷିତ ଲୋକ ଯେଉଁମାନେ ଉଚ୍ଚ ସ୍ତରରେ ଅଛନ୍ତି—ସେ ତାଲିମ ପାଇଥାନ୍ତୁ ବା ଅଣତାଲିମ ଥାଆନ୍ତୁ, ସେମାନଙ୍କର ପାକଳ ଜ୍ଞାନ ସେମାନଙ୍କଠିଁ ଆବଦ୍ଧ

ରହିଲା ପଲ୍ୱଳର ଜଳ ଭଳି । ପ୍ରତିଭାର ସୁରଭି କୁସୁମ ବିକଶିତ ହେବ କିପରି ? ପାରିବାରିକ ଅନାଟନ, ବିବିଧ ଜଞ୍ଜାଳ, ବିକାରଗ୍ରସ୍ତ ମନକୁ ନେଇ ଜୀବନ ସଂଗ୍ରାମରେ ତାଳ ପକାଇ ଆଗକୁ ମାଡ଼ିଯିବେ କିପରି ? 'ଶତ୍ରୁ ହିତୈଷେ ଗୀତ ବାହାରେ ।' ଶତ୍ରୁ ତ କ୍ଷତ ବିକ୍ଷତ, ମିତ୍ର ବି ବଂଶ ବୃଦ୍ଧି ସଙ୍ଗେ ସଙ୍ଗେ କ୍ଷୀୟମାଣ ।

ବେଳ ଦଶଟା । ନିରାଟ ଖରାରେ ସନ୍ତୁଳି ସନ୍ତୁଳି ଜଣେ ମଣିଷ ସାଙ୍ଗରେ ( ନିରାଡ଼ମ୍ବର—ଅଧାମଇଳିଆ ଧୋତି ଆଉ ସେଇମିତି ପଞ୍ଜାବୀ ପରିହିତ—ହସିଲାବ-ଗମ୍ଭୀର ପୁରୁଷଟିଏ ?) ଭେଟିଲି । ବଡ଼ ଝିଅଟି ତାଙ୍କୁ ନେଇ ମୋ କୁଡ଼ିଆରେ ବସାଇଲା । ପରିଚୟରୁ ଜାଣିଲି, ଏଇ ହେଉଛନ୍ତି ଆମର ବ୍ରହ୍ମଚାରୀ—ବନମାଳୀ ବାବୁ । ମୋ' ଟେବୁଲ ଉପରେ ବୁଣି ପଡ଼ିଥିବା ଗୁଡ଼ାଏ ଖାତାପତ୍ର ଲେଉଟାଉ ଥା'ନ୍ତି । ମୁଁ ଯାଇ ଦେଖିଲି ଯେ, ମୋ' ଅମୃତରେଣୁ ଖଣ୍ଡିକ ହାତରେ ଧରିଥାନ୍ତି । ମୋର ଅନ୍ୟାନ୍ୟ ଲେଖା ଦେଖିବାକୁ ବେଳ ପାଇ ନାହାନ୍ତି । ମୁଁ ବି ଅନୁରୋଧ କରିନାହିଁ । ଯିବାବେଳେ ଗୋଟି-କେତେ ପ୍ରବନ୍ଧ ଲେଖାଥିବା ମୋର ଖଣ୍ଡିଏ ଖାତା ଧରି ଚାଲିଗଲେ । ଆଳାପମେଳାପର ଇତି ଏତିକରେ ।

ସେଇଠୁ ଶିକ୍ଷକ ଦର୍ପଣରେ ଗୋଟିଏ ଗୋଟିଏ ଲେଖା ବାହାରିଲା । ଫଳରେ ପ୍ରେରଣାର ତାଡ଼ିତ ପ୍ରବାହ ବୁଢ଼ା ଧମନୀରେ ସଞ୍ଚରିଗଲା ସତ; ମନ ବଳୁଥାଏ ଆଉ କିଛି ଲେଖନ୍ତି ପରା । କିନ୍ତୁ, ମାନସିକ ଓ ଶାରୀରିକ ଅବସାଦ, ବୟସର ଆଧିକ୍ୟ, ଭୁଣ୍ଡର ଜଡ଼ତା ଓ ମୁଣ୍ଡର ଶୂନ୍ୟତା ସବୁ ମିଶି ଏକାକାର ।

ଯା' ହେଉ, ଗୋଟିଏ ଅଧେ ଲେଖା ବାହାରିଲୁ ବାହାରିଲା ତ ? ପାଞ୍ଚ ହଜାର ମାଇନର ସ୍କୁଲର ବହୁସଂଖ୍ୟକ ଶିକ୍ଷକ ପତ୍ରିକାର ଅନ୍ୟାନ୍ୟ ଲେଖା ମଧ୍ୟରେ ଏ କେତୋଟି ଅବଶ୍ୟ ପଢ଼ିଥିବେ । ତା'ହେଲେ ବ୍ରହ୍ମଚାରୀଙ୍କ ସାକ୍ଷାତ୍କାର ନିଷ୍ଫଳ ହୋଇନ ମାନିବି ।

ସବୁବେଳେ ନିଜ କଥା ବାଡ଼ୁଛି । ମୁଁ ମନେକରେ ବ୍ରହ୍ମଚାରୀଙ୍କ ପରିଚାଳିତ ଏହି ପତ୍ରିକା ଆମର—ପ୍ରାକୃତିକ ଓଡ଼ିଶାର ଏହାର ପ୍ରତ୍ୟେକ ପାଠକ ଏହାହିଁ ଭାବୁଥିବେ ନିଶ୍ଚୟ ।

ଧନ ଅଛି ଯେଉଁମାନଙ୍କର ଭଣ୍ଡାରରେ, ସେମାନେ ଚାହାନ୍ତି ସବୁଦା ସେମାନଙ୍କର ଭଣ୍ଡାର ଉଛୁଳୁଥିବ । କେବେହେଲେ ଯେପରି ଊଣା ନ ହୁଏ । ଆମ ରାଜ୍ୟର ଶିକ୍ଷକମାନେ ଯାହା ପାଆନ୍ତି, ସେତିକ ତେଲ ଲୁଣକୁ ନିଅଣ୍ଟ । ମୁଁ ଜାଣେ, ବହୁ ଶିକ୍ଷକ ଯୌବନ ଜୀବନରେ ଯା' ହେଉ କିଛି ରଚନାର ଅଭ୍ୟାସ କରିଥାନ୍ତି । ମାତ୍ର ଅଭାବ ଅନାଟନରେ ପଡ଼ି ସେଗୁଡ଼ିକ ପ୍ରେସକୁ ଦେବାର ସାମର୍ଥ୍ୟ ନ ଥାଏ ।

ଖଣ୍ଡିଏ ଦୁଇଖଣ୍ଡି ପତ୍ରପତ୍ରିକା ଚଳାଇବା, ଗୋଟିଏ ପ୍ରେସ୍ ସ୍ଥାପନ କରିବା, ନିଜ ଅଞ୍ଚଳର ପ୍ରାଚୀନ ଓ ଅର୍ବାଚୀନ ମାନଙ୍କ ସୃଷ୍ଟି ରଚନାବଳୀର ମୁଦ୍ରଣ, ପ୍ରକାଶନ ଓ ପ୍ରଚାର ଦିଗରେ ଚେଷ୍ଟିତ ହେବା ବାଞ୍ଛନୀୟ ନୁହେଁ କି ? ଏ କଥାଟା ବିଶେଷ କରି ଉତ୍ତର-ବାଲେଶ୍ୱର ପ୍ରତି ପ୍ରଯୁଜ୍ୟ ।

ଶିକ୍ଷକ ଦର୍ପଣର ପ୍ରଚ୍ଛଦପଟରେ ଆଖି ପଡ଼ିବା ମାତ୍ରେ ପଢ଼ିବାକୁ ପାଉଁ, ବିଭିନ୍ନ ଜିଲ୍ଲାରୁ ତିନି ଜଣ କର୍ମ କୁଶଳ ସମ୍ପାଦକ ସହ-ସମ୍ପାଦକ ଅଛନ୍ତି । ସେମାନେ ପ୍ରବୀଣ ଶିକ୍ଷକ । ପତ୍ରିକା ପରିଚାଳନାରେ ସେମାନେ ସକ୍ରିୟ ଅଂଶ ଗ୍ରହଣ କରି ଅଛନ୍ତି । ପ୍ରତିଷ୍ଠିତ କବି ଓ ଲେଖକମାନଙ୍କ ଲାଗି ସୁପରିଚାଳିତ ଉଚ୍ଚାଙ୍ଗ ଢେର ପତ୍ରିକାର ଦ୍ୱାର ଉନ୍ମୁକ୍ତ ରହିଛି । ଅର୍ବାଚୀନ ଲେଖକ ମାନଙ୍କୁ ସ୍ଥାନ ଯୋଗାଇବା ବାସ୍ତବିକ ସହଜ ନୁହେଁ ।

ପଚାଶ ବର୍ଷରୁ ବ୍ରହ୍ମଚାରୀ ବିପତ୍ନୀକ । ସନ୍ତାନ ସନ୍ତତିଙ୍କ ଖବର ଆମ ମାନଙ୍କୁ ଅଜ୍ଞାତ । ମାତ୍ର ତାଙ୍କର ସ୍ନେହାସ୍ପଦ ଶିକ୍ଷକମାନେ ହିଁ ତାଙ୍କର ପୁତ୍ର ସ୍ଥାନୀୟ—ବିରାଟ ପରିବାର । ଏଣୁ ଆମର ଆଶା, ସେ ଦୀର୍ଘ କର୍ମମୟ ଜୀବନ ଯାପନ କରି ଅଗଣିତ ନୂଆ ସାହିତ୍ୟ ସାଧକ ସୃଷ୍ଟି କରନ୍ତୁ । ସେ ନାମତଃ ବ୍ରହ୍ମଚାରୀ ନୁହନ୍ତି —କାର୍ଯ୍ୟତଃ ବ୍ରହ୍ମଚାରୀ । ବାସ୍ତବିକ ବ୍ରହ୍ମଚର୍ଯ୍ୟ ନଥିଲେ ଏକାଧାରରେ ନିର୍ଭୀକ, ନିରପେକ୍ଷ, ନିରଳସ, ଅତ୍ୟାଚାରିତ ଶିକ୍ଷକମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ବିଭାଗୀୟ କର୍ମକର୍ତ୍ତାମାନଙ୍କ ସହିତ ଲଢ଼ା ଭିଡ଼ା କରିବା, ତହିଁର ପ୍ରତିକାର ପାଇଁ ପ୍ରସ୍ତୁତ ରହିବା, ଅନ୍ୟ ପକ୍ଷରେ

ଯାହା ଏକାନ୍ତ ଅସମ୍ଭବ—ସେଇଥିରେ କୃତକାର୍ଯ୍ୟ ହେବା ଏହା ଅସାଧାରଣ ବ୍ୟକ୍ତିତ୍ୱର ପରିଚାୟକ । ମଣିଷ-ପଣିଆର ଏହାଠାରୁ ଉତ୍ତମ ପରିଚୟ ଆଉ କଣ ଅଛି ?

ବ୍ରହ୍ମଗୁରୁ ନିଜେ ସୁଲେଖକ । ତାଙ୍କର ଏକାଧିକ ରଚନା ପଢ଼ି ପ୍ରଚୁର ଆନନ୍ଦ ପାଇଛି । ଗୋଟିଏ ଦୁଇଟି ରଚନା ପାଇଁ ସେ ରାଷ୍ଟ୍ରପତି ପୁରସ୍କାର ମଧ୍ୟ ପାଇଛନ୍ତି । କ୍ଷେତ୍ର ବିଶେଷରେ—ଯେଉଁମାନଙ୍କୁ ସେ କଟୁ ସମାଲୋଚନା କରି ଅଛନ୍ତି, ସେଇମାନେ ହିଁ ତାଙ୍କର ସଦ୍‌ଗୁଣାବଳୀରେ ମୁଗ୍‌ଧ । ଲବ୍‌ଧ ପ୍ରତିଷ୍ଠ ଲେଖକମାନେ ଲେଖିଚନ୍ତି—ଲେଖିବେ । ଲେଖକ ସୃଷ୍ଟି କରିବା ଦିଗରେ ଏଭଳି ସର୍ବଜନ ପାଠ୍ୟ ଉପାଦେୟ ପତ୍ରିକାର ବିଶେଷ ପ୍ରୟୋଜନୀୟତା ଅଛି, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ତାଙ୍କ ଭଳି ଜଣେ ଅଭିଜ୍ଞ ଶିକ୍ଷକ, ପରିଣତ ବୟସରେ ଯେଉଁ ବଳିଷ୍ଠ ଚିନ୍ତାଧାରା ନେଇ ପତ୍ରିକା ସମ୍ପାଦନାରେ ଆତ୍ମ ନିୟୋଗ କରି ଅଛନ୍ତି, ତାହା ଭବିଷ୍ୟତରେ ଅଧିକ ସୁଫଳପ୍ରଦ ହେବ ଏବଂ ତଦ୍ଧେତୁ ସେ ଚିରସ୍ମରଣୀୟ ରହିବେ ।

ନିଜ ନିଜ ଅଞ୍ଚଳର ଖବର ନେବାକୁ କାହାର ବା ଆଗ୍ରହ ନାହିଁ ? ଆଞ୍ଚଳିକ ମମତାରୁ କେହି ବଞ୍ଚିତ ନୁହନ୍ତି । ଶିକ୍ଷକ ଦର୍ପଣ ହାତରେ ପଡ଼ିଲେ ଆଖି ବୁଲାଇ ନିଏ, ଆମ ଅଞ୍ଚଳର କିଏ କିଏ ଲେଖା ଦିଅନ୍ତି । ଧୈର୍ଯ୍ୟ ନୀରବତା ପରେ କାହାର କାହାର ସାଧନା ପଥରେ ପଦକ୍ଷେପ ନେବା ବଡ଼ ଆଶାପ୍ରଦ । କେତେ ଶିକ୍ଷିତ (ଶିକ୍ଷକ ମଧ୍ୟ ) ବ୍ୟକ୍ତିଙ୍କର ସୁନ୍ଦର ସୁନ୍ଦର ଲେଖା ପଢ଼ି ଆତ୍ମବିସ୍ମୃତ ହୋଇଛି, ମାତ୍ର ସେମାନଙ୍କ ଲେଖା ବାହାରକୁ ବାହାରେ ନି । ପେଡ଼ି ପେଟରାରେ ଥୁଆ ହୋଇଛି । ସେମାନଙ୍କୁ ମୋର ନିବେଦନ, ସେମାନେ ଏଣିକି ଶିକ୍ଷକ ଦର୍ପଣ ମାଧ୍ୟମରେ ତାଙ୍କ ରଚନା ସାହିତ୍ୟପ୍ରେମୀ ମାନଙ୍କୁ ପରିବେଷଣ କରନ୍ତୁ ।

ଖଣ୍ଡିଏ ପ୍ରଥମ ଶ୍ରେଣୀର ମାସିକ ସାହିତ୍ୟରେ ଯେଉଁ ଯେଉଁ ବିଷୟମାନ ରହିବା ଉଚିତ, ସମ୍ପାଦକ ମଣ୍ଡଳି ତତ୍‌ପ୍ରତି ଲକ୍ଷ୍ୟ ରଖି ଲେଖାଗୁଡ଼ିକ ନିର୍ବାଚନ କରୁଥିବା ଆନନ୍ଦର କଥା । ପ୍ରବନ୍ଧ, ଗଳ୍ପ (ଉପନ୍ୟାସ ମଧ୍ୟ ), ନାନା କବିତା, ଜୀବନୀ, ବିଦେଶୀ ଗଳ୍ପର ଅନୁବାଦ ପତ୍ରିକାସ୍ଥ କରିବା ଫଳରେ ପତ୍ରିକାଟି ଯୁଗୋପଯୋଗୀ ହୋଇ ପାରିଛି । ଏଭଳି ପତ୍ରିକାର ଅଭାବ ଥିଲା । ଶିକ୍ଷକ ଦର୍ପଣ ଦ୍ୱାରା ସେତିକ ପୂରଣ ହେଉଚି ।

ସମ୍ମାନନୀୟ ବ୍ରହ୍ମଗୁରୁଙ୍କ ଶୁଭ ଜୟନ୍ତୀ ବାସରରେ ମୋର ଶୁଭେଚ୍ଛା ଓ ଆନ୍ତରିକ ଶ୍ରଦ୍ଧାଭିବାଦନ ଜଣାଉଛି । ଈଶ୍ୱର ତାଙ୍କୁ ଦୀର୍ଘଜୀବୀ କରନ୍ତୁ ।

● ସୁନାରୁଇ
ବାଲେଶ୍ୱର



# ଶ୍ରୀ ବନମାଳୀ ବ୍ରହ୍ମଚାରୀଙ୍କ ବିଷୟରେ ପଦେ

**ଶ୍ରୀ ଇନ୍ଦ୍ରମଣି ମିଶ୍ର**

ଶ୍ରୀ ବନମାଳୀ ବ୍ରହ୍ମଚାରୀ ଓରଫ ପଣ୍ଡା ମୋର ବାଲ୍ୟ ସାଥି ଥିଲେ । ଦୋହଲୀ ଉ: ପ୍ରା: ସ୍କୁଲରେ ୪ର୍ଥ ଓ ୫ମ ଶ୍ରେଣୀରେ ସେ ମୋ ସହିତ ପ୍ରାଇମେରୀ ଶିକ୍ଷା ଲାଭ କରିଥିଲେ । ଏହା ପ୍ରାୟ ୧୯୧୮ ଓ ୧୯୧୯ ମସିହାର କଥା । ସେତେବେଳେ ଏହି ସ୍କୁଲର ପ୍ରଧାନ ଶିକ୍ଷକ ୰ ଚକ୍ରଧର ଦାଶ ଆମ୍ଭମାନଙ୍କର ଶିକ୍ଷାଦାତା ଥାନ୍ତି । ଏହି ପ୍ରାଇମେରୀ ଶିକ୍ଷା ଶେଷ ହେଲା ଉତ୍ତାରେ ସେ ପଟ୍ଟାମୁଣ୍ଡାଇ ମି. ଇ. ସ୍କୁଲରେ ମାଇନର ପଢ଼ିବା ନିମନ୍ତେ ସେଠାକୁ ଗମନ କଲେ । ସେତେବେଳେ ଶ୍ରୀ ବୃନ୍ଦାବନ ରଥ ପଟ୍ଟାମୁଣ୍ଡାଇ ଟ୍ରେନିଂ ସ୍କୁଲର ହେଡ଼ପଣ୍ଡିତ ଥାନ୍ତି । ଏ ମହାଶୟ ବନମାଳୀର ମାତୁଳ ଅଟନ୍ତି । ତାଙ୍କର ସହାୟତାରେ ବନମାଳୀ ମାଇନର ପାଶ୍ କରି କଟକର ନର୍ମାଲ୍ ଟ୍ରେନିଂ ବା ଭର୍ଣ୍ଣାକୁଲର ମାଷ୍ଟର ଟ୍ରେନିଂ ସ୍କୁଲରେ ଅଧ୍ୟୟନ କଲେ । ସେଠାରୁ କୃତୀ ଛାତ୍ର ହିସାବରେ ଉତ୍ତୀର୍ଣ୍ଣ ହେଲା ପରେ ରାଇସୁଙ୍ଗଡ଼ା ନିକଟସ୍ଥ କାନପୁର ମେଟ୍‌କାଫ୍ ମି. ଇ. ସ୍କୁଲରେ ପ୍ରଥମେ ଶିକ୍ଷକତା କାର୍ଯ୍ୟରେ ନିଯୁକ୍ତି ପାଇଲେ । ଏହି ସ୍କୁଲରେ ହେଡ଼ମାଷ୍ଟର ଭାବରେ ଗୃହୋଳସ୍ଥ ଖରବାସାହି ପଡ଼ାର ଅକ୍ଷୟ କୁମାର ଚକ୍ରବର୍ତ୍ତୀ ନିଯୁକ୍ତି ପାଇଥାନ୍ତି । ସେତିକବେଳେ ନିଜ ଗ୍ରାମ ଦୋହଲୀଠାରେ ଗୋଟିଏ ମି. ଇ. ସ୍କୁଲ ଗଢ଼ିବା ନିମନ୍ତେ ବନମାଳୀର ମନରେ ସ୍ପୃହା ଜାତ ହେଲା । କେନ୍ଦ୍ରାପଡ଼ାଠାରୁ ୧୨ । ୧୪ ମାଇଲ୍ ଦୂରତା ଭିତରେ ଅସୁରେଶ୍ୱରରେ ଗୋଟିଏ ମାତ୍ର ମି. ଇ. ସ୍କୁଲ ଥାଏ । ଏହା ବ୍ୟତୀତ ଅନ୍ୟ କେଉଁଠି ହେଲେ ଛାତ୍ରମାନଙ୍କ ନିମନ୍ତେ ଉଚ୍ଚ ଶିକ୍ଷା ପାଇବାର ସୁବିଧା ନଥାଏ । ଏହା ପ୍ରାୟ ୧୯୩୨ ମସିହାର କଥା । ଏହି ସମୟରେ ଶ୍ରୀ ବନମାଳୀ ଏହି ଦୋହଲୀ ଠାରେ ଗୋଟିଏ ମି. ଇ. ସ୍କୁଲ ଆରମ୍ଭ କଲେ । ଏହି ଗ୍ରାମର ନିକଟସ୍ଥ ମୁକୁନ୍ଦପୁର ଗ୍ରାମର ଶ୍ରୀ ମାଗୁ ନାୟକ ପ୍ରଥମେ ଦୁଇଶତ ଟଙ୍କା ଦାନ କରିବାରୁ ବନମାଳୀର ଆଗ୍ରହ କ୍ରମଶଃ ବଢ଼ିବାକୁ ଲାଗିଲା । କେଉଁଠି ଏହି ସ୍କୁଲ ଗୃହ ନିର୍ମିତ ହେବ ? ଖୁବ୍ ଭାବି, ଚନ୍ଦ୍ରା କଲାପରେ କେଶରପୁରରେ ବିଜେ ହୋଇଥିବା ଶ୍ରୀ ଶୁକ୍ଳେଶ୍ୱର ମହାଦେବଙ୍କ ପୋଖରୀର ପଶ୍ଚିମ ପାଖ ହୁଡ଼ାରେ ଏହି ସ୍କୁଲଟି ହେଲେ କାହାର ଆପତ୍ତି ହେବନାହିଁ ଏବଂ ସର୍ବସାଧାରଣଙ୍କର ଯାତାୟାତର ସୁବିଧା ହେବ, ଏହା ଭାବି ସେହିଠାରେ ହିଁ ସ୍କୁଲ ଆରମ୍ଭ କରାଗଲା । ହୁଡ଼ା ଗୋଟିଏ ଗ୍ରାମ୍ୟ ଶବ୍ଦ । ହୁଡ଼ା କହିଲେ ଶ୍ମଶାନକୁ ଏବଂ ପୋଖରୀ ବନ୍ଧକୁ ବୁଝାଏ । ଏହା ଅନାବାଦୀ ସତ୍ତ୍ୱ, ମକଦ୍ଦମମାନଙ୍କ ଅଧୀନ ଥିଲା । ଯାହା ହେଉ ଏହି ପୋଖରୀର ହୁଡ଼ାକୁ ସମତଳ କରାଯାଇ ତହିଁରେ ଘରର ମୂଳଦୁଆ ପ୍ରସ୍ତୁତ କରାଗଲା । ସଙ୍ଗେ ସଙ୍ଗେ କେତେଜଣ ମୂଲିଆଙ୍କ ସାହାଯ୍ୟରେ ଏହି ବନମାଳୀ ଗ୍ରାମମାନଙ୍କରୁ ବର ଡାଳ, ନିମ ଓ ଜାମୁ ଡାଳ ଏବଂ ବାଉଁଶ ମାଗିଆଣି ଗୋଟିଏ ବୃହତ୍ ଘର ନିର୍ମାଣ କରାଇ

ତାହାଁରେ ସ୍କୁଲକାର୍ଯ୍ୟ ଆରମ୍ଭ କଲେ । ଏହାପରେ ପୂର୍ବୋକ୍ତ କାନପୁର ମେଟକାଫ୍ ମି. ଇ. ସ୍କୁଲ ଏବଂ ଅସୁରେଶ୍ୱର ମି. ଇ. ସ୍କୁଲ ମାନଙ୍କରୁ ବହୁ ଛାତ୍ର ଆସି ଏହି ନୂତନ ମି. ଇ. ସ୍କୁଲରେ ଯୋଗଦେଲେ । ବନମାଳୀ ନିଜ କାନ୍ଧରେ ବାଉଁଶ ବୋହିଥିବା ମୁଁ ଦେଖିଛି । କିଛିଦିନ ପରେ କେନ୍ଦ୍ରାପଡ଼ା ଥାନାସ୍ଥ ନିସନ୍ଧପୁର ଗ୍ରାମର ଶ୍ରୀ ପଦ୍ମନାଭ କର ଆସି ଏହି ମି. ଇ. ସ୍କୁଲର ହେଡ଼ମାଷ୍ଟର ଭାବରେ ନିଯୁକ୍ତ ପାଇ ରହିଲେ । ସେ ମାସିକ କୋଡ଼ିଏ ଟଙ୍କାରେ ରହିଥିଲେ ମଧ୍ୟ ସାତ, ଆଠ ଟଙ୍କା ପ୍ରାୟ ନିଜ ଖର୍ଚ୍ଚ ପାଇଁ ନେଉଥାନ୍ତି କି ନାହିଁ ? ତାର କିଛିଦିନ ପରେ ଖରଦା-ସାହି ଗ୍ରାମର ଶ୍ରୀ ରାଧାମୋହନ ଚକ୍ରବର୍ତ୍ତୀ ମାଟ୍ରିକ୍ ଟ୍ରେନିଂ ପାଶ୍‌କରି ଏହି ସ୍କୁଲର ସେକେଣ୍ଡ ମାଷ୍ଟର ଭାବରେ ରହିଲେ । ପୁଣି କିଛି ସମୟ ପରେ ଏହି ପଦ୍ମନାଭ କର ବଡ଼ଗ୍ରାମ ମି. ଇ. ସ୍କୁଲର ହେଡ଼ମାଷ୍ଟର ଭାବରେ ନିଯୁକ୍ତ ପାଇ ସେଠାକୁ ଚାଲି ଯିବାରୁ ପ୍ରୋକ୍ତ ରାଧାମୋହନ ବାବୁ କିଛିସମୟ ପାଇଁ ହେଡ଼ମାଷ୍ଟର ଭାବରେ କାର୍ଯ୍ୟ ଚଳାଇଲେ । ଏତିକିବେଳେ ଗୁଲନଗର ନିବାସୀ ବ୍ରଜମୋହନ ଚକ୍ରବର୍ତ୍ତୀ ସେକେଣ୍ଡ ମାଷ୍ଟର, ସ୍ଥାନୀୟ ଶିକ୍ଷକ କୃଷ୍ଣଚନ୍ଦ୍ର ଜେନା ପ୍ରଭୃତି ସ୍କୁଲ କାର୍ଯ୍ୟ ନିର୍ବାହ କରୁଥିଲା ବେଳେ କାକତଅା ଗ୍ରାମ ନିବାସୀ ଶ୍ରୀ ବାଞ୍ଛାନିଧି ରଥ ଭି. ଏମ୍. ଟ୍ରେନିଂରୁ ଆସି ସ୍କୁଲରେ ଯୋଗଦେଲେ । ଯାହା ହେଉ ରାଧାମୋହନ ଚକ୍ରବର୍ତ୍ତୀ ଓ ବାଞ୍ଛାନିଧି ରଥ ସ୍କୁଲର ଚିରସ୍ଥାୟୀ ଶିକ୍ଷକ ।

ଏହାପରି ଭାବରେ ସ୍କୁଲ କ୍ରମୋନ୍ନତି ଲାଭ କରିବାରୁ ଗୋଟିଏ ଛାତ୍ରାବାସ ଆବଶ୍ୟକ ହେଲା । ତେଣୁ ସ୍କୁଲର ହେଡ଼ପଣ୍ଡିତ ଶ୍ରୀ ବନମାଳୀ ଅନ୍ୟ ଶିକ୍ଷକମାନଙ୍କ ସହାୟତାରେ ଇଟା, କାଠ, ବାଉଁଶ ପ୍ରଭୃତି ସଂଗ୍ରହ କରି ଛାତ୍ରାବାସଟିକୁ ନିର୍ମାଣ କରାଇ-ଦେଲେ । ଏତିକିବେଳେ ବନମାଳୀର ଧର୍ମପତ୍ନୀ 'ଲକ୍ଷ୍ମୀ' ଦେବୀ କାଳ ମୁଖରେ ପତିତ ହେଲେ ମଧ୍ୟ ସେ ବିଚଳିତ ନ ହୋଇ ଶିଶୁ କନ୍ୟା 'କମଳା'କୁ ଲାଳନ ପାଳନ କରିବା ଭାର ନିଜର ସାଆଁନ୍ତମା ଅର୍ଥାତ୍ ପିତାଙ୍କ ମାଉସୀ ଉପରେ ନ୍ୟସ୍ତ କରି ସର୍ବଦା ପିତା ମାତା ପୁତ୍ର କନ୍ୟାଙ୍କ ଯତ୍ନନେଲା ଭଳି ଛାତ୍ର ଛାତ୍ରୀ ମାନଙ୍କ ସେବାରେ ଲାଗି ରହିଥିଲେ । ସେତିକିବେଳେ ଏଠାକାର ବହୁ କନ୍ୟାଙ୍କର ଅଭିଭାବକ ମାନେ ବନମାଳୀକୁ ଜ୍ୱାଇଁ କରିବାକୁ କାମନା କରିଥିଲେ ମଧ୍ୟ ଏକମାତ୍ର କନ୍ୟାକୁ ଆଦର୍ଶ ବ୍ରହ୍ମଚାରୀ ଭାବରେ ନିଜକୁ ନିଯୁକ୍ତି କରି 'ପଣ୍ଡା' ଆଖ୍ୟା ବଦଳରେ 'ବ୍ରହ୍ମଚାରୀ' ଆଖ୍ୟା ଧାରଣ କରି ବ୍ରହ୍ମଚର୍ଯ୍ୟବ୍ରତ ଯଥାସାଧ୍ୟ ପାଳନ କରି ଆସିଛନ୍ତି । ତାଙ୍କର କର୍ମ-କ୍ଷେତ୍ର ହେଲା ଏହି ଦୋହଲୀ ସ୍କୁଲ ।

ଏତିକିବେଳେ ଗୋବୋଲ ହାଟଠାରୁ ଦାନପୁର ଲକ୍ ପର୍ଯ୍ୟନ୍ତ ରାସ୍ତା ଆଦୌ ନଥିଲା । ଏଠାରେ ରାସ୍ତା ନ ହେଲେ ଧୋଇପ୍ରା ଅଞ୍ଚଳର ଛାତ୍ର ଛାତ୍ରୀ ଏବଂ ଦୂର ପଥରୁ ପିଲାମାନେ ଆସି ପାରିବେ ନାହିଁ । ଏହି ଭାବ ତାଙ୍କ ହୃଦୟରେ ଜାଗରିତ ହେବାରୁ ସେ ଏହି ରାସ୍ତାର ଚାଷୀ ମାନଙ୍କ ହାତରୁ ୧୦ କଡ଼ ଲେଖା ଛାଡ଼ିବାକୁ ବିନମ୍ର ସହକାରେ କାକୁତି ମିନତି କରି ଏବଂ କେତେ ଗରିବ ଚାଷୀଙ୍କୁ ଜମିର ମୂଲ୍ୟ ଦେଇ ଗୋଟିଏ ରାସ୍ତା ତିଆରି କରି ଦେଇଛନ୍ତି । ତାପରେ ତାଙ୍କ ନିଜ ଘର ଦେଇ ରଜାଙ୍ଗ ପର୍ଯ୍ୟନ୍ତ ଆଉ ଗୋଟିଏ ଗ୍ରାମ୍ୟ ରାସ୍ତା ମଧ୍ୟ ତିଆରି କରି ଉଭୟ ରାସ୍ତାରେ ସରକାରଙ୍କ ସାହାଯ୍ୟରେ ୨ଟି କାଠ ପୋଲ କରାଇବା ଦ୍ୱାରା ତାଙ୍କୁ ସ୍ଥାନୀୟ ଲୋକେ କେବେ-ହେଲେ ଭୁଲି ପାରିବେ ନାହିଁ । ଏହି ମି: ଇ: ସ୍କୁଲରେ ଛାତ୍ର ତଥା ଛାତ୍ରୀମାନେ ଉଚ୍ଚଶିକ୍ଷା ଲାଭକରିବାକୁ ବିଶେଷ ଆଗ୍ରହୀ ହେବାର ଦେଖି ଏହି ବନମାଳୀ ଗତ ୧୯୪୫ ମସିହାରେ ଦୋହଲୀ ମି: ଇ: ସ୍କୁଲକୁ ଦୋହଲୀ ମଡ଼େଲ ହାଇସ୍କୁଲ ନାମରେ ନାମିତ କରାଇ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଇ ପାରିଛନ୍ତି । ତାହାଁ ସଙ୍ଗେ ସ୍କୁଲର ଖେଳ ପଡ଼ିଆ, ବଗିଚା ଏବଂ ହେଡ୍ ମାଷ୍ଟରଙ୍କ କ୍ୱାଟର ଇତ୍ୟାଦି ପାଇଁ ପ୍ରାୟ ଛଅ ଏକର ଜମି ମଧ୍ୟ ନିଜ ପକେଟରୁ

ଏବଂ ସ୍କୁଲ ପାଣ୍ଠିରୁ ଏହି ସ୍କୁଲ ପାଇଁ ସଂଗ୍ରହ କରି ରଖି ଦେଇଛନ୍ତି । ନିଜର ଘରବାଡ଼ି ଜମିକୁ ଆପଣାର ଭଣଜା ତଥା ବିମାତାଙ୍କୁ ଛାଡ଼ିଦେଇ ଏହି ସ୍କୁଲ ହତା ବାହାରେ ପ୍ରଥମେ ଗୋଟିଏ ଛପର ଘର ନିର୍ମାଣ କରାଇ ସେଠାରେ ରହି ସ୍କୁଲର ତତ୍ତ୍ୱାବଧାନରେ ସର୍ବଦା ନିଜକୁ ନିୟୋଜିତ କରିଥିଲେ । ଏହିପରି କେତେ କାଳ ଅତୀତ ହେଲା ପରେ ସରକାର ସ୍କୁଲର ସମ୍ପୂର୍ଣ୍ଣ ଭାର ଗ୍ରହଣ କରିବାରୁ ବନମାଳୀ ଏହି କ୍ଷେତ୍ରରୁ ସମ୍ପୂର୍ଣ୍ଣ ଅବ୍ୟାହତି ନେଇ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ସଂଗଠନ ସମ୍ପାଦକ ଭାବରେ କାର୍ଯ୍ୟ କରୁଛନ୍ତି । କେତେ ଖଣ୍ଡି ପାଠ୍ୟ ପୁସ୍ତକ ମଧ୍ୟ ପ୍ରକାଶ କରି ଓଡ଼ିଶାର ପୁରପଲ୍ଲୀରେ ପରିଚିତ ହୋଇଛନ୍ତି ।

● ନରସିଂହପୁର
ଦାନପୁର, କଟକ



# ଏକ ଜୀବନ୍ତ ଅନୁଷ୍ଠାନ ସମ୍ପର୍କରେ

ଶ୍ରୀବତ୍ସ ପ୍ରସାଦ ନାଥ

ବହୁ ଅତୀତର କେତୋଟି କଥା ଆଜ ମୋର ମନେପଡ଼େ । ୧୯୫୭ ମସିହାରେ ମୁଁ ସାଲେପୁର ସନ୍ନିକଟସ୍ଥ ସୁଙ୍ଗୁଡ଼ା ହାଇସ୍କୁଲରେ (ଅଧୁନା ଏହା ଏକରାମ ରସୁଲ ହାଇସ୍କୁଲ ନାମରେ ନାମିତ ହୋଇଅଛି ।) ଶିକ୍ଷକତା କରୁଥାଏ । କିଛିଦିନ ପରେ ମୁଁ ସେ ଅଞ୍ଚଳର କେତେକ ବିଶିଷ୍ଟ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥିଲି । ସେମାନେ ମୋର ଘର ଗୃନ୍ଦୋଳ ଅଞ୍ଚଳରେ ଜାଣି, ମୋତେ ଶିକ୍ଷକ ଶ୍ରୀ ବନମାଳୀ ବ୍ରହ୍ମଚାରୀ, ଅକ୍ଷୟ କୁମାର ଚକ୍ରବର୍ତ୍ତୀ ଓ ରାଧାମୋହନ ଚକ୍ରବର୍ତ୍ତୀଙ୍କ ସମ୍ପର୍କରେ ନାନା ପ୍ରଶ୍ନ ପଚାରିଥିଲେ । ମୁଁ ସେମାନଙ୍କ ଠାରୁ ସେତେବେଳେ ଅବଗତ ହୋଇଥିଲି ଯେ, ସେହି ଉଚ୍ଚ ବିଦ୍ୟାଳୟଟି ଦିନେ କାନପୁର ମେଟ୍‌କାଫ୍ ମଧ୍ୟ ଇଂରାଜୀ ବିଦ୍ୟାଳୟ ରୂପେ କଟକ ଜିଲ୍ଲାରେ ସୁଖ୍ୟାତି ଅର୍ଜ୍ଜନ କରିଥିଲା ପ୍ରଧାନ ଶିକ୍ଷକ ଅକ୍ଷୟ କୁମାର ଚକ୍ରବର୍ତ୍ତୀ, ସହକାରୀ ଶିକ୍ଷକ ଶ୍ରୀ ବ୍ରହ୍ମଚାରୀ ଓ ଶ୍ରୀ ରାଧାମୋହନ ଚକ୍ରବର୍ତ୍ତୀଙ୍କ ଅକ୍ଲାନ୍ତ ନିଷ୍ଠାପର କର୍ତ୍ତବ୍ୟବୋଧ ଓ ପ୍ରଗାଢ଼ ବିଦ୍‌ବତ୍ତା ଯୋଗୁଁ । ଦିନେ ବିଦ୍ୟାଳୟର ଛାତ୍ରାବାସରେ ଏମାନେ ଏକତ୍ର ଉପବେଶନ କରି ନାନା ଆଳାପ ଆଲୋଚନାରେ ରତ ରହିଥିବା ବେଳେ ବନମାଳୀ ପ୍ରଥମେ ଗୋଟିଏ ପ୍ରସ୍ତାବ ଆଗତ କଲେ ଏବଂ ଅତି ଆବେଗର ସହିତ ସେ କହି ପକାଇଥିଲେ—"ଆମ୍ଭେମାନେ ଆସି ସୁଦୂର ବିଦେଶରେ ଶିକ୍ଷକତା କରି ଜୀବିକା ନିର୍ବାହ କରୁଅଛୁଁ । ଆମ ଅଞ୍ଚଳରେ ଯଦି ଗୋଟିଏ ଅନୁଷ୍ଠାନ ପ୍ରତିଷ୍ଠା କରି ପାରନ୍ତେ, ତାହାହେଲେ ସେଠାରେ ବହୁ ଛାତ୍ରଛାତ୍ରୀ ଉପକୃତ ହୁଅନ୍ତେ ।" ସମସ୍ତଙ୍କ ମନକୁ କଥାଟି ବିଶେଷ ଭାବରେ ସ୍ପର୍ଶକଲା । ଏହି ଭାବନାରେ ମଗ୍ନ ରହିଥିବା ସମୟରେ ଦିନେ ହଠାତ୍ ତିନିଜଣ ଯାକ ସେଠାରେ ଇସ୍ତଫା ପତ୍ର ଦାଖଲ କରି ସ୍ୱ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ତାହାର କିଛିଦିନ ପରେ ଏଠାରେ ମୁଣ୍ଡ ଟେକି ଉଠିଲା ଦୋହଲା ସହଯୋଗ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ତାହା ପରେ ଦୋହଲା ଆଦର୍ଶ ଉଚ୍ଚ ବିଦ୍ୟାଳୟ ରୂପରେ ପରିଣତ ହେଲା—ଏମାନଙ୍କର ବହୁ କଷ୍ଟ ସାଧ୍ୟ ପ୍ରଚେଷ୍ଟାରେ । ମୋର ପୂଜ୍ୟ ଗୁରୁମାନେ ଯେଉଁଠାରୁ ପ୍ରେରଣା ପାଇ ନିଜ ଅଞ୍ଚଳର ମୁଖ ଉଜ୍ଜ୍ୱଳ କରିଥିଲେ—ସେହି ବିଦ୍ୟାଳୟରେ ମୋର ଶିକ୍ଷକତା, ପୁଣି ସେହି ଛାତ୍ରାବାସରେ ମୋର ଅବସ୍ଥାନ, ନିଜକୁ ମୁଁ ଧନ୍ୟ ମନେ କରିଥିଲି ଏବଂ ତା'ର ଧୂଳିମାଟି ପ୍ରତି ମୋର ମସ୍ତକ ଅବନତ ହୋଇ ଯାଇଥିଲା ସେତେବେଳେ । ମୋର ଗୁରୁଜନମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଦିନେ ଅତି ଭାବବିଭୋର ଅବସ୍ଥାରେ ମୁଁ ସେଠାରୁ ଚାଲି ଆସିଥିଲି ନୂଆକରି ଗଢ଼ି ଉଠୁଥିବା ଡେରାବିଶ୍ ହାଇ ସ୍କୁଲକୁ—ଜୀବନର କିଞ୍ଚିତ୍ ଦାନରେ ତାକୁ କରିବି ସର୍ବାଙ୍ଗସୁନ୍ଦର । ଏଠାରେ ମୋ' ସମ୍ପର୍କରେ ଦୁଇପଦ ପ୍ରକାଶ କରିବାକୁ ବାଧ୍ୟ ହୋଇଛି—ସେଥିପାଇଁ ଆଶାକରେ ପାଠକମାନେ ମୋତେ କ୍ଷମା ଦେବେ ।

ଜଣେ ଆଦର୍ଶ ଶିକ୍ଷକ ଓ ବିଦ୍ୟାଳୟ ପ୍ରତିଷ୍ଠାତା ହିସାବରେ ସେ ଏ ଅଞ୍ଚଳରେ ବିଶେଷ ସୁପରିଚିତ । ଆବାଳବୃଦ୍ଧ ବନିତାଙ୍କ ନିକଟରେ ସେ 'ବନମାଳୀ ପଣ୍ଡିତେ" ନାମରେ ଖ୍ୟାତ । ଛାତ୍ରସମାଜଠାରୁ ଆରମ୍ଭ କରି ଶିକ୍ଷକ ଓ ଅଭିଭାବକ ଗୋଷ୍ଠୀରେ ସେ ଏହି ନାମରେ ଆଜିସୁଦ୍ଧା ଉଦ୍‌ଘୋଷିତ ହୋଇ ରହିଛନ୍ତି ଏବଂ ରହିଥିବେ ମଧ୍ୟ । ଅଧିକନ୍ତୁ ତାଙ୍କର ଛାତ୍ରବତ୍ସଳତା, ଦରିଦ୍ର ଛାତ୍ରମାନଙ୍କୁ ଅକୁଣ୍ଠିତ ସାହାଯ୍ୟ ଦାନ— ହିତୋପଦେଶ ପୂର୍ଣ୍ଣ ମଧୁର ଭାଷା, ଉକ୍ତ ଅଞ୍ଚଳରେ ଚିରଦିନ ପାଇଁ ତାଙ୍କୁ ବଞ୍ଚାଇ ରଖିବ—ଏହା ନିଶ୍ଚିତ । ଅଜ୍ଞାନ ଅନ୍ଧକାର ନାଶ କରି ନବୀନ ଶିକ୍ଷାଲୋକ ବିସ୍ତାର ଉଦ୍ଦେଶ୍ୟରେ ସେ ଯେଉଁ ବିରାଟ ତ୍ୟାଗ ସ୍ୱୀକାର କରିଛନ୍ତି—ଶେଷରେ ନିଜର ସର୍ବସ୍ୱ ଦାନରେ ଅନୁଷ୍ଠାନର ପୂର୍ଣ୍ଣାଙ୍ଗ ଅବସ୍ଥା ଆଣି ଦେଇଛନ୍ତି, ତାହା ତାଙ୍କର ମହନୀୟ ଚରିତ୍ରର ପରିଚୟ ପ୍ରଦାନ କରେ । ଇଂରେଜ ରାଜତ୍ୱ କାଳରେ ଉତ୍କଳରେ ଶିକ୍ଷା ପ୍ରସାର ପାଇଁ ଯେଉଁ କେତେଜଣ ମହାମନୀଷୀ ବହୁ ଆତ୍ମତ୍ୟାଗ ସ୍ୱୀକାର କରି ଯାଇଛନ୍ତି, ସେମାନଙ୍କ ମଧ୍ୟରେ ବନମାଳୀ ପଣ୍ଡିତେ ହେଉଛନ୍ତି ଉଚ୍ଚ ଆସନର ଅଧିକାରୀ । ପ୍ରୌଢ଼ଶିକ୍ଷା ମାଧ୍ୟମରେ ଦେଶରୁ ନିରକ୍ଷରତା ଦୂରୀକରଣ ଲାଗି ସେ ମଧ୍ୟ ଆପ୍ରାଣ ଉଦ୍ୟମ ଚଳାଇଥିଲେ ।

ବନମାଳୀ ବ୍ରହ୍ମଚାରୀଙ୍କ ଶିକ୍ଷକତା କାଳରେ ପାଠ୍ୟ ପୁସ୍ତକ ଥିଲା ସୀମିତ । ସେଗୁଡ଼ିକରେ ସେ ନାନା ଦୋଷ ତ୍ରୁଟି ଲକ୍ଷ୍ୟ କରି ନିଜେ ପାଠ୍ୟ ପୁସ୍ତକ ପ୍ରଣୟନରେ ବ୍ରତୀ ହୋଇଥିଲେ । ବିଭିନ୍ନ ଶ୍ରେଣୀ ଉପଯୋଗୀ ତାଙ୍କର ପ୍ରଣୀତ ଓଡ଼ିଆ ବ୍ୟାକରଣରେ ଏବେ ସୁଦ୍ଧା ବୈଶିଷ୍ଟ୍ୟ ଥିବାର ପରିଲକ୍ଷିତ ହୁଏ । ତାଙ୍କର 'ଗୁଣ ଦର୍ପଣ' ପୁସ୍ତକ ଖଣ୍ଡିକ ସେକାଳର ପୁସ୍ତକ ମହଲରେ ଶ୍ରେଷ୍ଠ ବିବେଚିତ ହୋଇଥିଲା । ଏହା ବ୍ୟତୀତ ସେ ବହୁ ଶିଶୁ ସାହିତ୍ୟର ପ୍ରଣେତା ହିସାବରେ ଓଡ଼ିଶାର ପୁର-ପଲ୍ଲୀରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ସେଥିପାଇଁ କେନ୍ଦ୍ର-ଓ ରାଜ୍ୟ ସରକାରଙ୍କଠାରୁ ମଧ୍ୟ ପୁରସ୍କାର ପାଇଛନ୍ତି । ତାଙ୍କର ସାହିତ୍ୟିକ କୃତିତ୍ୱ ଅନନ୍ୟ ସାଧାରଣ । ତାହାର ସମୀକ୍ଷା କରାଗଲେ ସେ ଯେ ଉଚ୍ଚକୋଟୀର ଜଣେ ପାଠ୍ୟ ପୁସ୍ତକ ପ୍ରଣେତା ଓ ଶିଶୁ ସାହିତ୍ୟକାର ରୂପରେ ବିବେଚିତ ହେବେ, ଏହା କହିବା ବାହୁଲ୍ୟ ମାତ୍ର ।

ଏତିକରେ ତାଙ୍କର ପ୍ରତିଭା ସୀମିତ ହୋଇ ରହିନାହିଁ । ବିଭିନ୍ନ ସାମାଜିକ ସଂସ୍କାର ଦିଗରେ ପଣ୍ଡିତ ବନମାଳୀଙ୍କର ଯଥେଷ୍ଟ ଅବଦାନ ରହିଛି । ମହାତ୍ମା ଗାନ୍ଧୀଙ୍କର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ସ୍ୱଦେଶୀ ଦ୍ରବ୍ୟ ଗ୍ରହଣ, ବିଦେଶୀ ଦ୍ରବ୍ୟ ବର୍ଜନ ଓ ଅସ୍ପୃଶ୍ୟତା ନିବାରଣ ଆଦି ନାନା ଦେଶହିତକର କାର୍ଯ୍ୟରେ ସେ ପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ । ତତ୍‌କାଳୀନ ସମାଜରେ ବିଧବାମାନେ ନାନା ଦୁଃଖ ନିର୍ଯ୍ୟାତନାରେ କାଳାତିପାତ କରୁଥିଲେ । ସମାଜର କଠୋର ଶୃଙ୍ଖଳ ଛିନ୍ନ କରିବାର ଶକ୍ତି ସେମାନଙ୍କର ନ ଥିଲା । ସାଧାରଣତଃ ସେତେବେଳେ ଦେଶରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିବାରୁ କେତେକ ସ୍ଥଳରେ ସ୍ୱାମୀର ମୁଖ ଦର୍ଶନ ନ କରୁଣୁ କନ୍ୟା ଅଳ୍ପ ବୟସରେ ବୈଧବ୍ୟ ଦଶା ପ୍ରାପ୍ତ ହେଉଥିଲା । ଏଭଳି ଏକ ସାମାଜିକ କଳଙ୍କ ବିରୋଧରେ ସେ ଦୃଢ଼ କଣ୍ଠ ଉତ୍ତୋଳନ କରିଥିଲେ । ଅନେକ ସ୍ଥାନରେ ତାଙ୍କର ସହାୟତାରେ ଦୁଃଖିନୀ ବିଧବାମାନେ ପୁନଃ ବିବାହ କରି ସେମାନଙ୍କର ସୁଖର ସଂସାର ଗଢ଼ିଥିଲେ । ସେ ସମୟରେ ବ୍ରାହ୍ମଣ ସମାଜରେ ହଳ ଧାରଣ ବ୍ୟବସ୍ଥା ନ ଥିଲା । ସେମାନେ ନିଜକୁ ଉଚ୍ଚ ବଂଶୋଦ୍ଭବ ମନେକରି ଭୂମି କର୍ଷଣ କାର୍ଯ୍ୟକୁ ଅତି ନିନ୍ଦିତ ଘୃଣ୍ୟ କର୍ମ ବୋଲି ଭାବୁଥିଲେ । ସେ ଏ ଦିଗରେ ପ୍ରଥମ ପଦକ୍ଷେପ ନେଇ ହଳ ପ୍ରବାହ କର୍ମ ସ୍ୱହସ୍ତରେ ସମ୍ପାଦନ କରିଥିଲେ । ଏହି ସବୁ ସାମାଜିକ ପରିବର୍ତ୍ତନ ପାଇଁ ତାଙ୍କୁ ନାନା ନିର୍ଯ୍ୟାତନା, ବ୍ୟଙ୍ଗ ବିଦ୍ରୂପ ସହ୍ୟ କରିବାକୁ ପଡ଼ିଥିଲା । ତଥାପି ତାଙ୍କର ନିର୍ଭୀକ ମନୋବଳ ଓ ବଳିଷ୍ଠ ବ୍ୟକ୍ତିତ୍ୱ ଯୋଗୁଁ ସେ ନାନା ବାଧାବିଘ୍ନ ସତ୍ତ୍ୱେ ଏ ପଥରୁ କ୍ଷାନ୍ତ ହୋଇ ନ ଥିଲେ । ଶେଷରେ ସେ ହୋଇଥିଲେ ବିଜୟଶ୍ରୀ ମଣ୍ଡିତ ।

ସ୍ୱାଧୀନତା ପରେ ସେ ବିଭିନ୍ନ ସମାଜ ମଙ୍ଗଳ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କଲେ । ସେଥିପାଇଁ ଅତି ଆଦରର ଶିକ୍ଷକତା କର୍ମ ତାଙ୍କୁ

ପରିତ୍ୟାଗ କରିବାକୁ ପଡ଼ିଥିଲା । ଗଣତନ୍ତ୍ର ଶାସନର ବ୍ୟବସ୍ଥା ଅନୁଯାୟୀ ଗ୍ରାମପଞ୍ଚାୟତ ଓ ପଞ୍ଚାୟତିରାଜ ଯୋଜନାରେ ସେ ଥରେ ଦାନପୁର ଗ୍ରାମପଞ୍ଚାୟତର ସରପଞ୍ଚ ଓ କେନ୍ଦ୍ରାପଡ଼ା ପଞ୍ଚାୟତ ସମିତିର ସଭ୍ୟ ରୂପରେ ନିର୍ବାଚିତ ହୋଇ ଜନସାଧାରଣଙ୍କର ବିଳକ୍ଷ ପ୍ରତିନିଧିତ୍ଵ କରିଛନ୍ତି । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ସେ ବହୁ ରାସ୍ତା-ଘାଟ, କୂପ, ପୁଷ୍କରିଣୀ ଆଦି ପ୍ରତିଷ୍ଠା କରି ଯାଇଛନ୍ତି । ସେ ନିଜେ ଜଣେ ଆଦର୍ଶ ଶିକ୍ଷକ ହୋଇଥିବାରୁ ଶିକ୍ଷା କ୍ଷେତ୍ରରେ ତାଙ୍କର ଦୃଷ୍ଟି ବିଶେଷ ଭାବରେ ନିପତିତ ହୋଇଥିଲା । ସେଥିପାଇଁ ସେ ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ମାଧ୍ୟମିକ ବିଦ୍ୟାଳୟ ପର୍ଯ୍ୟନ୍ତ ଏ ଅଞ୍ଚଳର ସମସ୍ତ ଶିକ୍ଷାନୁଷ୍ଠାନକୁ ବିଭିନ୍ନ ପାଠ୍ୟୋପକରଣ ପଞ୍ଚାୟତ ଜରିଆରେ ପ୍ରଦାନ କରିଥିଲେ । ପ୍ରତିବର୍ଷ ଶିକ୍ଷାକେନ୍ଦ୍ର ଅନ୍ତର୍ଗତ ବିଦ୍ୟାଳୟ ମାନଙ୍କ ମଧ୍ୟରେ କ୍ରୀଡ଼ା ପ୍ରତିଯୋଗିତାର ବ୍ୟବସ୍ଥା କରି ତହିଁର ସମସ୍ତ ବ୍ୟୟ ବହନ କରୁଥିଲେ । ଛାତ୍ରଛାତ୍ରୀମାନଙ୍କ ଭିତରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ । ଏଭଳି ଦୃଷ୍ଟାନ୍ତ ଏବେ ସୁଦ୍ଧା ଏ ଅଞ୍ଚଳରେ ବିରଳ ହୋଇ ରହିଅଛି । ଜଣେ ଶିକ୍ଷାପ୍ରେମୀ ହିସାବରେ ଏହା ତାଙ୍କର ମହାନ୍ ଭାବୁକତାର ପରିଚୟ ଦିଏ ।

ଏସବୁ ସତ୍ତ୍ୱେ ସେ ସଦା ସର୍ବଦା ନିର୍ଯ୍ୟାତିତ ଶିକ୍ଷକସମାଜ ପ୍ରତି ସଚେତନ ଓ ସକ୍ରିୟ ଥିଲେ । ନିଖିଳ ଉତ୍କଳ ସ୍ତରରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଠନ କରିବାରେ ସେ ହେଉଛନ୍ତି ଏକମାତ୍ର ମୁଖ୍ୟ ବ୍ୟକ୍ତି, ଯେ କି ନାନା ଦୁଃଖ କଷ୍ଟକୁ ସ୍ୱେଚ୍ଛାରେ ବରଣ କରିନେଇ ସମଗ୍ର ଓଡ଼ିଶା ବୁଲି ବୁଲି ସଂଘ ବାର୍ତ୍ତା ପ୍ରଚାର କରିଛନ୍ତି ଏବଂ ସୁପ୍ତ ଶିକ୍ଷକ ଜାତିକୁ ଆଜି ଜାଗ୍ରତ କରିପାରିଛନ୍ତି । ତାଙ୍କର ଆଦର୍ଶର ଅନୁସରଣରେ ପରବର୍ତ୍ତୀ କାଳରେ (ପ୍ରାଥମିକ ଶିକ୍ଷକ ଫେଡ଼େରେସନକୁ ବାଦ୍ ଦେଲେ ) ମାଧ୍ୟମିକ, ଉଚ୍ଚ ମାଧ୍ୟମିକ, ମୌଳିକ ଓ କଲେଜ ଶିକ୍ଷକ ସଙ୍ଘମାନ ପ୍ରତିଷ୍ଠିତ ହୋଇ ପାରିଛି । ଶେଷରେ ସେ ଆଜି ଶିକ୍ଷକ ସମାଜର ସର୍ବୋଚ୍ଚ ସମ୍ମାନାସ୍ପଦ ବ୍ୟକ୍ତି ରୂପରେ ରାଜ୍ୟସ୍ତରୀୟ ଶିକ୍ଷକ ମହାସଂଘର ସଭାପତି ଆସନ ଅଳଂକୃତ କରି ପାରିଛନ୍ତି, ନିଜର ପ୍ରଚଣ୍ଡ ପ୍ରତିଭା ବଳରେ । ଶିକ୍ଷକ ସମାଜର ଦୁରବସ୍ଥା ଲୋପ କରିବା ପାଇଁ ସେ ପ୍ରତି ମୁହୂର୍ତ୍ତରେ ବଦ୍ଧ ପରିକର—ଏପରି କି ନିଜର ଜୀବନ ପ୍ରତିବଦଳରେ ସେ ଶିକ୍ଷକମାନଙ୍କର ଉନ୍ନତି କାମନା କରନ୍ତି । ଏଥି ସଙ୍ଗେ ସଙ୍ଗେ ଦେଶର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାରେ ମଧ୍ୟ ସେ ଚାହାଁନ୍ତି ଆମୂଳ ପରିବର୍ତ୍ତନ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ମୋର ବିଶ୍ୱାସ, ଉକ୍ତ ଦେଶାତ୍ମବୋଧ ଗୀତି ସେ ଶିକ୍ଷକ ସମାଜ ପ୍ରତି ପ୍ରୟୋଗ କରିଛନ୍ତି ନିଜକୁ ଜଣେ ଦକ୍ଷ ଶିକ୍ଷକ ସମାଜସେବୀ ହିସାବରେ ଅବସ୍ଥାପନ କରି । ସତେ ଯେପରି ସେ ଈଶ୍ୱରଙ୍କ ଦ୍ୱାରା ଅଭିପ୍ରେରିତ ହୋଇଛନ୍ତି ଶିକ୍ଷକ ସମାଜର ଦୁରିତ ସକଳ ବିନାଶ କରିବା ପାଇଁ । ଆଜି ତାଙ୍କର ପବିତ୍ର ଜୟନ୍ତୀ ବାସରରେ ତାଙ୍କୁ ମୋର ବିନମ୍ର ପ୍ରଣତି ଜଣାଉଅଛି । ଭଗବାନ ତାଙ୍କୁ ଶତାୟୁ କରନ୍ତୁ—ତାଙ୍କର ଆଜୀବନ ସାଧନା ସଫଳ ହେଉ । ଏତିକି ପରମେଶ୍ୱରଙ୍କ ନିକଟରେ ମୋର ଆନ୍ତରିକ ପ୍ରାର୍ଥନା ।

● ଶିକ୍ଷକ
ଡେରାବିଶି ହାଇସ୍କୁଲ
କଟକ



# ସେ ଆମ ଭିତରେ

**ଶ୍ରୀ ରାଏଗୁରୁ ଧରଣୀଧର ମହାପାତ୍ର**

କାହିଁ ମହାନଦୀ ତ୍ରିକୋଣ ଭୂମିର ଲୁଣା-ଚିତ୍ରୋତ୍ପଳା ଦୋଆବ ଭିତରେ ଆମର ଗାଁ, କାହିଁ ସମୁଦ୍ର ଉପକୂଳରେ ଅବସ୍ଥିତ ଲୁଣୀ ନଈ କୂଳରେ ଆମ ମାମୁଁ ଘର ଗାଁ ବଡ଼ପଡ଼ା ପଟ୍ଟାମୁଣ୍ଡାଇ ଥାନାର ଉତ୍ତିକଣ ଇଲାକାରେ । ଗାଡ଼ି ମଟରରେ ଦୂରର କଥା; ଚାଲି ଚାଲି ଯାଇ ବାଟରେ ହିଂସ୍ର-ଜଳଜନ୍ତୁ-ପରିପୂର୍ଣ୍ଣ ନଈ ଗୁଡ଼ିକୁ ଅତିକ୍ରମ କରି ଏଠାରେ ପହଞ୍ଚିବା ଲୁହାର ବଡ଼ଚଣା ଖାଇବା କଥା । ତଥାପି ମାମୁଁ ଘରେ ହାଜର ହେବାକୁ ପାଦର ଗତି ଏପରି ଚଞ୍ଚଳ ହୋଇଉଠେ, ସତେ ଯେପରି ଆମେ ଆକାଶ ପଥରେ ଉଡ଼ି ଯାଉଛୁ ଅବିରାମ ଅବିଶ୍ରାନ୍ତ ଭାବରେ । ମନରେ ସେ ଯୋଉ ପୁଲକ ଓ ଦୁଃସାହସ, ସେଥିରେ ଅବସାଦ ବା କ୍ଲାନ୍ତିର ଅବସର ନଥାଏ । ବିଶେଷକରି ସତେ ଯେପରି ପ୍ରଚୁର ବ୍ୟବଧାନ ପରେ ସୁଦୂର ପ୍ରବାସୀ ଏବେ ଜନ୍ମମାଟିକୁ ଫେରି ଆସୁଛି—ଏକ ଉତ୍ସାହପ୍ରଦ ଇଚ୍ଛାଶକ୍ତିର ପ୍ରଭାବର ଅନୁଭୂତି ଏବେବି ମନରେ ଘର କରି ରହିଛି ।

ଆମର ଗାଁ ଓ ମାମୁଁ ଘର ଗାଁ ଭିତରେ ଆକାଶରେ ମନ ଅହରହ ବୁଲୁଥାଏ । ପ୍ରାଇମେରୀ ଶିକ୍ଷାର କିଛି ସମୟ ଆମ ଗାଁରେ ଓ କିଛି ମାମୁଁ ଘର ଗାଁରେ ଅତିବାହିତ ହେଲାପରେ ବର୍ତ୍ତମାନ ମାଇନର ପଢ଼ିବା ପାଇଁ ଦୁର୍ଭାଗ୍ୟ ବଶତଃ ବେଳ ଆସିଗଲା । ମୋତେ ମୋ ସାନମାମୁଁ ପାଣିରୁ ମାଛ କାଢ଼ି ଆଣିଲା ପରି ବଡ଼ମାମୁଁ ଡଃ ବଂଶୀଧର ସାମନ୍ତରାୟଙ୍କ ପରାମର୍ଶରେ ଯୋଉଦିନ ମାମୁଁ ଘରୁ ଆଣି ଗୋଟିଏ ଏକଦମ୍ ନୂଆ ଯାଗାର ଇସ୍କୁଲରେ ଛାଡ଼ିବାକୁ ଆସିଲେ, ସେଦିନ ମୋର ଏବେବି ମନେ ଅଛି । କି ଦାରୁଣ ସେ ସମୟ ! ଛୁଇପରି ବୋଉର କାନି ତଳେ ରହୁଥିବା ପିଲାର ଘର ମମତା ଅତି ଆପଣାର—ଅତି ନିବିଡ଼ । ସାନ ମାମୁଁଙ୍କର ଲାଲ ଆଖି—କଟକଣା—ଆଜଠରେ ସୁଦୂର ଆନ୍ଦାମାନର ଏକ ନିସ୍ତ ଅପରାଧୀ ପରି ଅଣାଯାଇ ଏପରି ଯାଗାରେ ମୋତେ ଛଡ଼ାଗଲା ସେ ଦିନର ଅନୁଭୂତିର ସ୍ମୃତି ଏବେବି ମନ ଭିତରେ ବଞ୍ଚିଛି । ଏକ ଅକଥନୀୟ ଯନ୍ତ୍ରଣାରେ ଆସି ପହଞ୍ଚିବାକୁ ହେଲା । ତାକୁ କେବଳ ମନସ୍ତତ୍ତ୍ୱବିତ୍ ମାନେ କଳ୍ପନା କରି ପାରିବେ । ଯାହା ହେଉ ଏହା ଛଡ଼ା ଅନ୍ୟ ରାସ୍ତା ନାହିଁ । ଏହି ସାମୟିକ ସନ୍ତୋଷରେ ଦୀର୍ଘ ପଥର କ୍ଲାନ୍ତି ଓ ଅବସାଦରେ କେତେବେଳେ ମନ ଭିତରେ ମୌସୁମୀ ରାତିର ଘନ ଅନ୍ଧକାର ଗ୍ରାସ କରି ଯାଇଥିଲା ।

ସକାଳ ହେଲା । ସତେଜ ସୁନାର ସୂର୍ଯ୍ୟକିରଣ ବନ୍ଦ ଝରକାର ରେଲିଂ ଭିତର ଦେଇ ମୋ ବିଛଣାରେ ପଡ଼ିଲା । ଆଖି ମଳି ମଳି ଉଠିଲି । ଦେଖିଲି, ମାମୁଁ କିଛି ଦୂରରେ ବସି ଜଣେ ତେଜୀୟାନ ଲୋକଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ମାମୁଁଙ୍କ ବିଭୀଷିକା-ମୟ ଇସାରାରେ ସେଠାକୁ ଯିବାକୁ ପଡ଼ିଲା । ଜଣେ ସଦ୍ୟ ସ୍ନାତ, ଚନ୍ଦନ-ଚର୍ଚ୍ଚିତ, ଖଦଡ଼ ପିନ୍ଧିଥିବା ଗୋରା ଚେହେରାର ଲୋକଙ୍କ ଆଗରେ ଜୀବନ ସଂଶୟରେ ଯାଇ ଛିଡ଼ାହେଲି—ପ୍ରଣାମ କଲି । ମାମୁଁ ଯାହାଙ୍କୁ ଚିହ୍ନାଇ ଦେଲେ ସେ ହେଉଛନ୍ତି ଏ ଶିକ୍ଷାୟତନର ପ୍ରତିଷ୍ଠାତା—ସେଇ ପିଲା ମାନଙ୍କର ଛାତ୍ରାବାସର ଅଭିଭାବକ-ହର୍ତ୍ତା, କର୍ତ୍ତା, ଦୈବ ବିଧାତା—ସବୁ ସିଏ

ଗୋଟିଏ ଧନ ରହିବା ପରେ ମୋର ସମସ୍ତ ଦାୟିତ୍ୱ ତାଙ୍କ ଠାରେ ନ୍ୟସ୍ତକରି ମାମୁଁ ସେଇ ଦୋହଲୀ-ସହଯୋଗ ମାଇନର ସ୍କୁଲ ପରିସର ଭିତରୁ ବିଦାୟ ନେଇ ମଠର ଉଦ୍ଦେଶ୍ୟରେ ଗୃହୋନ୍ମୁଖ ଆସିଲେ । ମୁଁ ମଧ୍ୟ ଛଳ ଛଳ ଆଖିରେ କିଛି ବାଟ ଅନୁସରଣ କରି ପୁଣି ଛାତ୍ରାବାସକୁ ନେଉଟି ଆସିଲି, ଯୋଉଠି ମୋର ବହିପତ୍ର, ଲୁଗାପଟା ଇତ୍ୟାଦିର ବାକ୍ସ ରଖାଯାଇ ଥିଲା ।

ନିପଟ-ମଫସଲର ବନ ବିଦ୍ୟାଳୟ ଭିତରେ ଏହି ସହଜ ସରଳ ଛାତ୍ରାବାସ ଏକ ମନୋରମ ପରିବେଶ ଭିତରେ ଅବସ୍ଥିତ । କଦଳୀ-ନାରିକେଳ-ଆମ୍ବ-ପିଜୁଳିର ଗଛଗଛା ସବୁ ଫଳ ଅବନତ । ବିସ୍ତୃତ ପୋଖରୀର ସ୍ଫଟିକ କାଚକେନ୍ଦ୍ ପାଣିରେ ବତକ, ହଂସ ଦଳର ସନ୍ତରଣ—ରୋହି, ଭାକୁର, କଳା-ବାଇଁଶି ଇତ୍ୟାଦି ପୋଷିଲା ସୁନ୍ଦର ମାଛ ଭେଳା ଭେଳା ଫୁଲ ପରି ପାଣିରେ ଭାସୁଥିବା ଦୃଶ୍ୟ ମନରେ ଏକ ନୂତନ ଆବେଗ ସୃଷ୍ଟି କରେ । ସବୁ ସେଇ କର୍ମବୀର ବନମାଳୀ ପଣ୍ଡିତଙ୍କ ଦାନ, ଆତ୍ମୋତ୍ସର୍ଗ ଓ ସ୍ୱେଚ୍ଛାକୃତ ଶ୍ରମର ପରିଣତି ।

ତାଙ୍କ ପାଖରେ ସବୁବେଳେ ସମାଜର ସବୁ ଗହଳି—ବିଭିନ୍ନ ସମସ୍ୟାରେ—ଅତି ଦୁଃସ୍ଥ ନିରିମାଖୀ ଗରିବ ଲୋକଠାରୁ ଆରମ୍ଭ କରି ସମ୍ଭ୍ରାନ୍ତ ଉଚ୍ଚ-ଶିକ୍ଷିତ ପ୍ରଗତିଶୀଳ ସମସ୍ତଙ୍କର ଭିଡ଼ ତାଙ୍କ ପାଖରେ । ଏ ଇଲାକାର ସେ ଯେମିତି ସବୁ କ୍ଷେତ୍ରରେ ସ୍ୱୟଂ-ସେବକ—ଉତ୍କଟ ଅନାଟନଗ୍ରସ୍ତ ମଫସଲ ଭୂଇଁର ଆଲୋକଦାତା ଓ ପଥ ପ୍ରଦର୍ଶକ—ସମସ୍ତଙ୍କର ମନର ମଣିଷ—ମୁକୁଟହୀନ ସମ୍ରାଟ । ସଦାସର୍ବଦା କର୍ମ-ଚଞ୍ଚଳ ଅବସ୍ଥାରେ ଆଖି ଆଗରେ କର୍ମ-କର୍ତ୍ତବ୍ୟର ଆହ୍ୱାନ । ବହୁ ଯୁଗର ବ୍ୟାଧିଗ୍ରସ୍ତ ଏକ ଚିରପଙ୍ଗା ସମାଜର ସଂସ୍କାର ପାଇଁ ସେ ଏକାନ୍ତ ସଂକଳ୍ପବଦ୍ଧ ପ୍ରଚୁର ଆଶାବାଦୀ ଭାବରେ । ସେ ମଣିଷ ତିଆରି କାରଖାନାର ମାଲିକ—ଷ୍ଟ୍ରେଟପିଲା ତାଙ୍କର କଞ୍ଚାମାଲ । ଏକ ସୁଦକ୍ଷ କୁମ୍ଭକାର ଭାବରେ ବ୍ୟକ୍ତିତ୍ୱର ପ୍ରଭାବ, ଶ୍ରମ ଏବଂ ନିଷ୍ଠା ପୁଞ୍ଜି ଧରି ସରଳ ତରଳ କୋମଳମତି ପିଲାମାନଙ୍କୁ ମଣିଷ କରି ଗଢ଼ିବେ, ଏହାହିଁ ତାଙ୍କର ସାଧନା । କାୟମନୋବାକ୍ୟରେ ପବିତ୍ରତା—ପ୍ରତି ମୁହୂର୍ତ୍ତରେ କର୍ତ୍ତବ୍ୟ ପାଇଁ ଡାକରା—ନିର୍ଦ୍ଦେଶ-ଆଦେଶ । ସେ ସମୟର କର୍ତ୍ତବ୍ୟ-ମୁଖର ଏପରି ଗୋଟିଏ ଅନାମଧେୟ ଛାତ୍ରାବାସ ସତେକି ଏକ ଋଷି ଆଶ୍ରମ । ସତେ ଯେପରି ସେ ହେଉଛନ୍ତି କେଉଁ ପୁରାଣ ଯୁଗର ରାଜା ମିଦାସ, ଯେ କି ତାଙ୍କର ସୁବର୍ଣ୍ଣ ସ୍ପର୍ଶରେ ସବୁ ସୁନା କରି ଦେଇ ପାରୁଥିଲେ ।

ମଳୟ ସ୍ପର୍ଶରେ ନିମ ଚନ୍ଦନ ବୃକ୍ଷରେ ରୂପାନ୍ତରିତ ହେଲା ପରି ପାଠପଢ଼ା-ନସ୍ତ ପଛ ବେଞ୍ଚର ମୋ ପରି କେତେଯେ ପିଲାଙ୍କ ଜୀବନରେ ଅଦ୍ଭୁତ ପରିବର୍ତ୍ତନ ଘଟିଚି, ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଜୀବନକୁ ସୂକ୍ଷ୍ମ ଅନୁଶୀଳନ କଲେ ଜଣା ପଡ଼େ ।

ସେ ସବୁବେଳେ କହନ୍ତି—

'Wealth lost, nothing lost,
Health lost, some thing lost
Character lost, every thing lost,

ତେଣୁ ଚାରିତ୍ରିକ ପବିତ୍ରତା ବା ନିର୍ମଳତା ପାଇଁ ସେ ସବୁବେଳେ ପରୋକ୍ଷ ଓ ପ୍ରତ୍ୟକ୍ଷ ଧ୍ୟାନ ଦିଅନ୍ତି । ଶିକ୍ଷାୟତନର ପିଲାମାନଙ୍କ ପ୍ରତି ଏକାନ୍ତ ଶ୍ରଦ୍ଧାଶୀଳ, ସ୍ନେହବତ୍ସଳ ଏବଂ କର୍ତ୍ତବ୍ୟର ଖିଲାପରେ ଅତିଶୟ ରୁଷ୍ଟ ଏବଂ ପ୍ରଭାବଶାଳୀ ପ୍ରଶାସକ ରୂପେ ସେ ପ୍ରତିଭାତ ହୁଅନ୍ତି ଯାହାକି ବିସ୍ମୃତ ହେବାର ନୁହେଁ ।

ଅନେକ ଦିନୁ ଶିକ୍ଷା ସମୟ ଅତିକ୍ରାନ୍ତ ହେଲେହେଁ ପରବର୍ତ୍ତୀ କର୍ମମୟ ଜୀବନରେ ତାଙ୍କର ସଂସ୍ପର୍ଶରେ ଆସିଥିବା ମୋ ପରି ଅନେକଙ୍କ ମନରେ ସେ ଏବେବି ଅବିସ୍ମରଣୀୟ—ଅବିନଶ୍ୱର ।

ତଟରାତ ଶାସନ
ଅସୁରେଶ୍ୱର
କଟକ



# ପଣ୍ଡିତେ ଓ ମୋର ଜୀବନ ପଥ

ଶ୍ରୀ ଶୁକଦେବ ସାହୁ

୧୯୩୪ ମସିହା କଥା । ୩ୟ ଶ୍ରେଣୀରେ ପଢ଼ୁଥାଏ । ମୋର କେତେକ ସାଥୀ ପିଲା ଅତି ଉତ୍ସାହରେ ନୂଆ ମାଇନର ସ୍କୁଲରେ ପଢ଼ିବା ପାଇଁ ସାର୍ଟିଫିକେଟ ନେଇ ଯାଉଥାନ୍ତି । ମାତ୍ର ମୋର ମନରେ ପାଠ ପଢ଼ା ପ୍ରତି ଆଗ୍ରହର ଆତିଶଯ୍ୟ ଥିଲେ ମଧ୍ୟ ପାରିବାରିକ ତଥା ଆର୍ଥିକ ଦୁରବସ୍ଥା ଯୋଗୁ ମାଇନର ପଢ଼ା ମୋ ପକ୍ଷେ ବାମନର ଚନ୍ଦ୍ରକୁ ହାତ ବଢ଼ାଇଲା ପରି ଥାଏ । ସମସ୍ତଙ୍କ ମୁହଁରୁ ଶୁଣା ଯାଉଥାଏ "ବନମାଳୀ ପଣ୍ଡିତେ ଗ୍ରାମର ଗ୍ରୁଡ଼ ଆସି ବେଳମାଳ ଦଣ୍ଡାରେ ମାଇନର ସ୍କୁଲଟିଏ ବସାଉଛନ୍ତି । ବାଉଁଶ ଛଣ ମାଟି ନିଜ କାନ୍ଧରେ ବୋହି, ମୁଣ୍ଡରେ ମାଟି ବୋହି ଘର ତିଆରି କାମରେ ଲାଗିଛନ୍ତି ।" ଘର ପାଖ ତ । ମଝିରେ ମଝିରେ ଦେଖିବାକୁ ଯାଉଥାଏ । ମନ ମଧ୍ୟରେ କେତେ ଆଶା ଓ ନିରାଶାର ଝଡ଼ ବହି ଚାଲିଥାଏ ।

ଦେଖେ ତ ବେଳମାଳ ଦଣ୍ଡା —ଯେଉଁବାଟେ ରାତି ତ ରାତି ଦିନବେଳେ ମଧ୍ୟ ଏକୁଟିଆ କେହି ଯିବାକୁ ସାହସ କରୁ ନଥିଲେ, ମଶାଣୀ ଭୂଇଁ ଖୋଳିଲେ ମଣିଷର ହାଡ଼ ବାହାରୁଥିଲା—ସେଠାରେ କେତେ ବଡ଼ ବଡ଼ ଘର ଦୁଇଟା କେତେ ଚଞ୍ଚଳ ଠିଆ ହୋଇ ଗଲାଣି । ଗୋଟାଏ ଘରେ ପାଠ ପଢ଼ା ହେବ, ଅନ୍ୟ ଘରଟି ବୋର୍ଡ଼ିଂ । ପଣ୍ଡିତଙ୍କ ସାଙ୍ଗକୁ ଆଉ କେତେ ଜଣ ସହଯୋଗୀ ଶିକ୍ଷକ ମଧ୍ୟ ମିଳିଗଲେ । ସ୍କୁଲର ନାମ ହେଲା "ଦୋହଲୀ ସହଯୋଗ ମଧ୍ୟ ଇଂରାଜୀ ବିଦ୍ୟାଳୟ" ଏବଂ ପରେ ପୁଣି ତାଙ୍କର ଉଦ୍ୟମରେ ଏହା ଏକ ପୂର୍ଣ୍ଣାଙ୍ଗ ହାଇସ୍କୁଲରେ ପରିଣତ ହୋଇ "ଦୋହଲୀ ମଡ଼େଲ ହାଇସ୍କୁଲ" ନାମରେ ହଜାର ହଜାର ଛାତ୍ରଙ୍କ ଜୀବନ ଗଠନ କରୁଅଛି ।

ମୋର ପ୍ରାତଃସ୍ମରଣୀୟ ବାଲ୍ୟଗୁରୁ ସ୍ୱର୍ଗୀୟ ବାଳକୃଷ୍ଣ ପଣ୍ଡା ସେତେବେଳେ ଥାନ୍ତି ଡାନପୁର ନି: ପ୍ରା: ବିଦ୍ୟାଳୟରେ "ବଡ଼ ମାଷ୍ଟ୍ରେ" ବା ହେଡ୍ ପଣ୍ଡିତେ । ଦିନେ ମୋତେ ପାଖକୁ ଡାକି ପଚାରିଲେ—ଆରେ, ପିଲାମାନେ ତ ବନମାଳୀ ପଣ୍ଡିତଙ୍କ ସ୍କୁଲରେ ପଢ଼ିବାକୁ ଯାଉଛନ୍ତି । ତୁ ଯିବୁକି ?

ଏହା ପଛରେ ଏକ ବିରାଟ ଇତିହାସ ଅଛି । ବାପା କଲିକତାରେ ଥିବା ବେଳେ ମୋର ବୋଉ ଦିନେ ମୋତେ ସାଙ୍ଗରେ ନେଇ ତାଙ୍କ ପାଖରେ ପହଞ୍ଚାଇ ମୋର ପାଠ ପଢ଼ାର ଦାୟିତ୍ୱ ତାଙ୍କୁ ଦେଇ ଆସିଲେ । ତାଙ୍କର ଉତ୍ସାହ ଓ ପ୍ରେରଣାରେ ମୁଁ ପିଲାଟିଦିନରୁ ନାନା ହସ୍ତକର୍ମ ତଥା କାଗଜ ଫୁଲ, ଖେଳନା ଇତ୍ୟାଦି ତିଆରି ଓ ବିକ୍ରୀ କରି ଯାହା ଦୁଇ ପଇସା ପାଏ, ସେଥିରେ ମୋର ପାଠ ପଢ଼ା ଖର୍ଚ୍ଚ ତୁଲାଇବା ସଙ୍ଗେ ସଙ୍ଗେ ଘର ପାଇଁ ମଧ୍ୟ ସାମୟିକ କିଛି ସାହାଯ୍ୟ କରେ । କାରଣ ମୋର ବାପା ଥିଲେ ଜଣେ ଦିନମଜୁରିଆ । ଦୈନିକ ଗଉଣୀଏ ଧାନ ବା ଦଶଟି ପଇସା ମଜୁରି । ବୋଉ ମୋର ଧାନ କୁଟି ଯାହା

ଶୃଙ୍ଖଳ ଗଣ୍ଡିଏ ଗଣ୍ଡିଏ ଆଣେ । ଏ ସବୁରେ ଆମର ସାତପ୍ରାଣୀ କୁଟୁମ୍ବଟି ଚଳୁ । ବଡ଼ ମାଷ୍ଟରଙ୍କ ପ୍ରଶ୍ନର ଉତ୍ତର ମୋତେ ଦେବାକୁ ପଡ଼ିଲା ନାହିଁ । ସେ ନିଜେ କହିଲେ, "ତୁ ଏବେ ଘରକୁ ଯାଇ ବୁଲିବୁ କାହିଁକି ? ଏଠାରେ ଆଉ ଗୋଟିଏ ବର୍ଷ ପଢ଼ୁଥା ।" ନୀରବ ସମର୍ଥନ ଜଣାଇ ଆଉ ଗୋଟିଏ ବର୍ଷ ସେଠାରେ କଟାଇଲି ଓ ବର୍ଷ ଶେଷରେ ସ୍କୁଲ ଛାଡ଼ି ଘରେ ରହିଲି ।

ସେତେବେଳେ ଜାନୁଆରି ମାସରୁ ଶିକ୍ଷା ବର୍ଷର ଆରମ୍ଭ ହେଉଥାଏ । ପାଠ ପଢ଼ା କଥା କେବଠାରୁ ମନରୁ ଗଲାଣି । ମାର୍ଚ୍ଚ ମାସ, ଦୋଳ ଯାତ୍ରା ତିନି ଦିନ ଥାଏ । ବଡ଼ ମାଷ୍ଟ୍ରେ ଡକାଇଛନ୍ତି ବୋଲି ଗୋଟିଏ ପିଲାଠାରୁ ଶୁଣିବା ମାତ୍ରେ ମନରେ ନାନା ପ୍ରକାର ଶଙ୍କା ଜନ୍ମିଲା । ବଡ଼ମାଷ୍ଟ୍ରଙ୍କୁ ତ ବଡ଼ ସ୍କୁଲରେ ପଢ଼ୁଥିବା ପିଲାମାନେ ମଧ୍ୟ ଡରନ୍ତି ଓ ବାଟ କାଟି ଚାଲି ଯାଆନ୍ତି, କାଳେ ହାବୁଡ଼େ ପଡ଼ିଗଲେ କଣ୍ଠ ପାଠ ପଚାରି ଦେବେ । ମୋର ସେ ଭୟ ନଥିଲା । କାରଣ ମୁଁ ତ ବଡ଼ ସ୍କୁଲରେ ପଢ଼ିବାର ସୁଯୋଗ ପାଇ ପାରିବି ନାହିଁ; ପୁଣି ମୁଁ ଭଲ ପଢ଼ୁଥାଏ ଏବଂ ଭଲ ହାତ କାମ କରୁଥାଏ ବୋଲି ତାଙ୍କର ପ୍ରିୟ ଛାତ୍ର ଥିଲି । ବଡ଼ ମାଷ୍ଟ୍ରଙ୍କ ଅନୁପସ୍ଥିତିରେ ବା କୌଣସି ଭଦ୍ର ଲୋକଙ୍କ ସହିତ ବଡ଼ମାଷ୍ଟ୍ରେ କୌଣସି କଥାବାର୍ତ୍ତା କରୁଥିବା ବେଳେ ପାଠ ପଢ଼ାଇବା ଭାର ମଧ୍ୟ ସେ ମୋ ଉପରେ ଦିଅନ୍ତି । ଯାହାହେଉ ମନ ମଧ୍ୟରେ ନାନା ପ୍ରଶ୍ନବାଚକ ଚିନ୍ତା ନେଇ ସେଠାରେ ପହଞ୍ଚିଲି । ମୋତେ ଦେଖିବାକ୍ଷଣି ଆଦେଶ ହେଲା "ମୁଁ ବନମାଳୀ ପଣ୍ଡିତଙ୍କ ସହିତ କଥାବାର୍ତ୍ତା କରୁଛି । ତୁ ଯା...ପଢ଼ିବୁ ।" ବହୁ ମୂଲ୍ୟବାନ ସମ୍ପଦ ପାଇଲେ ମନୁଷ୍ୟ ଯେଉଁଭଳି ଆନନ୍ଦ ଅନୁଭବ କରେ, ଠିକ୍ ସେହିପରି ଆନନ୍ଦ ମନରେ ଧାଇଁଲି ମାଇନର ସ୍କୁଲକୁ । ପଣ୍ଡିତଙ୍କୁ ଦେଖା କରିବାରୁ 'ତୋତେ ବାଳକୃଷ୍ଣ ମାଷ୍ଟ୍ରେ ପଠାଇଲେ କିରେ' ବୋଲି ପ୍ରଶ୍ନ ହେଲା ? ହଁ, ଭଣିଲି । ତାପର ଦିନ ଠାରୁ ସ୍କୁଲକୁ ଆସିଲି । ତିନି ମାସର ପାଠ, କଣ କରିବି ? ଦୁଇ ଦିନ ପରେ ଦୋଳ ଛୁଟି ହେଲା । ମୋର ଖେଳଣା ତିଆରି ଏବଂ ବିକ୍ରି ସାଙ୍ଗକୁ ତିନି ମାସର ପାଠ ପଢ଼ା ପୂରଣ କରିବା ଚିନ୍ତା ଲାଗିଥାଏ । ମାତ୍ର ପାଠ ପଢ଼ା ପାଇଁ ତ ପୁଣି ବହିପତ୍ର, କାଗଜ କଲମ ଇତ୍ୟାଦି ଦରକାର ! ପଣ୍ଡିତେ ତ କହିଛନ୍ତି ଦରମା ଛାଡ଼ ହେବ । ଅବଶ୍ୟ ବହିପତ୍ର କେତେ ଖଣ୍ଡ ମଧ୍ୟ ତାଙ୍କ ଠାରୁ ମିଳିଲା । ତଥାପି ସବୁଦିନିଆ ଗୋଟାଏ ରୋଜଗାର ତ ? ପାଠ ତ ପଢ଼ା ହେବ । ଦୋଳ ଯାତ୍ରା ଚାଲିଗଲେ ପୁଣି ଯାଇ ଦଣ୍ଡହିବ । ଯା ହେବାର ହେଉ, ଖେଳଣା ତିଆରି ଓ ବିକ୍ରୀ ଚାଲୁ । ଦିନେ ହଠାତ୍ ଖେଳଣା ଧରି ଯାତ୍ରାରେ ବିକ୍ରି କରୁ କରୁ ପଣ୍ଡିତଙ୍କ ହାବୁଡ଼େ ପଡ଼ିଗଲି । ଲଜ୍ଜାରେ ମୁହଁ ବୁଲାଇ ଚାଲିଗଲା ବେଳକୁ ପଛରୁ ଡାକ ଶୁଭିଲା—"ଶୁଣ, ଏ ଫୁଲ (ଖେଳଣା) କେତେ ପଇସା କରେ ? ତୁ କଣ ଏସବୁ ହାତରେ ତିଆରି କରୁଛୁ ?" କଣ ବା କହିବି ? ନୀରବରେ ରହିଲି । ସାଙ୍ଗରେ ଶ୍ରେଷ୍ଠ ଝିଅ କମ । ତା ପାଇଁ ଫୁଲଟିଏ ନେଇ ତାହା ତାଙ୍କୁ ଯେତେବେଳେ ଧରାଇ ଦେଲେ, ଗୋଟିଏ ପଇସା ଆଜି କ୍ଷତି ହୋଇଗଲା, ଏହି କଥା ହଠାତ୍ ମନକୁ ଆସିଗଲା । ମାତ୍ର ପଣ୍ଡିତେ ଯେତେବେଳେ ପଇସାଟିଏ ବଢ଼ାଇ ଦେଲେ, ମୁଁ ବି ଅଡୁଆରେ ପଡ଼ିଲି । ମାତ୍ର ତାଙ୍କର ଉତ୍ସାହ ଓ ପ୍ରେରଣାରେ ମୁଁ ପଇସାଟି ତାଙ୍କ ଠାରୁ ନ ନେଇ ରହି ପାରିଲି ନାହିଁ ।

ପାଠ ପଢ଼ା ତ ଚାଲିଥାଏ । ଶିକ୍ଷାକ୍ଷେତ୍ରରେ ତାଙ୍କର ଅନୁଭୂତି, ଶିକ୍ଷା ଦାନରେ ତାଙ୍କର ପାରଦର୍ଶିତା ତଥା ଅଙ୍କ ଓ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ସମସ୍ତଙ୍କୁ ମୁଗ୍ଧ କରିଥାଏ । ମୁଁ ଆଜି ଜଣେ ଶିକ୍ଷକ ହୋଇଥିଲେ ମଧ୍ୟ ତାଙ୍କର ଶିକ୍ଷା ଦାନ କଥା ମନେ ପଡ଼ିଲେ ନିଜକୁ ବହୁ ସମୟରେ ଲଜ୍ଜିତ ମନେକରେ । ଠକଦେବା ତାଙ୍କ ପାଖରେ ତ ଚଳିବ ନାହିଁ । "ଅଙ୍କ ଆସିଲା ନାହିଁ ? ଆଚ୍ଛା କେଉଁଠାଏ କରିଛୁ, ରଫ୍ ଖାତା ଆଣ । କେଉଁଠାରେ ବୁଝି ପାରିଲୁ ନାହିଁ," ଇତ୍ୟାଦି ପ୍ରଶ୍ନ ଦ୍ୱାରା ଛାତ୍ରର ଠକାମି ମନୋବୃତ୍ତିକୁ ଏଭଳି ଭାବରେ ସେ ବଦଳାଇ ପାରୁଥିଲେ ଯେ, ଆଜି ତାହା କପୋଳକଳ୍ପିତ ପରି ମନେହୁଏ ।

ପଣ୍ଡିତେ କେବଳ ସ୍କୁଲରେ ପଣ୍ଡିତେ ନୁହନ୍ତି— ପାଠୁଆ, ଦର ପାଠୁଆ, ପଣ୍ଡିତ, ମୂର୍ଖ, ଚାଷୀ ମୂଲିଆ, ସମସ୍ତଙ୍କ ପାଖରେ "ବନମାଳୀ ପଣ୍ଡିତେ" କିମ୍ବା "ପଣ୍ଡିତେ" ବୋଲି ପରିଚିତ । କାହାର ଜମିବାଡ଼ି ଅଡ଼ୁଆ ତୁଟୁନି, ପଣ୍ଡିତଙ୍କୁ ଡାକି ଆଣ; ଭାଇଭାଗ ହେବ ପଣ୍ଡିତଙ୍କୁ ଡାକ; ଜମିବାଡ଼ି ଗୋଳମାଳ, ପଣ୍ଡିତଙ୍କୁ ଡାକି ଆଣି ମାପ କରାଇ ଦେବା; କାହାର ପିଲା ବେଗରେ ପଢ଼ି ପଥି ପାଉନି—ପଣ୍ଡିତଙ୍କ ପାଖକୁ ଯାଅ । କାହାର ପୁଅ ପାଠ ପଢ଼ି ପାରୁନି— ପଣ୍ଡିତଙ୍କୁ କହ । ଏହିଭଳି ସେ ଅଞ୍ଚଳରେ ସତେ ଯେମିତି ପଣ୍ଡିତଙ୍କ ବିନା କୌଣସି କାମ ହୋଇ ପାରିବ ନାହିଁ ।

ଦକ୍ଷବ୍ରହ୍ମପୁର ମଠ ମହନ୍ତ ମରିବା ଉପରେ । କଣ ହେବ ? ଚେଲା ତ ନାହାନ୍ତି । ତେବେ କଣ ଠାକୁର କାମ ଚାଲିବ ନାହିଁ ? କାହିଁକି ପଣ୍ଡିତେ ପରା ଅଛନ୍ତି ? ମହନ୍ତ ପଣ୍ଡିତଙ୍କୁ ମଠର ଟ୍ରଷ୍ଟି କରାଇ ଦେଲେ । ମାତ୍ର ମଠ ଭିତରଟା ଯେ ଖାଲି ଫମ୍ପା । ଠାକୁରଙ୍କର ଦୋଳଯାତ୍ରା ଚାଲିବ କିପରି ? ଗହ୍ମା ଝୁଲଣ ହେବ କିପରି ? ଆରେ ଶୁକ, ତୁ ଶୋଲ ଫୁଲ କେତୋଟି କରି ଦେଇ ବିମାନଟି ସଜାଇ ଦେଇ ପାରିବୁ ? କାଗଜ ଫୁଲ କାଟି କୁଞ୍ଜ (ଝୁଲଣ) ଟା କରି ଦେଇପାରିବୁ ? ମନରେ ସେତେବେଳେ ଯେ କି ଆନନ୍ଦ, ସେକଥା ବର୍ଣ୍ଣନା କରିବା ମୋ ପକ୍ଷେ ସମ୍ଭବପର ନୁହଁ । ଯାହା ହେଉ ମୋର ମାଇନର ପାଠ ପଢ଼ା ଚାରିବର୍ଷ ମଧ୍ୟରେ ଠାକୁରଙ୍କର ସେତକ କାମ କରି ଚାଲିଲି ଏବଂ ସେ ବାବଦ କିଛି କିଛି ଅଧିକା ପଇସା ମଧ୍ୟ ପାଇଲି ।

ଚତୁର୍ଥ ବର୍ଷ, ଟେଷ୍ଟ ପରୀକ୍ଷା ସରିଲା । କେନ୍ଦ୍ରାପଡ଼ା ସେଣ୍ଟରରେ ପରୀକ୍ଷା ଦେବାକୁ ଯିବାକୁ ହେବ । ସେତେବେଳେ ବର୍ତ୍ତମାନର ମାଟ୍ରିକ ପରୀକ୍ଷା ପରି ପରୀକ୍ଷା ଥାଏ । ତେଣୁ ମୁଣ୍ଡରେ ବଡ଼ ଚିନ୍ତା ଅର୍ଥ କେଉଁଠୁ ଆଣିବି ? ଦିନେ ସକାଳୁ ପହଞ୍ଚିଲି ପଣ୍ଡିତଙ୍କ ପାଖରେ । ଦୁଃଖ ଜଣାଇଲି । ମଞ୍ଜୁର ହେଲା ମୋତେ ଫ୍ରିରେ ନିଆଯିବ । ପାଠ ପଢ଼ା ମଝିରେ ରାତିରେ ବୋର୍ଡିଂକୁ ଆସି ପିଲାମାନଙ୍କ ସାଙ୍ଗରେ ପଢ଼ିବା ଓ ମଝିରେ ମଝିରେ ବୋର୍ଡିଂରେ ଗଣ୍ଡିଏ ଗଣ୍ଡିଏ ଖାଇବାର ସୁଯୋଗ ମଧ୍ୟ ମିଳିଥାଏ । ବର୍ତ୍ତମାନ ପରୀକ୍ଷା ଦେବା ଚିନ୍ତାରୁ ମଧ୍ୟ ମୁକ୍ତ ମିଳିଲା । ପରୀକ୍ଷା ଦେଇ ଆସିବା ପରଦିନ ପଦ୍ମଶ୍ରୀ ସ୍ୱର୍ଗୀୟ ଭିକାରୀ ବାବୁଙ୍କ ପୁଅଙ୍କ ସହିତ ତାଙ୍କ "ପୁଅର ଇଣ୍ଡଷ୍ଟ୍ରୀ" କୁ ଶିକ୍ଷା ଲାଭ ପାଇଁ ଚାଲି ଆସିଲି । ପରେ ସେତେବେଳର "ମଧୁସୂଦନ ଗ୍ରାମୋଦ୍ୟୋଗ ମନ୍ଦିର"ରେ ପୁଣି ତାଲିମ ପାଇଁ ଭର୍ତ୍ତି ହେଲି । ସେଠା ପରିଚାଳକ ଶ୍ରୀଯୁକ୍ତ ସାଧୁ ଚରଣ ନାୟକଙ୍କର ପ୍ରାର୍ଥନାତ୍ମକ ଭାଷଣ ତଥା ଦେଶ-ପ୍ରେମରେ ଏପରି ମୁଗ୍ଧ ହେଲି ଯେ ଟ୍ରେନିଂ ସରିବା ଦିନ 'ବ୍ୟକ୍ତିଗତ ସତ୍ୟାଗ୍ରହ' ପାଇଁ ଜିଲ୍ଲା କଲେକ୍ଟରଙ୍କୁ ନୋଟିସ ଦେଇ ଘରକୁ ଫେରିଲି । ମାତ୍ର ଦୁଇଦିନ ପରେ ସତ୍ୟାଗ୍ରହ କରିବି । କଣ କରିବି ? କିଏ ମୋତେ ସାହାଯ୍ୟ କରିବ ? ମୋର ତ କେହି ପରିଚିତ ଲୋକ ନାହାନ୍ତି । ପୁଣି ସରକାରଙ୍କ ବିରୁଦ୍ଧରେ । ଯୁଦ୍ଧ ବିରୁଦ୍ଧରେ ମୁଁ ସତ୍ୟାଗ୍ରହ କରିବି । ଏହି ଚିନ୍ତାରେ ଗୋଟିଏ ଦିନ କଟାଇ ପରଦିନ ସକାଳୁ ପଣ୍ଡିତଙ୍କ ଠାରୁ ଡାକରା ପାଇ ଗଲି । ଏ କଣ ! ଗୋଟାଏ ବିରାଟ ଭୋଜିର ଆୟୋଜନ । ପୁଣି ତା ପଛକୁ ଗୋଟାଏ କୀର୍ତ୍ତନ ମଣ୍ଡଳୀ ଏବଂ ବିରାଟ ଜନସମାଗମ । ପଣ୍ଡିତଙ୍କ ଉଦ୍ୟମରେ ଏସବୁ ଚାଲିଥାଏ । ମୋତେ ବିରାଟ ଶୋଭାଯାତ୍ରା ମଧ୍ୟରେ ବାଟ କଢ଼େଇ ଚାଲିଥାନ୍ତି ମୋର ଗୁରୁ, ପଥ ପ୍ରଦର୍ଶକ ଓ ଜୀବନର ଗତିପଥ ପରିବର୍ତ୍ତନକାରୀ ପଣ୍ଡିତ ମହାଶୟ । ଚାନ୍ଦୋଳ ହାଟରେ ସତ୍ୟାଗ୍ରହ କରି ପୋଲିସ କର୍ତ୍ତୃକ ଗିରଫ ହେଲି । ମୋର ଗୁରୁଜୀ ହସ ହସ ବଦନରେ ମୋତେ ବିଦାୟ ଦେଇ ଚାଲି ଆସିଲେ ।

'ବ୍ୟକ୍ତିଗତ ସତ୍ୟାଗ୍ରହ' ପରେ 'ଭାରତ ଛାଡ଼' ଆନ୍ଦୋଳନ । ଦୀର୍ଘ ୩ ବର୍ଷ କାରାବରଣ ମଧ୍ୟରେ ବହୁ ନେତା ଓ ଦେଶସେବକଙ୍କ ସହିତ ପରିଚୟ ପରେ କାରାମୁକ୍ତ । ଗାନ୍ଧିଜୀଙ୍କର ପରମ ଶିଷ୍ୟ ଉତ୍କଳର ତ୍ୟାଗର ପ୍ରତିମୂର୍ତ୍ତି ପଣ୍ଡିତ ଗୋପବନ୍ଧୁଙ୍କ ସ୍ଥାନ ପୂରଣ କରିଥାନ୍ତି ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ । ଆଚାର୍ଯ୍ୟ

ହରିହର ଦାସ, କୃପାସିନ୍ଧୁ ହୋତା ପ୍ରମୁଖ ବରିଷ୍ଠ ଗାନ୍ଧୀବାଦୀମାନଙ୍କ ସହିତ କାରାଗାରରେ ଦୀର୍ଘଦିନ ରହିବାର ସୁଯୋଗ ଲାଭ କରି ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମରେ ଅଧିକ ଆଗ୍ରହ ଜନ୍ମିଥାଏ । ବରି ରାମଚନ୍ଦ୍ରପୁର ମୌଳିକ ସ୍କୁଲରେ କାମ କରୁଥିବା ବେଳେ ଦିନେ ପଣ୍ଡିତ ହୋତା ମହାଶୟଙ୍କର ଏକ ଅସବର୍ଣ୍ଣ ବିବାହ ପ୍ରସ୍ତାବରେ ରାଜି ହୋଇଗଲି । ମାତ୍ର ମୋତେ ଏ ଦିଗରେ ସାହାଯ୍ୟ କରିବ କିଏ ? ଗାଁକୁ ଆସିଲି । ପଣ୍ଡିତଙ୍କ ପାଖକୁ ଧାଇଁ ଯାଇ ମୋର ପ୍ରସ୍ତାବ ଆଗତ କଲି । ପଣ୍ଡିତେ ବର ପିତା ରୂପେ ଯାଇ ମୋତେ ବିବାହ ବେଦିରେ ବସି ବିବାହ ଦେଲେ । ଆଗରୁ ତ ଶିକ୍ଷା ଗୁରୁ ଥିଲେ । ବର୍ତ୍ତମାନ ପିତାଙ୍କ ସ୍ଥାନ ମଧ୍ୟ ଗ୍ରହଣ କଲେ । ବିବାହ ପରେ ମୋ ଘରେ ପୁଣି ଏକ ଭୋଜିର ଆୟୋଜନ । ସବୁ ଖର୍ଚ୍ଚ ପଣ୍ଡିତେ କଲେ । ତା ପରଠାରୁ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ପରାମର୍ଶ, ପ୍ରେରଣା ଓ ଉତ୍ସାହ ମୋତେ ଉନ୍ନତି ପଥରେ ଅଗ୍ରସର କରାଇଲା ।

ମାଇନର ପାସ କରି ଖଣ୍ଡିଏ ଗ୍ରେଟକାଟିଆ ସରକାରୀ ଚାକିରି କରିଥିଲି, ମଝିରେ ମଝିରେ ତାଙ୍କର ପ୍ରେରଣା ପାଇ ଘରୋଇ ଭାବରେ ମାଟ୍ରିକ, ବି. ଟି. ଆଇ, ଏ, କୋବିଦ, ପୁଣି ବି. ଏ. ପରୀକ୍ଷା ଦେଲି । ମୋ ପ୍ରତି ତାଙ୍କର ଆଶୀର୍ବାଦ ମୋର ଶିକ୍ଷାଲାଭରେ ଅଧିକରୁ ଅଧିକ ଉତ୍ସାହିତ କଲା । କ୍ରମେ ତାଙ୍କର ମାଇନର ସ୍କୁଲଟି ହାଇସ୍କୁଲରେ ପରିଣତ କରି ସାରିବା ପରେ ସମଗ୍ର ଶିକ୍ଷକ ସମାଜର ଉନ୍ନତିକଳ୍ପେ ସେ ବୋଧହୁଏ କ୍ଷୁଦ୍ର ପରିସର ଛାଡ଼ି ଏକ ବୃହତ୍ତ ପରିସର ମଧ୍ୟକୁ ବାହାରି ଆସିଲେ । ତାଙ୍କର ସଂପାଦନାରେ ପ୍ରକାଶ ପାଉଥିବା "ଶିକ୍ଷକ ଦର୍ପଣ"ରେ ମୋର ଜୀବନୀ ତଥା ସାଧନା ସଂପର୍କରେ ସେ ୨ । ୩ ଥର ପ୍ରକାଶ କରିବା ଫଳରେ ମୋର ଉତ୍ସାହ ଦିନକୁ ଦିନ ବଢ଼ିବାରେ ଲାଗିଲା ।

ମୁଁ ବର୍ତ୍ତମାନ ଆଦିବାସୀ ବିଭାଗ ଦ୍ୱାରା ପରିଚାଳିତ ଗୋଟିଏ ଆଶ୍ରମ-ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱରେ ଥାଇ ମଧ୍ୟ ତାଙ୍କଠାରୁ ଯେଉଁ ଉପଦେଶ ଓ ପ୍ରେରଣା ମନ ପାଏ, ସେଥିରେ ମୋର କର୍ମପ୍ରବଣତା ବହୁ ଗୁଣରେ ବର୍ଦ୍ଧିତ ହୋଇଯାଏ ।

ଆଜି ମନେ ପଡ଼େ, ୨୫ ବର୍ଷ ବୟସରୁ ବିପତ୍ନୀକ ହୋଇ, ଏକମାତ୍ର କନ୍ୟାର ଲାଳନ ପାଳନ ଓ ଶିକ୍ଷାର ଭାର ବହନ କରି ନାନା କ୍ଷେତ୍ରରେ ସେ ଯେଉଁଭଳି ସାହସିକତା, ନିର୍ଭୀକତା, କର୍ମତତ୍ପରତା ଏବଂ ସାଂଗଠନିକ କ୍ଷେତ୍ରରେ ପାରଦର୍ଶିତା ଦେଖାଇ ଆସିଛନ୍ତି, ତାହା କ୍ୱଚିତ ଲୋକଙ୍କଠାରେ ଦେଖିବାକୁ ମିଳେ । କେବଳ ସେତିକି ନୁହେଁ । ସର୍ବଦା କର୍ମରତ ଥାଇ ମଧ୍ୟ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅବଦାନ କମ୍ ନୁହେଁ । ପାଠ୍ୟ ପୁସ୍ତକ, ଶିଶୁ ସାହିତ୍ୟ ଇତ୍ୟାଦି ଲେଖି ସେ ମଧ୍ୟ ରାଜ୍ୟ ତଥା ରାଷ୍ଟ୍ରପତି ପୁରସ୍କାର ଲାଭ କରିବା ପର୍ଯ୍ୟନ୍ତ ସୌଭାଗ୍ୟର ଅଧିକାରୀ ହୋଇ ପାରିଛନ୍ତି । ଆଜି ୭୯ ବର୍ଷ ବୟସରେ ତାଙ୍କର ଅକ୍ଳାନ୍ତ ପରିଶ୍ରମ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଯେ କ୍ଷିପ୍ରଗତିରେ ପଦଚାଳନା କରି ଯେତେ ଦୂର ଯାଇପାରୁଛନ୍ତି କୌଣସି ଏକ ଯୁବକ ପକ୍ଷରେ ମଧ୍ୟ ତାହା ସଂଭବପର ହୋଇ ପାରୁ ନାହିଁ ।

ଶେଷରେ ଗୁରୁଜୀଙ୍କର ଆଶୀର୍ବାଦ କାମନା କରି ତାଙ୍କର ଦୀର୍ଘ ଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ଜଣାଉଛି ।

● ପ୍ରଧାନ ଶିକ୍ଷକ
ବଇଡା ହାଇସ୍କୁଲ
ଫୁଲବାଣୀ



# ସ୍ମୃତି—ଏକ ପ୍ରୋଜ୍ଜ୍ୱଳ ଦୀପଶିଖାର

**ଶ୍ରୀ ନବକିଶୋର ଦାସ**

"ଅଭୟଂ ସତ୍ତ୍ୱସଂଶୁଦ୍ଧି ର୍ଜ୍ଞାନଯୋଗ ବ୍ୟବସ୍ଥିତିଃ
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବଂ ।"

ଚିତ୍ତ ଯା'ର ଭୟଶୂନ୍ୟ, ଉନ୍ନତ ଯା'ର ଜ୍ଞାନ-ଦୀପ୍ତ ମସ୍ତକ, ତ୍ୟାଗମନ୍ତ୍ରରେ ଯେ ଆଜୀବନ ଦୀକ୍ଷିତ, ସେଇ ପୁରୁଷ ପୁଙ୍ଗବ, ଆଚାର୍ଯ୍ୟ ଆସନରେ ଅଧିଷ୍ଠିତ, ଚିର ନମସ୍ୟ ବନମାଳୀ ବ୍ରହ୍ମଚାରୀଙ୍କ ବ୍ୟକ୍ତିତ୍ୱରେ ଶ୍ରୀମଦ୍ ଭଗବଦ୍ ଗୀତାରୁ ଉଦ୍ଧୃତ ନିର୍ଭୀକତା, ଚିତ୍ତଶୁଦ୍ଧି, ଆତ୍ମଜ୍ଞାନ, କର୍ମଯୋଗରେ ନିଷ୍ଠା, ଶାସ୍ତ୍ରଅଧ୍ୟୟନ, ସରଳତା ପ୍ରଭୃତି ବହୁ ଦୈବୀ ସମ୍ପଦ ଗୁଣ ଯେ ପ୍ରତିଫଳିତ, ତାଙ୍କର ଗୁଣମୁଗ୍ଧ ବ୍ୟକ୍ତି ମାନେହିଁ ଦ୍ୱିଧାହୀନ ଭାବରେ ତାହା ସ୍ୱୀକାର କରିବେ ।

କର୍ମଯୋଗୀ ବ୍ରହ୍ମଚାରୀଙ୍କର ଜୀବନ୍ତ ବିଶ୍ୱାସ— 'କର୍ମହିଁ ବ୍ରହ୍ମ ।' ସେଇ କର୍ମ-ବ୍ରହ୍ମର ଉପାସନା ତାଙ୍କ ଜୀବନର ଏକମାତ୍ର ବ୍ରତ । ନିଃସ୍ୱାର୍ଥ କର୍ମ ମାଧ୍ୟମରେ ଜନସମାଜର ସେବା କରିବାରେ ସେ ନିଜକୁ ଏକାବେଳକେ ଉତ୍ସର୍ଗ କରି ଦେଇଛନ୍ତି । ସେଇ ନିବେଦିତ ପ୍ରାଣର କର୍ମ ବିହ୍ୱଳତା, କର୍ମ କଠୋରତା, କର୍ମ-ତତ୍ପରତା ଓ କର୍ମ ପ୍ରବଣତା ଯେ ଦେଖିଛି, ଅନୁଭବ କରିଛି, ସେ ଅଭିଭୂତ ହୋଇ ପଡ଼ିଛି । ଆଜିର ଏଇ ଅଶୀତ୍ତୁରିତମ ପରିଣତ ବୟସରେ ମଧ୍ୟ ବାର୍ଦ୍ଧକ୍ୟକୁ ଭ୍ରୂକ୍ଷେପ ନକରି ଯୁବ ଜନୋଚିତ ଉନ୍ମାଦନାରେ ଯେପରି ସେ କର୍ମରତ ଥାନ୍ତି, ସେଥିରୁ ମନେହୁଏ, କର୍ମବ୍ରହ୍ମ ଭିତରେ ପରମବ୍ରହ୍ମଙ୍କର ସାକ୍ଷାତ ଉପଲବ୍ଧି ପାଇଁ ସେ ସତତ ବ୍ୟାକୁଳ ।

ଏଭଳି ଏକ ମହାନ୍ ବ୍ୟକ୍ତିଙ୍କର ସାନ୍ନିଧ୍ୟ ଲାଭ କରିବାର ସୌଭାଗ୍ୟ ମତେ ମିଳିଥିଲା ଗତ ସାତବର୍ଷ ତଳେ ଯେତେବେଳେ ମୁଁ ଘଟଣା ଚକ୍ରରେ ଅବା ନିୟତିର ନିର୍ଦ୍ଦେଶରେ କେନ୍ଦୁଝର ସ୍ୱାମପାଟଣା ଜି. ଏନ୍. ହାଇସ୍କୁଲରୁ ସ୍ଥାନାନ୍ତରିତ ହୋଇ ତାଙ୍କର ପ୍ରତିଷ୍ଠିତ ସେଇ ତ୍ୟାଗପୂତ ଆଦର୍ଶ ବିଦ୍ୟାଳୟ ଦୋହଲି ମଡ଼େଲ ଉଚ୍ଚଶିକ୍ଷାନୁଷ୍ଠାନରେ ପ୍ରଧାନ ଶିକ୍ଷକ ଭାବରେ ଯୋଗ ଦେଇଥିଲି ।

ବିଦ୍ୟାଳୟରେ ପହଞ୍ଚିବା ପରେ ତାର ପରିବେଶ ଓ ଆବହାଓ୍ୱା ମୋତେ ବେଶ ମୁଗ୍ଧ କଲା । ଛାତ୍ରମାନଙ୍କୁ ଅଧ୍ୟୟନ ଓ ଅଧ୍ୟାପନା କାର୍ଯ୍ୟରେ ବ୍ୟସ୍ତ ଥାଇ ମଧ୍ୟ ମୁଁ ମନେ ମନେ ଖୋଜୁଥାଏ ସେ ଅନୁଷ୍ଠାନର ପ୍ରାଣ-ପ୍ରତିଷ୍ଠାତାଙ୍କୁ । ନାରିକେଳ-ଆମ୍ରକୁଞ୍ଜ-ପରିବେଷ୍ଟିତ ବିଦ୍ୟାଳୟର ମନୋଜ୍ଞ ପରିବେଶ ପଛରେ କେଉଁ ସ୍ରଷ୍ଟାର ବ୍ୟକ୍ତିତ୍ୱ ନିହିତ, କାହାର ତ୍ୟାଗନିଷ୍ଠ ଜୀବନାଦର୍ଶ ଏଥିରେ ପ୍ରତିଷ୍ଠିତ, ଏହି ପ୍ରଶ୍ନ ମୋ ମନକୁ ଆଲୋଡ଼ିତ କରୁଥାଏ ।

ଯେତେବେଳକୁ ପୂଜ୍ୟ ବନମାଳୀ ବାବୁଙ୍କ ସମ୍ପର୍କରେ ମୁଁ କିଛି ଜାଣି ନ ଥାଏ । ତାଙ୍କୁ ଚିହ୍ନି ନ ଥାଏ । କିନ୍ତୁ ତାଙ୍କ ବ୍ୟକ୍ତିତ୍ୱରେ ପ୍ରଶଂସ-ମୁଖର ବହୁ ବ୍ୟକ୍ତିଙ୍କ ଠାରୁ ତାଙ୍କର ଆଦର୍ଶ ଶିକ୍ଷକତା, ତ୍ୟାଗ-ସର୍ବସ୍ୱ ଜୀବନ, ନାନା ଲୋକହିତକର କାର୍ଯ୍ୟରେ ତାଙ୍କର ବଳିଷ୍ଠ ନେତୃତ୍ୱ, ବିଶେଷକରି ଦୋହଲି ମଡ଼େଲ ହାଇସ୍କୁଲ ସ୍ଥାପନ ଓ ନିର୍ମାଣ ତାର ପୂର୍ଣ୍ଣାଙ୍ଗ

ପ୍ରାପ୍ତି ତଥା ସାମୂହିକ ବିକାଶ ଦିଗରେ ତାଙ୍କର ଉତ୍ସର୍ଗୀକୃତ ଜୀବନର କାହାଣୀ ଶୁଣି ଶୁଣି ମୁଁ ଉଦ୍‌ବୁଦ୍ଧ ହେବା ସଙ୍ଗେ ସଙ୍ଗେ ସେଇ ମହାନ୍ ବ୍ୟକ୍ତିଙ୍କର ଦର୍ଶନାଭିଳାଷରେ ଉତ୍କଣ୍ଠିତ ହୋଇ ପଡ଼ିଲି ।

କଥାରେ ଅଛି—'ଏ ମନ ଭାବୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା ।' ଦିନେ ବିଦ୍ୟାଳୟର ଗୋଟିଏ ପ୍ରକୋଷ୍ଠରେ ବସି ଶ୍ରେଣୀକକ୍ଷ ଅଧ୍ୟାପନା ନିମିତ୍ତ ପ୍ରାକ୍-ପ୍ରସ୍ତୁତିରେ ଥିଲିବେଳେ ଜଣେ ପତ୍ରବାହକ ହଠାତ ଗୋଟିଏ ଚିଠି ଆଣି ମତେ ବଢ଼ାଇଦେଲେ । ମୁଁ ବିସ୍ମିତ ହୋଇ ପଚାରିଲି—"କାହାର ଏ ଚିଠି ?" ଆଗନ୍ତୁକ କହିଲେ—"ଏ ଚିଠିଟି ବନମାଳୀ ବ୍ରହ୍ମଚାରୀଙ୍କର ।"

ଚିଠିଟି ଖୋଲି ପଢ଼ିଲି । ଚମତ୍କାର ଅକ୍ଷର, ଚମତ୍କାର ଶୈଳୀରେ ଲେଖା । ସେ କ୍ଷୁଦ୍ର ପତ୍ରଟି ହୃଦୟର ଉଷ୍ମତାରେ ଭରା ଅଭିନନ୍ଦନ ଘେନି ଆସିଛି । ଦେଖା-ନାହିଁ, ପରିଚୟ ନାହିଁ । ତଥାପି ଏକ ଅପରିଚିତ ଅଜ୍ଞାତକୁ ଆପଣାର କରିନେବାର ଯେଉଁ ସହୃଦୟତାର ଓ ଯେଉଁ ମହନୀୟତାର ସ୍ପର୍ଶ ମୁଁ ପାଇଲି, ତାଙ୍କର ଅଦର୍ଶନରେ ଓ ଅବର୍ତ୍ତମାନରେ, ଆପେ ଆପେ ମୋର ମସ୍ତକ ନଇଁ ଗଲା ତାଙ୍କର ପାଦତଳେ ।

କିଛିଦିନ ରହଣୀପରେ ସ୍କୁଲର ଉନ୍ନୟନ ସମ୍ପର୍କରେ ବନମାଳୀ ବାବୁଙ୍କର ପରାମର୍ଶ ଆବଶ୍ୟକ ପଡ଼ିଲା । ସେଇ ପ୍ରସଙ୍ଗରେ କଟକ ଗଲି । ସେତେବେଳକୁ ନିମ୍ନ-ମାଧ୍ୟମିକ କାର୍ଯ୍ୟାଳୟ ରାଜାବଗିଚାରେ ଥାଏ । ରାତିରେ ସେଇ ଅଫିସିରେ ପହଞ୍ଚି ଦେଖେ ତ ପେଟ୍ରୋମାକ୍ସ ଲାଇଟ ଜାଳି ବନମାଳୀ ବାବୁ କ'ଣ ବସି ଲେଖାଲେଖି କରୁଛନ୍ତି ।

ମୁଁ କହିଲି—"ଆଜ୍ଞା, ପ୍ରଣାମ ?"

"ଆପଣ କିଏ ?"

ପରିଚୟ ପାଇଲା ମାତ୍ରେ ପ୍ରତି ନମସ୍କାର ଜଣାଇ ସହାସ୍ୟ ବଦନରେ ଉଠିଆସି ମତେ ଧରି ନେଇ ପାଖରେ ବସାଇଲେ । ସେ କି ହାର୍ଦ୍ଦିକ ସ୍ନେହବୋଳା କେତେ ପ୍ରଶ୍ନ—କ'ଣ ଖାଇଛନ୍ତି ? କେତେବେଳକୁ ଆସିଲେଣି ? ଆଗ କିଛି ଖାଇ ନିଅନ୍ତୁ, ତାପରେ କଥାଭାଷା ହେବା । ସେଇଆ ହେଲା । ତାପରେ ଚାଲିଲା ଆଳାପ ଆଲୋଚନା ବିଭିନ୍ନ ବିଷୟକୁ କେନ୍ଦ୍ର କରି ଦୀର୍ଘ ରାତି ପର୍ଯ୍ୟନ୍ତ ।

## ସେ ପ୍ରେରଣାର ଉତ୍ସ

ସୌହାର୍ଦ୍ଦ୍ୟପୂର୍ଣ୍ଣ, ପ୍ରାଣଖୋଲା, ସେଇ ଆଲୋଚନା ଭିତରେ ସ୍ୱନାମଧନ୍ୟ ବ୍ରହ୍ମଚାରୀଙ୍କର ବହୁମୁଖୀ ପ୍ରତିଭାର ଆଭାସ ପାଇ ନିଜକୁ ଧନ୍ୟ ମନେ କଲି । ସେ କିପରି ଏକାଧାରରେ ଜଣେ ଲବ୍‌ଧ-ପ୍ରତିଷ୍ଠ ସାହିତ୍ୟିକ, ବିଶେଷକରି ଶିଶୁ ସାହିତ୍ୟ ରଚନାରେ ତାଙ୍କର ଉଲ୍ଲେଖନୀୟ ଅବଦାନ, 'ଗୁଣ ଦର୍ପଣର' ଲେଖକ ଭାବରେ ବିବେକାନନ୍ଦ, ପରମହଂସ, ନେପୋଲିଅନ, ଗାନ୍ଧୀ ଓ ଗୋପବନ୍ଧୁ ପ୍ରମୁଖଙ୍କ ଆଦର୍ଶର ଏକନିଷ୍ଠ ପୂଜାରୀ, ସମାଜ ସଂସ୍କାରକ, ଜାତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଅଗ୍ରଣୀ ଶିକ୍ଷକ, ଜନ ସେବାରେ ବ୍ରତୀ ଜଣେ କରିତ୍‌କର୍ମା ବ୍ୟକ୍ତି, ରଚନାତ୍ମକ ଓ ସାଂଗଠନିକ କାର୍ଯ୍ୟରେ ଅପୂର୍ବ ଚିନ୍ତାଶୀଳତା, ଉଚ୍ଚ କୋଟିର ଶିକ୍ଷକ ଓ ଚିନ୍ତା-ନାୟକ ଇତ୍ୟାଦି ଇତ୍ୟାଦି ବହୁଗୁଣ ସମ୍ପନ୍ନ ବ୍ୟକ୍ତି ଭାବରେ ସର୍ବତ୍ର ସମ୍ମାନିତ ଓ ପ୍ରଶଂସିତ—ଏହା ସବୁ ଉପଲବ୍‌ଧି କରି ସେଦିନ ସେ ପ୍ରତିଭା ନିକଟରେ ମନେ ମନେ ମୁଁ ବିନମ୍ର ପ୍ରଣତି ଜଣାଇ ବିଦାୟ ନେଲି !

ସାହିତ୍ୟପ୍ରାଣ ବ୍ରହ୍ମଚାରୀ ବାବୁ ସ୍କୁଲର ମୁଖପତ୍ର 'ପ୍ରଗତି' ପ୍ରକାଶ କରିବାରେ ମୋ ଉଦ୍ୟମକୁ ଉତ୍ସାହିତ କରିଥିଲେ ଓ ସେଇ ପତ୍ରିକାରେ 'ପ୍ରଗତି-ପ୍ରସୂତି-ପୀଠ' ଶୀର୍ଷକ ଗୋଟିଏ ଆତ୍ମଜୀବନୀ ମୂଳକ ଚମତ୍କାରପ୍ରଦ ଲେଖାଟି ଛପାଇଥିଲେ । ଗୁଣର ସମାଦର କରୁଥିବା ବ୍ରହ୍ମଚାରୀ ବାବୁ ମୋ ସମ୍ପର୍କରେ 'ମୋ ମନ କଥା' ଲେଖାରେ ଯେପରି ପ୍ରଶଂସା ବ୍ୟଞ୍ଜକ ଭାଷାରେ ଲେଖିଛନ୍ତି, ତାହା ମୋ ଭଳି ଜଣେ ନଗଣ୍ୟ ଶିକ୍ଷକ ପକ୍ଷରେ ଚିରସ୍ମରଣୀୟ ହୋଇ ରହିବ । ସେ ମୋର ଚିର ନମସ୍ୟ । ସେ ମୋ ଦୃଷ୍ଟିରେ ଚିରପୂଜ୍ୟ ଦେବତା ।

ମାତ୍ର ଦେଢ଼ବର୍ଷ ଚହଣୀ ଭିତରେ ଦୋହଲୀ ମଡ଼େଲ ହାଇସ୍କୁଲର ସର୍ବାଙ୍ଗୀନ ଉନ୍ନତିକଳ୍ପେ ଯେତେ ଯୋଜନା, ସଂଗଠନ, ପରିକଳ୍ପନା କରାଯାଇଥିଲା, ତାର ରୂପାୟନରେ ତାଙ୍କର ବିଜ୍ଞ ପରାମର୍ଶ, ଅଦମ୍ୟ ପ୍ରେରଣା, ବଳିଷ୍ଠ ନେତୃତ୍ୱ ନିହିତ । ସେଇ ନିରଳସ, ନିରହଙ୍କାର, ଅଭିମାନ ଓ ଦେବୋପମ ଗୁଣ ବିଶିଷ୍ଟ ବନମାଳୀ ବାବୁଙ୍କ ସଖ୍ୟ ଲଭିକରି ମୁଁ ନିଜକୁ ଭାଗ୍ୟବାନ ମନେ କରୁଥିଲି । ଅତୀତର ସ୍ନେହ ଆଳାପ, ହାସ୍ୟୋଜ୍ଜ୍ୱଳ ମୁଖର ମୃଦୁ ତିରସ୍କାର, ମନ୍ତବ୍ୟ, ପ୍ରଶଂସା ସବୁ କିଛି ମଧୁର ସ୍ମୃତି ବିଜଡ଼ିତ ହୋଇ ଅତୀତ ଆଜି ମୋ ପକ୍ଷରେ କେବଳ ଅବିସ୍ମରଣୀୟ ନୁହେଁ, ବିମଳ ଆନନ୍ଦର ଉତ୍ସ ।

ଦୁଃସ୍ଥ, ଅବହେଳିତ, ଲାଞ୍ଛିତ, ଶିକ୍ଷକ ସମାଜର ଏକମାତ୍ର ତ୍ରାଣକର୍ତ୍ତା ଭାବରେ ସମଗ୍ର ଓଡ଼ିଶାରେ ବ୍ରହ୍ମଋଷିଙ୍କର ଉଜ୍ଜ୍ୱଳ ଭାବମୂର୍ତ୍ତି ପ୍ରତିଭାତ ହୋଇ-ଅଛି ଓ ହୋଇଥିବ । ଅଗଣିତ ଅସହାୟ ନିପୀଡ଼ିତ ଶିକ୍ଷକର ଅନ୍ତରର ଦେବତା ଓ ମୁକ୍ତିଦାତା ରୂପେ ଯେ ନିତ୍ୟ ସ୍ମରଣୀୟ ଓ ବନ୍ଦନୀୟ, ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ ବେଳକୁ ବେଳ ପାଇ ମୁଁ ଅବାକ୍ ହୋଇଗଲି । ପରଦୁଃଖକାତର ଓ ସମ୍ବେଦନଶୀଳ ତାଙ୍କର ପ୍ରାଣ ଶିକ୍ଷକ ସମାଜ ଲାଗି ଅବାରିତ ଓ ଅବିରାମ ଭାବରେ ସଂଗ୍ରାମ ରତ । ତାଙ୍କର ସଂଗ୍ରାମୀ ଜୀବନର ବୈପ୍ଳବିକ ନେତୃତ୍ୱ ସେ ଦିନର ସେହି ନିରୀହ, ଶାନ୍ତ, ନିଷ୍କ୍ରିୟ, ଅଥର୍ବ, ଦୁର୍ବଳ ଶିକ୍ଷକ-ସମାଜକୁ ଯେପରି ଏକ ଅଭୂତପୂର୍ବ ଚେତନାରେ ଜାଗ୍ରତ କରାଇ ସମାଜ ଭିତରେ ଶିକ୍ଷକର ପ୍ରତିଷ୍ଠା, ଗୌରବ ଓ ବିପ୍ଳବାତ୍ମକ ଭୂମିକାକୁ ଏକ ଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ କରାଇ ଯାଇଛି—ତାହା ଦେଖିଲେ ବିସ୍ମୟାଭିଭୂତ ହେବାକୁ ପଡ଼େ ଓ ସେହି କ୍ରାନ୍ତିକାରୀ ବ୍ୟକ୍ତିତ୍ୱ ନିକଟରେ ସମଗ୍ର ଶିକ୍ଷକ ସମାଜ ଚିର ଋଣୀ ହୋଇ ରହିବାକୁ ଗୌରବ ଅନୁଭବ କରେ । ଅନ୍ୟାୟ ଦେଖିଲେ ସେ ଭୀମ ଭଳି ଭୟଙ୍କର ହୋଇ ଉଠନ୍ତି । ସେ ଭୀମ ରୂପ ଦେଖି ଆତଙ୍କିତ କିଏ ବା ନ ହେବ ? କିନ୍ତୁ ଅନ୍ୟପକ୍ଷରେ ତାଙ୍କର ଶାନ୍ତ-କୋମଳ ମଧୁମୟ ବାଣୀ ଶୁଣିଲେ କିଏ ବା ବିସ୍ମିତ ନ ହେବ ? ସତରେ ସେ ଏକ ଦିଗରେ ଭୀମକାନ୍ତ ଏବଂ ଅନ୍ୟଦିଗରେ କୋମଳ ମନର ଏକ ସ୍ନେହୀ ବ୍ୟକ୍ତି ।

ସେଇ ଦିଗ୍ ଦ୍ରଷ୍ଟା, ଅକୁତୋଭୟ ବ୍ୟକ୍ତିତ୍ୱ ଆଜି ଏକ ପ୍ରୋଜ୍ଜ୍ୱଳ ଦୀପଶିଖା । ସେହି ଜ୍ୱଳନ୍ତ, ପ୍ରଦୀପ୍ତ ଦୀପଶିଖାର ଝଲକରେ ଶିକ୍ଷକ ସମାଜ ସମ୍ମୁଖରେ ଉଦ୍ଭାସିତ ହୋଇ ଉଠିଛି ନୂତନ ଦିଗନ୍ତ—ଯେଉଁଠୁ ଆସୁଛି ଏକ ଚିରନ୍ତନ ସଂଗ୍ରାମର ଆହ୍ୱାନ—ତାଙ୍କରି ଭଳି ଜଣେ ମଣିଷ ପରି ମଣିଷ ହେବାକୁ—ମଣିଷ ପରି ବଞ୍ଚି ରହିବାକୁ—ପ୍ରାଚୀନ ଭାରତର ଆଧ୍ୟାତ୍ମିକ ଆଦର୍ଶରେ ଜୀବନକୁ ରୂପାୟିତ କରି ଆଧୁନିକ ବିଜ୍ଞାନ-ସମ୍ମତ ଏକ ନୂତନ ସମାଜ ପ୍ରତିଷ୍ଠା କରିବାକୁ ଏବଂ ଗୀତୋକ୍ତ ଜ୍ଞାନ, କର୍ମ, ଭକ୍ତି ସମନ୍ୱିତ ଏକ ଶ୍ରେୟସିକ ଅଭ୍ୟୁଦୟ ଆଣିବାକୁ—ଯାହାକି ଜ୍ଞାନଗରିଷ୍ଠ ବ୍ରହ୍ମଋଷିଙ୍କର ଆହ୍ୱାନ—ଏ ଯୁଗର ଆହ୍ୱାନ, ଯୁଗେ ଯୁଗେ ମହାମାନବଙ୍କର ଆହ୍ୱାନ ! ସେହି ଆହ୍ୱାନକୁ କିପରି ଆମେ ଶିକ୍ଷକ ସମାଜ ସମ୍ମୁଖୀନ ହେବା, ଯାହା ଫଳରେ ଆମେ ତାଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ ପୂଜା କରିପାରିବା ।

ସେ ବ୍ରହ୍ମଋଷି ଦୀପଶିଖା ଅନିର୍ବାଣ ହେଉ, ଏହାହିଁ କାମନା ।

## ସେ ଏକ ବିରାଟ ଅନୁଷ୍ଠାନ

ସମଗ୍ର ଉତ୍କଳର ଦୁର୍ଗତ ଶିକ୍ଷକ ସମାଜର ଅଧିନାୟକତ୍ୱ କରିବାରେ ବ୍ରହ୍ମଋଷିଙ୍କର ଅକୁତୋ-ଭୟତା, ତେଜସ୍ୱିତା, ସର୍ବୋପରି ନିଃସ୍ୱାର୍ଥତା ଓ ଆତ୍ମୋତ୍ସର୍ଗ ତାଙ୍କୁ ଏକ ବିରାଟ ଅନୁଷ୍ଠାନରେ ପରିଣତ କରି, ତାଙ୍କର ବ୍ୟକ୍ତିତ୍ୱକୁ ବହୁ ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ କରାଇପାରିଛି । ଶିକ୍ଷକ ମହାସଂଘର ସଭାପତି, ଶିକ୍ଷକ ସଂଘର ଅଧ୍ୟକ୍ଷ ଓ କର୍ଣ୍ଣଧାର ଭାବରେ କେବଳ ନୁହେଁ, ନେତୃତ୍ୱର ଅନ୍ୟ ଏକ ଜିଜ୍ଞାସା-ଦୃପ୍ତ ପରିପ୍ରକାଶ, ସେହି 'ଶିକ୍ଷକ ଦର୍ପଣ' ଭଳି ଶିକ୍ଷକ-ସମାଜର ମୁଖ ପତ୍ର ମାଧ୍ୟମରେ, ନିଜର ଶାଣିତ ଲେଖନୀ ତରବାରିରେ ଯେପରି ଶିକ୍ଷକ-ପୀଡ଼କ

ମାନଙ୍କର ଗାଳିଦାଦ୍ଧ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶିକ୍ଷକ ସମାଜର ନ୍ୟାୟସଙ୍ଗତ ଦାବୀକୁ ଅତି ଦୃଢ଼ କଣ୍ଠରେ, ବଜ୍ର ନିର୍ଘୋଷ ବାଣୀରେ ଘୋଷଣା କରି ଏକ ଶୃଙ୍ଖଳା ସୃଷ୍ଟି କରିଛନ୍ତି, ତାହା ଆଜି ପ୍ରତ୍ୟେକଙ୍କୁ ବିସ୍ମିତ କରି ଦେଇଛି । କଂସ ମନରେ କୃଷ୍ଣ ଯେପରି ବିଭୀଷିକା ଓ ଆତଙ୍କ ସୃଷ୍ଟି କରିଥିଲେ, ବନମାଳୀ ବ୍ରହ୍ମଗ୍ରନ୍ଥୀ ଆଜିର ସମାଜ ବିରୋଧୀ, ଦୁର୍ନୀତିଗ୍ରସ୍ତ, ନୀତିହୀନ ବ୍ୟକ୍ତିଙ୍କ ମନପ୍ରାଣରେ ସେହିପରି ଏକ ଆତଙ୍କ ସୃଷ୍ଟି କରି ପାରିଛନ୍ତି । ଆଜିର ଏହି ଅଧଃପତିତ ସମାଜ-ଜୀବନରେ ଯେଉଁ ଧର୍ମ ଗ୍ଲାନି ଦେଖା ଦେଇଛି, ଗୋଟିଏ ନୁହେଁ-ସହସ୍ର ବନମାଳୀ ବ୍ରହ୍ମଗ୍ରନ୍ଥୀ ରୂପୀ ବିପ୍ଳବୀ ଶିକ୍ଷକ-ଯୋଦ୍ଧା ବାହାରିବା ଅପରିହାର୍ଯ୍ୟ ମନେହୁଏ ।

ସେହି ଗୁଣ ବ୍ୟକ୍ତିତ୍ୱର ସଂସ୍ରବ, ସାନ୍ନିଧ୍ୟ ଓ ସୌହାର୍ଦ୍ଦ୍ୟ ଲାଭ କରିବାର ସୌଭାଗ୍ୟ ଓ ଗୌରବ ଏହି ମାନହୀନ ଅକିଞ୍ଚନ ନଗଣ୍ୟ ଶିକ୍ଷକର ଆସିଥିବାରୁ, ସେ ଆଜି ନିଜକୁ ବିଶେଷ କୃତଜ୍ଞ ମନେ କରୁଛି । ଶିକ୍ଷକ ସମାଜକୁ ନିର୍ଯ୍ୟାତନାର ତମସାରୁ ଟାଣି ଆଣି ତାଙ୍କୁ ମୁକ୍ତିର ଜ୍ୟୋତି ପ୍ରଦାନ କରିବାରେ ଯେଉଁ ପଥ ପ୍ରଦର୍ଶନ କରି ଐତିହାସିକ ନେତୃତ୍ୱ ନେଇଛନ୍ତି, ଏହାଠାରୁ ଆଉ ବେଶୀ ବା କ'ଣ ଆଶା କରାଯାଇପାରେ ? 'ସର୍ବେ ସୁଖିନୋ ଭବନ୍ତୁ'ର ପୂଜ୍ୟ ବନମାଳୀ ବ୍ରହ୍ମଗ୍ରନ୍ଥୀ ଶତାୟୁ ଭବନ୍ତୁ ।

● ପ୍ରଧାନ ଶିକ୍ଷକ
କୁଶଳେଶ୍ୱର ହାଇସ୍କୁଲ
କେନ୍ଦୁଝର



# ପଣ୍ଡିତଙ୍କୁ ମୁଁ ଯେମିତି ଜାଣେ

**ଶ୍ରୀ ଅଶୋକ କୁମାର ମହାନ୍ତ**

ମୋର ସେତେବେଳେ ତୃତୀୟ ଶ୍ରେଣୀ । ମୁଁ ବାଙ୍କିମୁଣ୍ଡାଇ ଉ: ପ୍ରା: ସ୍କୁଲରେ ପଢ଼ୁଥାଏ । ଶୀତ ଦିନ । ସକାଳୁଆ ସ୍କୁଲକୁ ଯାଇ ମାଷ୍ଟ୍ରଙ୍କ ପାଖରେ ଟିଉସନ ହେବା ଏକ ପ୍ରଚଳିତ ପ୍ରଥା ଥିଲା ପିଲାମାନଙ୍କ ମଧ୍ୟରେ । ସେଥିପାଇଁ ମାସକୁ ଟଙ୍କାଏ କି ଦି' ଟଙ୍କା ଦେବାକୁ ପଡ଼େ । କେହି କେହି ଦିଅନ୍ତି ନି । ଟଙ୍କା ଦିଅ କି ନ ଦିଅ, ସକାଳେ ଟିଉସନ ହେବାକୁ ପଡ଼ିବ ।

ଆମେ ସବୁ ସକାଳୁ ଧୋଡ଼େଇ ପୋଡ଼େଇ ହୋଇ ଅଙ୍କ ବହି ଖେଳଉଚୁ । ମାଷ୍ଟ୍ରେ ଆସି ନଥାନ୍ତି । ପଢ଼ାପଢ଼ିରେ ବେଶୀ ମନ ନ ଥାଏ, ଲେମ୍ବୁ ଗଛ, ପିଜୁଳି ଗଛରେ ଆଖି ।

କିଏ ଜଣେ ପିଲା ଆସି କହିଲା—ବନମାଳୀ ପଣ୍ଡିତେ ଆସୁଛନ୍ତି ।

ଆରେ ବାବାରେ !

ପିଜୁଳି ଗଛ, ଲେମ୍ବୁ ଗଛରୁ ଆଖି ଆପେ ଆପେ ଖସି ଆସି ବହିରେ ଲାଗି ରହିଲା । ଭଲ କରି ସଜାଡ଼ି ହୋଇ ବସିଲୁ । ପଣ୍ଡିତଙ୍କୁ ଆମର ଭାରି ଡର । ପ୍ରଶ୍ନ ପଚାରିବାରେ ସେ ଧୁରନ୍ଧର । କେଉଁ ଶ୍ରେଣୀରେ ପଢ଼ୁଛ କହି ସାରିଲା ପରେ ସେହି ଶ୍ରେଣୀର ପାଠ୍ୟ ସମ୍ବନ୍ଧୀୟ ପ୍ରଶ୍ନ । ସବୁଠାରୁ ଡର ବ୍ୟାକରଣ ଆଉ ମାନସାଙ୍କକୁ—ସେଥିରେ ତ ପଣ୍ଡିତେ ପକ୍କା । ତା ଛଡ଼ା ଆମ ନାଁ, ବାପା ନାଁ, ଘରଦ୍ୱାର ସବୁ ପଣ୍ଡିତଙ୍କ ମୁଖସ୍ଥ । ପାଠ ନ ଆସିଲେ ଯଦି ବାପାଙ୍କୁ କହିଦେଲେ ତେବେ କଥା ସରିଲା । ଆମ ମାଷ୍ଟ୍ର ତ ପଣ୍ଡିତଙ୍କୁ ଦେଖିଲେ ଚୁପ୍—ଆମ କଥା ପଚାରେ କିଏ ? ବାଟରେ ଦେଖିଥିଲେ ଲୁଚିଯିବା ସହଜ, କିନ୍ତୁ କ୍ଲାସ ରୁମ୍‌ରେ ପଳେଇବା ସହଜ ନୁହେଁ । ଯାହାହେଉ ପଣ୍ଡିତେ ପହଞ୍ଚି ଗଲେ ।

ଖଦଡ଼ ପୋଷାକ । ଆଖିରେ ଚଷମା । ମୁହଁକୁ ଚାହିଁବାର ଶକ୍ତି ନଥାଏ ।

ପଣ୍ଡିତେ ଗୋଟି ଗୋଟି ପିଲାକୁ ବାପା ନାଁ, ଘର କଥା ଆଉ ଗୋଟିଏ ଯୋଡ଼ିଏ ପ୍ରଶ୍ନ ପଚାରିଗଲେ । ତାପରେ ଚାଲିଗଲେ । କାରଣ ସକାଳୁ ଆମ ଗାଁରେ ଗୋଟାଏ ଜମି ମାପ ଗଣ୍ଡଗୋଳ ଥିଲା, ତାର ଫଇସଲା କରିବାକୁ ଆସିଥିଲେ ।

ପଣ୍ଡିତେ ଆମ ମାଷ୍ଟ୍ର ନୁହନ୍ତି—ବାପାଙ୍କ ମାଷ୍ଟ୍ର କି ତାଙ୍କ ମାଷ୍ଟ୍ରଙ୍କ ମାଷ୍ଟ୍ର—କିନ୍ତୁ ତାଙ୍କ ପାଖରେ ଯେଉଁ 'ଶକ୍ତି' ଅଛି, ଯେତିକି ମନେ ପଡ଼ିଲେ ତାଙ୍କ ସାମ୍ନାକୁ ଆସିବାକୁ ସାହସ ହୁଏନା ।

ଆଉ ଥରେ ।

୧୯୬୪ ମସିହା ଛାତ୍ର ଆନ୍ଦୋଳନ ବେଳ । ଆନ୍ଦୋଳନରେ ଏକ ସଭା ହୋଇଥିଲା । ମୁଁ ସେଥିରେ ଗୋଟିଏ ଭାଷଣ ଦେଇଥିଲି । ମୁଁ ସେତେବେଳେ ଦୋହଲା ସ୍କୁଲର ଛାତ୍ର । ଭାଷଣଟି କୁଆଡ଼େ ଭଲ ହୋଇଥିଲା ।

ତା ପର ଦିନ ମୁଁ ସ୍କୁଲକୁ ଯାଉଛି । ଦୋହଲା ସ୍କୁଲ ପାଖରେ ଗୋଟାଏ ଆମ୍ବ ତୋଟା । ତୋଟାର ଗୋଟାଏ କଣକୁ ପଣ୍ଡିତଙ୍କ ଘର । ତାଙ୍କ ଘର ପାଖ

ଦେଇ ସ୍କୁଲର ଖେଳ ପଡ଼ିଆ ମଝିରେ ଗୋଟାଏ ଚଲା ରାସ୍ତା ଲମ୍ବି ଯାଇଛି ସ୍କୁଲର ଗୋଟାଏ ଗେଟ୍ ଆଡ଼କୁ । ମୁଁ କାନ୍ଧରେ ବସ୍ତାନି ଧରି ଚାଲିଛି ।

"ମହାନ୍ତି !"

ମୁଁ ଥମିଗଲି, ଏ ପଣ୍ଡିତଙ୍କ କଣ୍ଠ । କାଳେ କ'ଣ ପଚାରିବେ ମୋର ଡ଼ର—ଯଦିଓ ପାଠ ପ୍ରଶ୍ନର ଉତ୍ତର ପ୍ରାୟ ମୁଁ ଦେଇ ପାରେ, ତଥାପି ସେ ଡ଼ରଟା ସ୍କୁଲ ପିଲାଙ୍କ ମନରେ ଏକ ପ୍ରକାର ବସା ବାନ୍ଧିଥାଏ । ପଣ୍ଡିତେ ଯେତେବେଳେ ଡ଼ାକୁଛନ୍ତି, ଆଉ ଆଗକୁ ମାଡ଼ିଯିବା ସମ୍ଭବ ନୁହେଁ । ପଣ୍ଡିତେ ଚାଲି ଚାଲି ହୋଇ ମୋ ନିକଟରେ ପହଞ୍ଚି ଗଲେ । ନମସ୍କାର କଲି । "କରେ, ତୁ କୁଆଡ଼େ ଚାମ୍ପିୟନ୍ସିପରେ ଭଲ ଭାଷଣଟାଏ ଦେଲୁ !"

ମୋର କିଛି କହିବାର ନଥିଲା—ତଳକୁ ମୁହଁ ପୋତି ରହିଲି । ମୋ ହାତକୁ ଚାପିଦେଇ କହିଲେ, "ତୋର ଏ ମନୋବୃତ୍ତି ଓ ଶକ୍ତି ସବୁଦିନେ ରହୁ" । ସେ ହାତର ସ୍ପର୍ଶ ଏବେ ବି ମୋର ମନେ ପଡ଼େ । ଏମିତି ଅନେକ ଉଦାହରଣ ଅଛି । ଗୁଣକୁ ଆଦର କରିବା ପଣ୍ଡିତଙ୍କ ଅଭ୍ୟାସଗତ । ତାଛଡ଼ା ସେ ଅଞ୍ଚଳର ପିଲାମାନେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରନ୍ତୁ, ଏହା ସର୍ବାନ୍ତଃକରଣେ ସେ ଚାହୁଁଥିଲେ ।

ଖରାଦିନ ।

ମାଟ୍ରିକ୍ ପରୀକ୍ଷା ସରି ଯାଇଥାଏ । ତା ପରେ କଟକରେ ପଢ଼ିବାକୁ ମୋର ଇଚ୍ଛା । କଟକରେ ରହି ପଢ଼ିଲେ ଯାହା ଖର୍ଚ୍ଚ ହେବ, ସେଥିରୁ କିଛି ଅଂଶ ବାପା ଦେଇ ପାରିବେ । ମାତ୍ର ଆଉ କିଛି ମତେ ଯୋଗାଡ଼ କରିବାକୁ ପଡ଼ିବ । ପଣ୍ଡିତେ ସେତେବେଳେକୁ କଟକରେ 'ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ' ପ୍ରତିଷ୍ଠା କରିଥା'ନ୍ତି । ମୁଁ ଅନୁରୋଧ କରି ପତ୍ର ଦେଇଥିଲି, ମତେ କିଛି ଗୋଟାଏ ପାର୍ଟ ଟାଇମ୍ କିରାଣୀ କାମ ଦେବାକୁ । ପଣ୍ଡିତେ ମତେ ଉତ୍ତର ଲେଖି, ରବିବାର ଦିନ ତାଙ୍କ ଦୋହଲ ବସା ଘରେ ସାକ୍ଷାତ୍ କରିବାକୁ ।

ଖରାବେଳେ ଝାଳରେ ଗାଧୋଇ ମୁଁ ଆସିଥାଏ ପଣ୍ଡିତଙ୍କୁ ଦେଖା ଦେବାକୁ ।

ପଣ୍ଡିତେ ଯେତେବେଳେ ଗାଁକୁ ଆସନ୍ତି, ସେତେବେଳେ କେମିତି ସୁରାକ୍ ପାଆନ୍ତି କେଜାଣି, ଆଖ ପାଖର ଲୋକେ ଧାଡ଼ ବାନ୍ଧି ଛୁଟନ୍ତି ତାଙ୍କ ପାଖକୁ । କା ପୁଅର ବାହା ଦରକାର । କା'ପୁଅ ସ୍କୁଲରେ ଦରମା ନଦେଇ ପାରି ତା' ନାଁ କଟି ଯାଇଛି, ତା' ନାଁ କପରି ପୁଣି ଲେଖା ହେବ ।

ଭାଇ ଭାଇ ଭିତରେ ଗଣ୍ଡ ଗୋଳ ଲାଗିଛି, ତା'ର ସମାଧାନ ଦରକାର । କାହା ଜମିକୁ ଆଉ କିଏ ହିଡ଼ କାଟି ତା' ଜମିରେ କିଛି ଅଂଶ ମିଶେଇ ଦେଇଛି, ତା'ର ମୀମାଂସା କରିବାକୁ ହେବ । କୋଉ ପିଲା ଘରେ ବସିଛି, ତା' ପାଇଁ କର୍ମ ସଂସ୍ଥାନ ଆବଶ୍ୟକ । କିଏ ଭୋଟରେ ପ୍ରାର୍ଥୀ ହୋଇଛି, ତାର ପଣ୍ଡିତଙ୍କ ଆଶୀର୍ବାଦ ଦରକାର । ଏମିତି ଅନେକ ପ୍ରଶ୍ନ, ଅନେକ ସମସ୍ୟା । ଅନେକ ଛାତ୍ର ଓ ଅନେକ ଅଭିଭାବକଙ୍କ ମେଳରେ ବସି ପଣ୍ଡିତେ ସେ ସବୁର ସମାଧାନରେ ଲାଗି ପଡ଼ନ୍ତି । ଅନେକ ସମସ୍ୟାର ସମାଧାନ ହୋଇଯାଏ, ଆଉ କେତେକ ଅମୀମାଂସିତ ଭାବରେ ରହିଯାଏ, ଆର ଥର ଆସିବା ପର୍ଯ୍ୟନ୍ତ ।

ମୁଁ ନମସ୍କାର ଜଣାଇ ବସି ପଡ଼ିଲି । କାରଣ, ସେତେବେଳକୁ ଆସର ଜମିଥାଏ—ପଣ୍ଡିତେ ସବୁ ଶୁଣୁଥା'ନ୍ତି କ'ଣ ସବୁ କହୁଥାନ୍ତି—ପ୍ରଶ୍ନ କରୁଥା'ନ୍ତି । କେତେ ସମୟ ପରେ ମତେ କହିଲେ, "କଟକ ଚାଲେ, ସେଇଠି ଦେଖାହେବ—କିଛି ବ୍ୟବସ୍ଥା କରିବା ।" ତା'ପରେ କିଛି ଦିନ ପରେ ମୁଁ କଟକ ଆସି ତାଙ୍କୁ ଦେଖାକଲି । ଆଉ କେଉଁଠି ବ୍ୟବସ୍ଥା କରିବାର ହଠାତ୍ ସୁଯୋଗ ନଥିବାରୁ, ତାଙ୍କ ଅନୁଷ୍ଠାନରେ ପାର୍ଟ ଟାଇମ୍ କାମ କରିବାର ବ୍ୟବସ୍ଥା କରିବେ ବୋଲି କହିଲେ ଏବଂ ଯିବା ପାଇଁ ଏକ ନିର୍ଦ୍ଦିଷ୍ଟ ଦିନ ଠିକ୍ କଲେ । ଈଶ୍ୱରଙ୍କ କୃପାରୁ ମୁଁ ମଝିରେ ଆଉ ଗୋଟାଏ ଚାକିରିର ବ୍ୟବସ୍ଥା କରିନେଲି । ଆଉ ଯିବାକୁ ପଡ଼ିଲା ନାହିଁ । କିନ୍ତୁ ସେ ସହାନୁଭୂତି ମୋର ମନେ ରହିଛି ।

ପଣ୍ଡିତେ କିଛିଦିନ ଆମ ପଞ୍ଚାୟତର ସରପଞ୍ଚ ଥିଲେ । ଦୋହଲ ସ୍କୁଲ ତାଙ୍କର ଉଜ୍ଜ୍ୱଳ କୀର୍ତ୍ତି । କିନ୍ତୁ ପ୍ରଚଳିତ ରାଜନୈତିକ ବାତାବରଣରୁ ଏ ଅନୁଷ୍ଠାନ ମାନ ମୁକ୍ତ ପାଇ ପାରିଲେ ନାହିଁ । ପଣ୍ଡିତଙ୍କ ଭଲ କଥା ଗୁଡ଼ାକୁ କେତେକ ବିକୃତ ରୂପରେ ପ୍ରଚାର କଲେ । ସେ ଯାହା ହେଉ ପଣ୍ଡିତେ ଆସ୍ତେ ଆସ୍ତେ ସେ ସବୁରୁ ଅପସରି ଆସି, ତାଙ୍କ ଦ୍ୱାରା ଗଠିତ 'ସଙ୍ଘ'ର ଉତ୍ତରୋତ୍ତର ଉନ୍ନତିରେ ମନଦେଲେ ।

ଏବେ ମୁଁ ଅନେକ ସମୟରେ ପଣ୍ଡିତଙ୍କ ପାଖକୁ ଯାଏ । ପ୍ରତ୍ୟେକ ଥର ଦେଖାହେଲେ ପଣ୍ଡିତେ ସ୍ୱାଗତ କରନ୍ତି । ଭଲ ମନ୍ଦ କଥା ପଚାରନ୍ତି । ଅଶସ୍ତରୀ ବର୍ଷ ବୟସରେ ପଣ୍ଡିତଙ୍କ କାମ କରିବାର ସ୍ପୃହା ଓ ଶକ୍ତି ଦେଖିଲେ ମୋ ଆଖି ଖୋସି ହୋଇଯାଏ । ତାଙ୍କ ପାଖରୁ ଉପକାର ପାଇଥିବା ଗ୍ରାମ ଓ ଅଣଗ୍ରାମଙ୍କ ସଂଖ୍ୟାର ହିସାବ ମୁଁ ଦେଇ ପାରିବିନି — ତାଙ୍କ ଛଡ଼ା ଆଉ କିଏ ବି ଦେବା ସମ୍ଭବ ନୁହେଁ ।

ପଣ୍ଡିତଙ୍କ ଦୀର୍ଘ ଜୀବନ ଆମ ସମସ୍ତଙ୍କ କାମ୍ୟ । ହେଇ ସେଦିନ ପଣ୍ଡିତେ କହୁଥିଲେ "ମୋ ମତରେ ଅଠର ଘଣ୍ଟା ଦିନକୁ କାମ କର, ୬ଘଣ୍ଟାର ପାରିଶ୍ରମିକ ନିଅ । ତା ହେଲେ ବଡ଼ ହୋଇ ପାରିବା କୌଣସି ଶ୍ରମ ମୂଲ୍ୟହୀନ ନୁହେଁ ।" ଏକଥା କେବଳ ଜଣେ କର୍ମଯୋଗୀ ହିଁ କହି ପାରେ ।

ମଣିଷ ମାନେ ଭଲ ମନ୍ଦ ରହିବାର କଥା । ଅଜାତଶତ୍ରୁ ହୋଇ କେହି ଜନ୍ମି ନାହାନ୍ତି । କିନ୍ତୁ ସବୁ ଆଲୋଚନା ସମାଲୋଚନା ମଧ୍ୟରେ ଊର୍ଦ୍ଧ୍ୱକୁ ଯିବା ପାଇଁ ଯେଉଁ ନିଷ୍ଠା ଓ ଶକ୍ତି ଆବଶ୍ୟକ, ସେ ଶକ୍ତି ବନମାଳୀ ପଣ୍ଡିତଙ୍କ ଠାରେ ଅଛି । ସେ ଶକ୍ତି ଅବଦମିତ ହେବାର ନୁହେଁ ।

ସୁନା ଚିହ୍ନେ ବଣିଆ,
ଗୁଣ ଚିହ୍ନେ ଗୁଣିଆ ।

ତେଣୁ ଏତିକି କହିବାର କଥା ଯେ, ଆମ ସମାଜରେ ଏହି ଗୁଣିଆ ମାନଙ୍କ ଆବଶ୍ୟକତା ରହିଛି ।

● ବାଙ୍କିମୁଣ୍ଡାର, ଗୁହାଳ
କଟକ

———

# କାଣ୍ଡାରୀ ବନମାଳୀ

ଶ୍ରୀ ବାଞ୍ଛାନିଧି ଦାସ

ତୁମେ ଯେ ଆସିଛ ବ୍ରହ୍ମଗୃହୀ ହେ
ଶିକ୍ଷକ ମନ ଅୟନେ,
ତୁମେ ଯେ ଆସିଛ ଦୀର କାଣ୍ଡାରୀ
ଶିକ୍ଷକ ପ୍ରାଣ ସଦନେ ।
କାଣ୍ଡାରୀ ବନମାଳ !
ଅଜ୍ଞାତେ କେବେ ଦେଲ ମୋ ହୃଦୟେ
ପ୍ରଜ୍ଞାର ଦୀପ ଜାଳ ।
ତୁମ ଅନ୍ତର ମନ୍ଦିରେ ବାଜେ
ଡମ୍ବରୁ ଡବ ଡବ,
ତୁମର ପାଷାଣ ଗାତେ ଫୁଟିଛି
ଦଗ୍ଧ କଳାର ଦୀପ୍ତ ମୟୂଖ—
ମୁଁ ଦେଖିଛି ତାର ଛବ ।
ରଣ ଅଞ୍ଜନ ବୋଳ,
ମୁଁ ଦେଖେ ତୁମର ନୟନ ପ୍ରାନ୍ତେ—
ଜଳେ ନାଗାସାକି—
ହିରୋସୀମା ଆହା ରକ୍ତିମ ଶିଖା ତୋଳ ।
ତୁମ ବଗଭୟ ଜାହ୍ନବୀ ଜଳେ
ଅବଗାହି ସଂଗ୍ରାମୀ—
ଶିକ୍ଷକ ଖୋଜେ ମୁକ୍ତିର ପଥ,
ମଣିକର୍ଣ୍ଣିକା କାହିଁ କେତେ ଦୂରେ ?
ତଥାପି ତାହାର ଲକ୍ଷ୍ୟ ଅଗ୍ରଗାମୀ ।

ତୁମେ ସାହାରାରେ କେଉଁ ଓଏସିସ୍,
ବଜାୟ ଜଣାଏ ତା'ର କୁର୍ଣ୍ଣିସ୍ !
ତୁମେ ଚଳମାନ ହିମାଳୟ ଚୂଡ଼
ଉନ୍ନତ ଗର୍ବୀୟାନ୍,
ତୁମେ ପ୍ରଶାନ୍ତ ସାଗର ନୀଳିମା
ତୁମ ପୌରୁଷ-ଶଯ୍ୟାର ସୀମା
ସୁବର୍ଣ୍ଣରେଖାର ଜଳ ବେଣୀଠାରୁ କୋଡ଼ାପୁଟ ଯାଏ
ବ୍ୟାପ୍ତ ହେ ବୀର ! ତେଜୀୟାନ୍, ମହୀୟାନ୍ ।
ବନମାଳ, ବନମାଳ !
ତୁମର ବଂଶୀ ମୋ ମନେ ବାଜିଲା କେଉଁ ପ୍ରଭାତରେ—
ମୁଁ ନେଲି ଶପଥ ଶିକ୍ଷକ ହୋଇ
ସହିଦ୍ ହୋଇବ,
ଏ ଜାତି ପାଇଁକି ତିଳ ତିଳ ଦେବ
ଜୀବନ-ସଳିତା ଜାଳ ।
ତୁମ ପ୍ରତିଦ୍ୱାର ଦୁର୍ଗ ତୋରଣ ସମ୍ମୁଖେ ଛିଡ଼ା
ମୁଁ ଯେ ଶିକ୍ଷକ ଜଣେ
କରେ ପ୍ରଣିପାତ ଯେନ ଗତବାନ !
ଯେନ ଆନନ୍ଦ ମନେ ।
କାଣ୍ଡାରୀ ବନମାଳୀ !
ଝଡ଼ ସଙ୍କୁଳ ସାଗର ବକ୍ଷେ
ତୁମେ ନିଅ ଆମ
ସଂଗ୍ରାମ-ନାବ
ଯୁଗ ଯୁଗାନ୍ତ ଗ୍ଭଳ ।

● ରାଧାନାଥ ପ୍ରଶିକ୍ଷଣ
ମହାବିଦ୍ୟାଳୟ,
କଟକ

# ଆମ ଅଜା

**ବାସୁକୀ ଓ ମଞ୍ଜୁଶ୍ରୀ**

ଆମେ ଡାକୁ ଅଜା, ଗାଁରେ ଡାକନ୍ତି ପଣ୍ଡିତେ, ଆଉ ବାଟରେ ଘାଟରେ ସେ ହେଉଛନ୍ତି ବ୍ରହ୍ମଚାରୀ ବାବୁ । ଖଣ୍ଡିଏ ଖଦଡ଼ ଧୋତି, ପଞ୍ଜାବୀ ଓ ହଳେ ଚପଲ ତାଙ୍କର ପରିଧେୟ ।

ମାମୁଁ ଘର ନାଁଟି ସମସ୍ତଙ୍କ ପକ୍ଷରେ ଆଦରଣୀୟ ଓ ଆକର୍ଷଣୀୟ । ମାତ୍ର ଆମ ଭାଗ୍ୟରେ ତା ନାହିଁ । ମାମୁଁ, ମାଇଁ, ମଉସା, ମାଉସୀ ତଥା ଆଈ ସ୍ନେହରୁ ବଞ୍ଚିତ ଆମେ । କିନ୍ତୁ ସବୁ ପ୍ରକାର ସ୍ନେହ ତାଙ୍କର ପାଖରେ ଠୁଳ । ଅଜା ଘରକୁ ଗଲା ଦିନ ଆମର ଯେଉଁ ଆନନ୍ଦ, ତାହା କହିଲେ ନ ସରେ ।

ଅଜାଙ୍କ ଘରଟି ସବୁଦିନେ ତାଲା ବନ୍ଦ ଅବସ୍ଥା । ଆମେ ସମସ୍ତେ ଗ୍ରୀଷ୍ମ ଛୁଟି ଓ ପୂଜା ଛୁଟିରେ ଯାଉଁ । ସେଇ କେତେ ଦିନ ନୀରବ ଗୃହଟି ମୁଖରିତ ହୋଇ ଉଠେ । ଗୃହ ସମ୍ମୁଖସ୍ଥ ଆମ୍ର କୁଞ୍ଜ, ଚତୁର୍ଦିଗରେ ଶ୍ୟାମାୟମାନ ଶସ୍ୟକ୍ଷେତ୍ର, ଗୃହସଂଲଗ୍ନ ସ୍ୱଚ୍ଛନୀର ପୁଷ୍କରଣୀ, ଆମ ସମସ୍ତଙ୍କର ନେତ୍ର ପ୍ରୀତିକର ଓ ଆରାମପ୍ରଦ ବୋଧହୁଏ । ଆମେ ଯେତେ ଦିନ ରହୁ, ଆମର ସୁଖସ୍ୱାଚ୍ଛନ୍ଦ୍ୟରେ ଯେପରି ବାଧା ନ ଘଟେ, ସେଥିପାଇଁ ଅଜାଙ୍କର ତୀକ୍ଷ୍ଣ ଦୃଷ୍ଟି ଥାଏ । ମାତ୍ର ସେ ସବୁଦିନେ ଆମ ପାଖରେ ରହିପାରନ୍ତି ନାହିଁ, ଏଥିପାଇଁ ଦୁଃଖ ଲାଗେ ।

ଆମେ ଯେଉଁଦିନ ଅଜାଙ୍କ ଘରେ ପାଦ ଦେଉଁ, ତହିଁଆର ଦିନ ସକାଳୁ ଲୋକଙ୍କ ଭିଡ଼ ଲାଗେ । ଆମେ ବିସ୍ମିତ ହୋଇଯାଉ, ଲୋକେ କିପରି ଜାଣିଲେ ? ନାନା ଲୋକଙ୍କର ନାନା ସମସ୍ୟା । କିଏ ପୁଅକୁ ପଢ଼ାଇବା ପାଇଁ ବହି ମାଗିବାକୁ ଆସିଛି—କିଏ ଲୁଗା ଖଣ୍ଡେ କି ଔଷଧ କିଣିବା ପାଇଁ ସାହାଯ୍ୟ ମାଗିବାକୁ ଆସିଛି । ଗାଁରେ କଳି ତକରାଳ ତୁଟାଇବା ପାଇଁ କାହାର ଅନୁରୋଧ । ଅଜା ଧୈର୍ଯ୍ୟ ଧରି ସବୁ ଶୁଣନ୍ତି—ସମସ୍ତଙ୍କ ଆଶା ପୂରଣ କରନ୍ତି ।

ମାଲି ମକଦ୍ଦମା, କଳିତକରାଳ ତୁଟାଇବାରେ ଅଜାଙ୍କ ଶକ୍ତି ଅସାଧାରଣ । ସେ ଯାହା ନିଷ୍ପତ୍ତି କରନ୍ତି, ତାକୁ କେହି ଅମାନ୍ୟ କରନ୍ତି ନାହିଁ । ଅଜା କିଛିଦିନ ସରପଞ୍ଚ ଥିଲେ । କାମ ବଳେଇବାରୁ ସେ ସେଥିରୁ ଓହରି ଆସିଲେ ।

ଅଜା କେବେ ଠାକୁରଙ୍କ ଆଗରେ ପ୍ରଣିପାତ କରିବାର ବା ଧଣ୍ଡା ପାଦୁକା ପାଇବାର ଆମେ ଦେଖି ନାହୁଁ । ପୁରୀ ଜଗନ୍ନାଥ ମନ୍ଦିରକୁ ତାଙ୍କ ସହ ଆମେ ଅନେକ ଥର ଯାଇଛୁଁ । ମନ୍ଦିରର ଶିଳ୍ପକଳା ଦେଖି ଦେଖି ସେ ଅଭିଭୂତ ହୋଇ ପଡ଼ନ୍ତି । ସେ କହନ୍ତି—"ଠାକୁରଙ୍କୁ ଦର୍ଶନ କଲେ କିମ୍ବା ତାଙ୍କର ଧଣ୍ଡା ପାଦୁକ ପାଇଲେ ଭଗବାନ୍ ସନ୍ତୁଷ୍ଟ ହେବେ ନାହିଁ । ଦରିଦ୍ରକୁ ଦାନ କଲେ, ଦୁଃଖୀ ପ୍ରତି ସମବେଦନା ପ୍ରକାଶ କରି ତାହାର ଦୁଃଖ ଦୂରୀକରଣରେ ସାହାଯ୍ୟ କଲେ, ନିଜର କର୍ତ୍ତବ୍ୟ ନିଷ୍ଠାପର ଭାବରେ କଲେ ଓ କାହାରିକୁ ପ୍ରତାରଣା ନ କଲେ ଆମେ ଭଗବାନଙ୍କ ସାନ୍ନିଧ୍ୟ ଲାଭ କରିବା । ଲୋକେ ଦେଖାଣିଆ ଭକ୍ତିରେ କିଛି ମୂଲ୍ୟ ନାହିଁ ।"

ଆମେ ଅଜାଙ୍କ ଘରେ ଥିବା ବେଳେ ବିଭିନ୍ନ ଦେବଦେବୀଙ୍କ ମନ୍ଦିରର ପଣ୍ଡାମାନେ ଧଣ୍ଡା ପାଦୁକ ଧରି ପହଞ୍ଚନ୍ତି । ଆମେ ତାହା ରଖୁ । ଅଜା ସେମାନଙ୍କୁ ସନ୍ତୋଷଜନକ ଦକ୍ଷିଣା ଦେବାରେ କୁଣ୍ଠିତ ହୁଅନ୍ତି ନାହିଁ ।

ଥରେ ଗ୍ରୀଷ୍ମ ଛୁଟିରେ ଦୁଇଟି ଗରିବ ପିଲା ପ୍ରମୋସନ ପାଇଥିବାରୁ ନୂଆ ବହି କିଣିବାକୁ ସାହାଯ୍ୟ ପାଇଁ ଆସିଥିଲେ । ଅଜା ସେମାନଙ୍କୁ ବାର୍ଷିକ ପରୀକ୍ଷାରେ କିଏ କେଉଁ ବିଷୟରେ କେତେ ନମ୍ବର ପାଇଛି ବୋଲି ପଚାରିଲେ । ଉଭୟଙ୍କୁ ଇଂରାଜୀରେ କେତୋଟି ପ୍ରଶ୍ନ ମଧ୍ୟ ପଚାରି ଉତ୍ତର ଆଦାୟ କଲେ । ପରେ ଗତ ଥର ସରସ୍ୱତୀ ପୂଜାରେ କିଏ କେତେ ଚାନ୍ଦା ଦେଇଥିଲେ, ତାହା ଜାଣିବାକୁ ଚାହିଁଲେ । ଉଭୟେ ତିନିଟଙ୍କା କରି ଦେଇଛନ୍ତି କହିବାରୁ ଅଜା କହିଲେ, "ଯଦି ଆଗାମୀ ବିନାୟକ ପୂଜାରେ ତୁମ୍ଭେମାନେ ଚାରି ଅଣାରୁ ବେଶୀ ଦେବ ନାହିଁ ବୋଲି ପ୍ରତିଶ୍ରୁତି ଦେବ, ତେବେ ମୁଁ ସାହାଯ୍ୟ କରିବି, ନଚେତ୍ ନାହିଁ । ଯଦି ମନିଟର ସେତିକି ନେବାକୁ ରାଜି ନ ହୁଅନ୍ତି, ତେବେ ନିଜର ଦାରିଦ୍ର୍ୟ କଥା ଜଣାଇଦେଇ କ୍ଷମା ମାଗିବ । ଜାଣିରଖ, ମୋତେ ଜବାବ ଦେଇ ଅନ୍ୟଥା କଲେ ମୁଁ ଭବିଷ୍ୟତରେ ତୁମ ମୁହଁ ଚାହିଁବି ନାହିଁ ।" ପିଲା ଦୁଇଟି ହଁ ଭରିବାରୁ ଅଜା ସଙ୍ଗେ ସଙ୍ଗେ ଚାନ୍ଦୋଳର ଜଣେ ବହି ଦୋକାନୀ ପାଖକୁ ପ୍ରତ୍ୟେକଙ୍କୁ ବହି ଦେବାକୁ ଚିଠି ଲେଖି ଦେଲେ ।

ଅଜା ଆମକୁ ଅନେକ ସମୟରେ ମହାତ୍ମାଜୀଙ୍କ ଦେଶପ୍ରେମ, ନେତାଜୀଙ୍କ ଦେଶହିତୈଷଣା, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଅସାଧାରଣ ଦାନଶୀଳତା ଓ ବିନୋବାଜୀଙ୍କ ମହାନୁଭବତା ସମ୍ବଳିତ କାହାଣୀ ସବୁ ଶୁଣାନ୍ତି ଏବଂ ଆମ୍ଭମାନଙ୍କୁ ଏହି ଉପଦେଶ ଦିଅନ୍ତି ଯେ—ମୁଁ ଯାହା ରୋଜଗାର କରୁଛି, ତାହାକୁ କେବଳ ନିଜ ସ୍ୱାର୍ଥରେ ଲଗାଇଲେ ଅପରାଧ ହେବ । ସେଥିରୁ କିୟଦଂଶ ନିଜ ଗ୍ରାମର, ନିଜ ପ୍ରଦେଶର ଓ ନିଜ ଦେଶର ହିତ କଳ୍ପେ ବ୍ୟୟିତ ହେବା ବିଧେୟ । ଦରିଦ୍ର, ନିଃସହାୟ, ବୃଦ୍ଧ, ବିପନ୍ନ, ଅନ୍ଧ ଓ କୁଷ୍ଠରୋଗୀ ଇତ୍ୟାଦି ଭଗବାନଙ୍କ ସନ୍ତାନ । ଏହିମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କଲେ ଆମେ ଈଶ୍ୱରଙ୍କ ନିକଟତମ ହେବା ।

ଦୋହଲ ମଡେଲ ହାଇସ୍କୁଲ ପ୍ରତିଷ୍ଠା, ଗ୍ରାମରେ ରାସ୍ତା ଓ ପୋଲ ତିଆରି, କୂପ ଖନନ ଏବଂ ଲୋକଙ୍କୁ ନାନା ପ୍ରକାରେ ସାହାଯ୍ୟ କରିବା—ଏସବୁ ଯୋଗୁଁ ଅଜା ନିଶ୍ଚୟ ଚିରସ୍ମରଣୀୟ ରହିବେ ଏବଂ ତାହାହିଁ ଆମ୍ଭମାନଙ୍କ ପକ୍ଷରେ ପରମ ସୌଭାଗ୍ୟ ଓ ଗର୍ବର ବିଷୟ ହେବ ।

● ଯୋବ୍ରା କଲୋନୀ
କଟକ



# ମୋ ଦୃଷ୍ଟିରେ ଶିକ୍ଷାବିଦ୍ ବ୍ରହ୍ମଚାରୀ

**ଶ୍ରୀ ନିତ୍ୟାନନ୍ଦ ଶତପଥୀ**

---

ତାଙ୍କ ସହ କେତୋଟି ଦିନ ମୋର ଅତି ନିବିଡ଼ ଭାବରେ କଟିଥିଲା । ପାଖାପାଖି ବର୍ଷେ ବା ତାହିଁରୁ କିଞ୍ଚିତ୍ ଅଧିକ । ସେତେବେଳେ ଶିକ୍ଷା ବିଭାଗରେ ଶ୍ରୀ ବନମାଳୀ ବ୍ରହ୍ମଚାରୀ ଖୁବ୍ ଚହଳ ପକେଇଥିଲେ । ଏବେବି ସେ ସେପରି ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷ ଓ ଅଧିକର୍ତ୍ତାମାନଙ୍କର ଏକ ବିରାଟ ଆତଙ୍କ । ଷ୍ଟେକ୍‌ଠୋକ୍ କଥା କହୁଥିବାରୁ ତାଙ୍କୁ ଭିତର ମନରେ କେହି ସୁଖ ପାଉ ନଥିଲେ । ହସିହସି ଦି'ପଦ କଥା କହି, ଚାହା କୋକାକୋଲା ଦେଇ ସବୁ କରିଦେବାର ମିଥ୍ୟା ପ୍ରତିଶ୍ରୁତି ଭିତରେ ତାଙ୍କୁ କୌଣସିମତେ ବିଦା କରିଦେବା ପାଇଁ କର୍ମକର୍ତ୍ତାମାନେ ତତ୍ପର । ଭିତର ମନରେ ନିଶ୍ଚୟ ଏଇ ବ୍ୟକ୍ତିଟିର ସେମାନେ ଅଶୁଭ କାମନା କରୁଥିବେ । ସତେ ଯେପରି ସେ ତାଙ୍କ ବ୍ୟକ୍ତିଗତ ଅଧିକାର ଓ ଖିଆଲର ରାଜ୍ୟ ଭିତରକୁ ପଶି ଆସି ଅଯଥା ହସ୍ତକ୍ଷେପ କରୁଛନ୍ତି । ସେମାନେ ହାକିମ (ବ୍ରିଟିଶ ସରକାର-କାଳୀନ ମନୋବୃତ୍ତି ଅନୁଯାୟୀ) । ସେମାନେ ଯାହା କରିବେ ସେଥିରେ ପ୍ରଶ୍ନ କରିବାର, ଦ୍ୱିରୁକ୍ତି କରିବାର ଅଧିକାର ଅନ୍ୟ କାହାର ନାହିଁ । ନିଜର ଦାବୀ ଜଣାଇବାର ବା ହାସଲ କରିବାର ସାମ୍ବିଧାନିକ ଅଧିକାର ସେଠାରେ ଖାଲି ଗୋଟାଏ ଅଳୀକ ସମ୍ଭାବନା ମାତ୍ର । ଶ୍ରୀ ବନମାଳୀ ବ୍ରହ୍ମଚାରୀ କିନ୍ତୁ ସେତେବେଳେ ବହୁ ଅସହାୟ ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ସମସ୍ୟା ନେଇ କର୍ତ୍ତୃପକ୍ଷଙ୍କ ପାଖରେ ଦଣ୍ଡାୟମାନ । ସତ୍ୟପ୍ରତି ପ୍ରବଳ ନିଷ୍ଠା, କର୍ମସମ୍ପାଦନା ପାଇଁ ପ୍ରବଳ ଝୁଙ୍କ, ଏକାଦିକ୍ରମେ ବର୍ଷ ବର୍ଷ ଧରି ଗୋଟିଏ ଗୋଟିଏ ସମସ୍ୟାକୁ ପାହାଚ ପାହାଚ କରି ସଫଳତା ପର୍ଯ୍ୟନ୍ତ ଆଗେଇ ନେବାରେ ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଓ ଅସୀମ ଧୈର୍ଯ୍ୟ ଲକ୍ଷ୍ୟ କରିବାର କଥା । ଶ୍ରୀ ବ୍ରହ୍ମଚାରୀ ତାଙ୍କ ସଂଘର୍ଷପୂର୍ଣ୍ଣ ଜୀବନର ଏହିପରି କାହାଣୀ ଗୁଡ଼ିକୁ ମୋତେ ବରାବର ଶୁଣାନ୍ତି । ଅମୁକ ସର୍କଲ ଶିକ୍ଷାବିଭାଗ ଇନ୍‌ସ୍‌ପେକ୍ଟର ଅମୁକ ଅମୁକ ଶିକ୍ଷକଙ୍କଠାରୁ ଲାଞ୍ଚ ନେଇ ବି ତାଙ୍କୁ ବହୁତ ଦହଗଞ୍ଜ କରୁଛନ୍ତି । ଅମୁକ ମ୍ୟାନେଜିଂ କମିଟୀର ଅନ୍ୟାୟ କାର୍ଯ୍ୟକୁ ଇନସ୍‌ପେକ୍ଟର ରାଜନୈତିକ ଚାପରେ ସମର୍ଥନ କରୁଛନ୍ତି । ଅମୁକ ଇନସ୍‌ପେକ୍ଟରଙ୍କ ଘରକୁ ସବୁ ଅରୁଆ ଚାଉଳ, ଘିଅ, ମାଛ ବୁହା-ଚାଲିଛି । ଅମୁକ ଇନସ୍‌ପେକ୍ଟର ଜଣେ ଶିକ୍ଷୟିତ୍ରୀଙ୍କୁ ବରାବର ଘରକୁ ଡାକୁଛନ୍ତି—ଛି, ସାଧାରଣ ଲୋକଙ୍କ ଭିତରେ ଯେଉଁ ଗୁଜବ । ମୁଁ ଶୁଣି ଶୁଣି ଓ ଶିକ୍ଷା ବ୍ୟବସ୍ଥାର ଏହି ଦୟନୀୟ ରୂପଟିକୁ ଦେଖିଦେଖି ଅତିରିକ୍ତ ବ୍ୟଥିତ ହୁଏ । କଣ ଏହାର ପ୍ରତିକାର ? କିପରି ଏ ଦୁଷ୍କୃତିରୁ ଏ ସମାଜ ନିଷ୍କୃତି ପାଇବ ? ଶ୍ରୀବ୍ରହ୍ମଚାରୀ ମୋତେ ବରାବର କୁହନ୍ତି "ସ୍ୱାଭାବିକ ଭାବରେ ନ୍ୟାୟ ନ ମିଳିଲେ କୋର୍ଟ କଚେରୀକୁ ଯିବାକୁ ହେବ । ମନ୍ତ୍ରୀଙ୍କୁ ଜଣାଇଲୁ । ଗଣତାନ୍ତ୍ରିକ

ବ୍ୟବସ୍ଥାରେ ଏତେ ସହଜରେ ଅନ୍ୟାୟର ପ୍ରତିରୋଧ କରି ହେବ କି ? ହବାଲୋକରେ ପ୍ରତ୍ୟକ୍ଷ ଭାବରେ ଜଣେ ମର୍ଡରର୍ କି କୋର୍ଟରେ ଆତ୍ମପକ୍ଷ ନେଇ ସଫେଇ ଦେବାର ଅଛି । କଣ କରିବା ? ମୁଁ ଏ ମାସର ଶିକ୍ଷକ ଦର୍ପଣରେ ସବୁକଥା ଖୋଲି ଖୋଲି ଲେଖିଦେବି । ଜନତା ଜନାର୍ଦ୍ଦନ ବିଗ୍ଚର କରନ୍ତୁ । ନିହତ ବ୍ୟକ୍ତି ପାଇଁ ଯେତେ ବିଭାଗୀୟ ସମର୍ଥନ ମିଳିଲେ ବି ଜନତା ଆଖିରେ ସେ ନିଶ୍ଚିତ ଭାବେ ତିରସ୍କୃତ ହେବ” । ଶ୍ରୀ ବ୍ରହ୍ମଚାରୀ ବାରାବର କୁହନ୍ତି “ବ୍ୟକ୍ତିତ୍ୱହୀନ ଶିକ୍ଷକ ଓ ପ୍ରଶାସକ ଉଭୟେ ଏ ସମାଜର ବଡ଼ ଶତ୍ରୁ । ଏମାନଙ୍କ ବିରୁଦ୍ଧରେ ସଙ୍ଘ ବରାବର ସଂଗ୍ରାମ କରିବ ।”

ମୁଁ ବର୍ଷେରୁ ଊର୍ଦ୍ଧ୍ୱ ତାଙ୍କ ସହିତ ଖାଇବା ପିଇବା ଠାରୁ ରହିବା ଯାଏ ସବୁରେ ଭୁକ୍ତଭୋଗୀ । ମେସ୍‌ରେ କମ୍ୟୁନିଟି ଲାଇଫ୍ ଠାରୁ ଅନେକ ସଭା ସମିତିରେ ଶିକ୍ଷା ସଂସ୍କାରର ବାର୍ତ୍ତା ପହଞ୍ଚାଇବା ଯାଏ ମୁଁ ବହୁ ଘଟଣାରେ ତାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ଆସିଛି । ବ୍ରହ୍ମଚାରୀଙ୍କ ଜୀବନର ନିରାଡ଼ମ୍ବର ନିରଳସ କର୍ମ-ତତ୍ପରତା ନ ଦେଖିଲେ କେହି ବିଶ୍ୱାସ କରି ପାରିବେନି । ବର୍ଷରେ ତିନି ଥର ନିମ୍ନ ମାଧ୍ୟମିକ ଶ୍ରେଣୀର ପରୀକ୍ଷା ହୁଏ । ଏଥିପାଇଁ ଆଦର୍ଶ ପ୍ରଶ୍ନପତ୍ର ଯୋଗେଇ ଦେବା ଦାୟିତ୍ୱ ସଂଘର । ଶ୍ରୀ ବ୍ରହ୍ମଚାରୀ ଏଇ ଦିନ ମାନଙ୍କରେ ଏତେ ବ୍ୟସ୍ତ ରହନ୍ତି ଯେ ରାତିରେ ଚାରି ଘଣ୍ଟା ବି ଶୋଇବାକୁ ବେଳ ପାଆନ୍ତିନି । ଏହି କାର୍ଯ୍ୟକୁ କେବଳ ବ୍ୟବସାୟ ଦୃଷ୍ଟିରୁ ନୁହେଁ, ବିଶ୍ୱାସ ଓ ଦାୟିତ୍ୱ ଦୃଷ୍ଟିରୁ ତାଙ୍କୁ ନିର୍ବାହ କରିବାକୁ ହୁଏ । ପ୍ରଶ୍ନପତ୍ରରେ ସଂପୂର୍ଣ୍ଣ ଗୋପନୀୟତା ଅନୁସରଣ କରିବାକୁ ହେବ । ନଚେତ୍ ଛାତ୍ରମାନଙ୍କର ହେବ ପ୍ରଭୂତ କ୍ଷତି । ଆଗରୁ ନିଜ ନିଜ ଦାୟିତ୍ୱରେ ପ୍ରଶ୍ନ ତିଆରି ଓ ପ୍ରଶ୍ନ ମୁଦ୍ରଣରେ ସ୍କୁଲମାନଙ୍କରେ ଗୋପନୀୟତା ରହୁ ନଥିଲା । ସଂଘ ଅନ୍ତର୍ଭୁକ୍ତ ସମସ୍ତ ସ୍କୁଲ ଏହି ପ୍ରଣାଳୀର ଉପାଦେୟତା ଅନୁଭବ କରୁଥିବାରୁ ବର୍ଷ ବର୍ଷ ଧରି ଅପ୍ରତିହତ ଭାବରେ ଶ୍ରୀ ବ୍ରହ୍ମଚାରୀ ଏହି ଦାୟିତ୍ୱ ସଂପନ୍ନ କରି ଆସୁଛନ୍ତି ।

ଅନେକଙ୍କ ଆଖିରେ ଏହା ଏକ ବ୍ୟବସାୟ ହୋଇପାରେ; ମୋ ଆଖିରେ ଏହା ଏକ ଯଜ୍ଞ କର୍ମ । କାରଣ ଏହି ସଂସ୍ଥାରେ ଏକାଧିକ ଛାତ୍ର ଓ ବେକାର ଯୁବକ କର୍ମ ନିର୍ବାହର ସୁଯୋଗ ପା'ନ୍ତି । କୌଣସି ସରକାରୀ ସଂସ୍ଥାରେ ନିଯୁକ୍ତି ପାଇବା ପର୍ଯ୍ୟନ୍ତ ସେମାନଙ୍କ ପାଇଁ ଏହା ଏକ ତାଲିମ୍-ସମୟ ଭାବରେ ଗ୍ରହଣ କରାଯାଇ ପାରେ । ଦ୍ୱିତୀୟ କଥା ହେଲା, ସଂଘ ତରଫରୁ ଯେଉଁ ଦ୍ୱିତଳ ପ୍ରାସାଦ କଟକରେ ନିର୍ମିତ ହେଉଛି, ତାହା କଟକକୁ ଆସୁଥିବା ବହୁ ଶିକ୍ଷକଙ୍କୁ ଏହି ଜନ ଗହଳି ସହରରେ ଆଶ୍ରୟ ଦେଇ ଆସୁଅଛି । ଏସବୁ ଯେ ଶ୍ରୀ ବ୍ରହ୍ମଚାରୀଙ୍କର ଅନବରତ ଚେଷ୍ଟା ଓ ଶ୍ରମର ଫଳ—ଏକଥା ଅତି ସ୍ପଷ୍ଟ ଭାବେ କୁହାଯାଇ ପାରେ ।

ଏଣିକି ଟିକିଏ ବ୍ୟକ୍ତିଗତ କଥା କୁହେଁ । ବ୍ରହ୍ମଚାରୀ ନାମ ଶୁଣି କେହି ହୁଏତ ଭାବୁଥିବେ ସେ ଅବିବାହିତ କିମ୍ବା ସନ୍ନ୍ୟାସୀ । ପ୍ରକୃତରେ ତା' ନ ହେଲେ ବି ବହୁକାଳରୁ ମୃତଦାର ହୋଇ ସେ ବ୍ରହ୍ମଚାରୀର ଜୀବନ ଯାପନ କରି ଆସୁଛନ୍ତି । ମୁଁ ତାଙ୍କ ସହିତ ରହିବାର ଦେଡ଼ବର୍ଷ ମଧ୍ୟରେ କେବେ କୌଣସି ନାରୀ ସଂପର୍କୀୟ ଆଲୋଚନା ଶୁଣି ନାହିଁ । ସେ ପୁଣି ଗୋଟିଏ ଅର୍ଥରେ ସନ୍ନ୍ୟାସୀ—ନିଜର ନିଷ୍ଠାପର କର୍ତ୍ତବ୍ୟରେ ଓ ଲକ୍ଷ୍ୟରେ । ନିଜର ଗ୍ରାମ ଓ ଘର କଥା ଯେ ସେ ନ ଭାବନ୍ତି—ତା ନୁହେଁ । କିନ୍ତୁ ସଙ୍ଘ ପରି ଅନ୍ୟ କୌଣସି ପାର୍ଥିବ ଜଞ୍ଜାଳ ତାଙ୍କୁ ଏତେ ବେଶୀ ଆସକ୍ତ କରି ରଖି ପାରିଅଛି ବୋଲି ମୋର ମନେହୁଏ ନାହିଁ । ପୁଣି ଶିକ୍ଷା ଓ ଶିକ୍ଷକଙ୍କୁ ଏକ ନିର୍ଦ୍ଦିଷ୍ଟ ଦେଶପ୍ରାଣିତ ଲକ୍ଷ୍ୟରେ ଗଢ଼ିବାର ଚେଷ୍ଟାରେ ସେ ସନ୍ନ୍ୟାସୀ । ସେଥିପାଇଁ ପୁସ୍ତକ ପ୍ରକାଶନ, ପତ୍ରିକା ପ୍ରକାଶନ ଠାରୁ ମଝିରେ ମଝିରେ ସରକାରଙ୍କୁ ଶ୍ୱେତ ପତ୍ର (**White bulletin**) ଦେବା ପର୍ଯ୍ୟନ୍ତ ତାଙ୍କ କାମରେ ମୁଁ ଯେଉଁ ଏକନିଷ୍ଠତା ଉପଲବ୍ଧି କରିଛି, ତାହା ପ୍ରକୃତରେ ଅନୁକରଣୀୟ ।

ଅନେକଙ୍କ ଧାରଣା ହୋଇପାରେ 'ଶିକ୍ଷକ ମହାସଂଘ' ଗୋଟିଏ ପ୍ରଚାର-ସର୍ବସ୍ୱ ସଂସ୍ଥା । ଏଥିରେ

କେତେକଣ ଶିକ୍ଷକ ଓ ସଂଗଠକ ନିଜର ନେତୃତ୍ୱକୁ ବିସ୍ତାର କରିବା ପାଇଁ କେବଳ ସୁଯୋଗ ମାତ୍ର ପାଆନ୍ତି । ଶିକ୍ଷକମାନଙ୍କର କିଛି ହୁଏ ନାହିଁ । ଏହା ଏକ ପ୍ରମାଦପୂର୍ଣ୍ଣ ଭ୍ରାନ୍ତ ଧାରଣା । ଶ୍ରୀ ବ୍ରହ୍ମଗିରି ଏହି ସଂସ୍ଥାର ସଭାପତି—ଯଦିଓ ଏଥିରେ ବେସରକାରୀ କଲେଜ ଓ ମାଧ୍ୟମିକ ସ୍କୁଲଗୁଡ଼ିକ ଅନ୍ତର୍ଭୁକ୍ତ । ଏହି ଦାୟିତ୍ୱର ଗୁରୁତ୍ୱ ସେ ସ୍ୱୟଂ ଅନୁଭବ କରିଛନ୍ତି—ଏଥିରେ ଅନ୍ତତଃ ମୁଁ ନିଶ୍ଚିତ । ଆମ ଦେଶରେ ଶିକ୍ଷା ବ୍ୟବସ୍ଥା ଯେଉଁପରି ବହୁଧାରାରେ ବିଭକ୍ତ—ସେଠି ଅସମାନତା ଓ ଅସାମଞ୍ଜସ୍ୟ ଅଧିକ ରହିବା ସ୍ୱାଭାବିକ । ଭାରତର ବିଭିନ୍ନ ପ୍ରାଦେଶିକ ଶିକ୍ଷା ବ୍ୟବସ୍ଥାରେ ବହୁ ଅସାମଞ୍ଜସ୍ୟ ସ୍ପଷ୍ଟତଃ ରହିଛି । କେଉଁଠି ସରକାରୀ ଓ ବେସରକାରୀ ଶିକ୍ଷକମାନେ ସମାନ ହାରରେ ବେତନ ଓ ସୁବିଧା ସୁଯୋଗ ପାଉଛନ୍ତି ତ କେଉଁଠି ଆକାଶ ପାତାଳ ପ୍ରଭେଦ ବି ରହିଛି । ଏକା ପାଠ ପଢ଼ିଥିବା ଓ ପଢ଼ାଉଥିବା ଦାୟିତ୍ୱ ପାଇଁ ପୁଣି ବିଶ୍ୱବିଦ୍ୟାଳୟ ଓ ସରକାରୀ ତଥା ବେସରକାରୀ କଲେଜ ଶିକ୍ଷା ସର୍ତ୍ତ ତଥା ବେତନ ହାରରେ ବହୁ ବିଭିନ୍ନତା ରହିଛି । ସଙ୍ଘ ଏହି ବିଭିନ୍ନତାର ଉଚ୍ଛେଦ ପାଇଁ ଲଢ଼ି ଆସୁଅଛି । କାହିଁକି ଏ ବିଭିନ୍ନତା ? ଏହା କଣ ଏକ ସୁସ୍ଥ ଶିକ୍ଷା ପ୍ରଣାଳୀ ଓ ଶିକ୍ଷାନୀତିର ପରିଚୟ ? ମୋର ଯେପରି ମନେହୁଏ ଏହି ବିଭିନ୍ନତା ପାଇଁ ଆଜି ଶିକ୍ଷକ ସମ୍ପ୍ରଦାୟ ଭିତରେ ସମନ୍ୱୟ ସ୍ଥାପିତ ହୋଇ ପାରୁନାହିଁ । ନିଜ ନିଜ ପ୍ରତି ଭରସା ମଧ୍ୟ ଆସୁନାହିଁ । ମହାସଙ୍ଘର ଦାୟିତ୍ୱ ତେଣୁ ଅପରିସୀମ । ଶ୍ରୀ ବ୍ରହ୍ମଗିରି ଏହି ଦାୟିତ୍ୱର ପୃଷ୍ଠ ଭୂମିରେ ନିଜ କର୍ତ୍ତବ୍ୟ ଏପର୍ଯ୍ୟନ୍ତ ତୁଲେଇ ଆସିଛନ୍ତି ।

ଆଜି ଶ୍ରୀ ବ୍ରହ୍ମଗିରିଙ୍କ ଜୟନ୍ତୀ ଉତ୍ସବ ପାଇଁ ଏ ଯେ ଆୟୋଜନ, ଏହା ଆମ ଦେଶରେ ପୂଜ୍ୟ ପୂଜାର ଭୂମିକାକୁ ଆହୁରି ଦୃଢ଼ କରିବ, ଏଥିରେ ସନ୍ଦେହ ନାହିଁ । ଏହି ଜୟନ୍ତୀ ଉତ୍ସବ ଉପଲକ୍ଷେ ପ୍ରକାଶ ପାଉଥିବା ସ୍ମରଣିକା ତାଙ୍କ ଜୀବନର ବହୁ ବିଶିଷ୍ଟ ସତ୍ୟକୁ ଉନ୍ମୋଚନ କରିବ ଏବଂ ଶିକ୍ଷକ ସମାଜକୁ ଅନୁପ୍ରାଣିତ କରିବ—ଏ ଭରସା ଅନ୍ତତଃ ମୋର ଅଛି । କିମ୍ଧିକମ୍ ?

● ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର



# ସାଧନା ଓ ସିଦ୍ଧି

**ଶ୍ରୀ ସର୍ବେଶ୍ୱର ଦାଶ**

୧୯୨୮-୨୯ ମସିହାର କଥା । ଆଜିକାଲି ଯେପରି ପ୍ରତି ଏକ ମାଇଲରେ ଗୋଟିଏ ମି. ଇ. ସ୍କୁଲ ଓ ଦୁଇ ତିନି ମାଇଲରେ ଗୋଟିଏ ହାଇସ୍କୁଲ ଅଛି, ସେତେବେଳେ ଏହା ଥିଲା ସ୍ୱପ୍ନ । କୁଜଙ୍ଗ-କେନ୍ଦ୍ରାପଡ଼ା ଓ କେନ୍ଦ୍ରାପଡ଼ା – କଟକ ମଧ୍ୟରେ ଏହି ଦୁଇଟି ମାତ୍ର ହାଇସ୍କୁଲ । ସମଗ୍ର କଟକ ଜିଲ୍ଲାରେ ମ. ଇ. ସ୍କୁଲ ସଂଖ୍ୟା ଥିଲା ୩୦ରୁ କମ୍ । ସେହି ସମୟରେ ମୁଁ ମୋର ଘରଠାରୁ ପ୍ରାୟ ୨ ମାଇଲ ଦୂରବର୍ତ୍ତୀ ଦୋହଲା ଉ. ପ୍ରା. ବିଦ୍ୟାଳୟରେ ଅଧ୍ୟୟନ କରୁଥାଏ । ସ୍କୁଲର ପ୍ରଧାନ ଶିକ୍ଷକ ଥା'ନ୍ତି ସ୍ୱର୍ଗତ ଚନ୍ଦ୍ରଧର ଦାଶ । ଏକ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହେଲେ ହେଁ ଆଖପାଖ ୧୦-୧୫ ଖଣ୍ଡ ଗ୍ରାମରେ ତାଙ୍କର ବିଶେଷ ଖ୍ୟାତି ଥାଏ ଏବଂ ସେ ଅଞ୍ଚଳରେ ଶିକ୍ଷିତ ଲୋକେ ଅନେକ ସମୟରେ ବିଭିନ୍ନ ବିଷୟରେ ତାଙ୍କ ସହିତ ପରାମର୍ଶ କରିବା ପାଇଁ ଦୋହଲା ଉ. ପ୍ରା. ସ୍କୁଲକୁ ଆସନ୍ତି ।

ସେହି ଆଗନ୍ତୁକମାନଙ୍କ ମଧ୍ୟରେ ଥିଲେ ଜଣେ ଦୀର୍ଘକାୟ ଗୌରବର୍ଣ୍ଣ ଯୁବକ । ତାଙ୍କର ସଦା ପ୍ରସନ୍ନ ମୁଖମଣ୍ଡଳ, ପ୍ରଗଳ୍‌ଭ ବଚନ ଭଙ୍ଗୀ ଓ ସୁନ୍ଦର ଦୃଢ଼ତା ଆମର ଶିଶୁ ପ୍ରାଣକୁ ବିଶେଷ ଆକର୍ଷଣ କରୁଥିଲା । ସେ ହେଉଛନ୍ତି ବନମାଳୀ ପଣ୍ଡିତ, କାନପୁର ମେଟ୍‌କାଫ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଜଣେ ସହକାରୀ ଶିକ୍ଷକ । ଶୁଣିଲୁ ସେ ଦୋହଲାରେ ଏକ ମଧ୍ୟଇଂରାଜୀ ସ୍କୁଲ ପ୍ରତିଷ୍ଠା ପାଇଁ ଉଦ୍ୟମ ଚଳାଇଛନ୍ତି । ବ୍ୟକ୍ତିଗତ ଉଦ୍ୟମରେ ବିଦ୍ୟାଳୟ ପ୍ରତିଷ୍ଠା ନୂଆ କଥା ନୁହେଁ । ଆମ ଦେଶର ଅଧିକାଂଶ ସ୍କୁଲ, କଲେଜ ବଦାନ୍ୟ, ଉଦ୍ୟମଶୀଳ ବ୍ୟକ୍ତି ବିଶେଷଙ୍କଦ୍ୱାରା ହିଁ ପ୍ରତିଷ୍ଠିତ ହୋଇଅଛି । କିନ୍ତୁ ବନମାଳୀ ପଣ୍ଡିତ ଥିଲେ ନିଃସ୍ୱ । ନଥିଲା ତାଙ୍କର ଧନ ସମ୍ପଦ, ପଦ ପଦବୀ ଅଥବା ପ୍ରଭାବ ପ୍ରତିପତ୍ତି । ହେଲେ, ହୃଦୟରେ ଥିଲା ତାଙ୍କର ଅସୀମ ସାହସ, ପ୍ରାଣରେ ଅନନ୍ତ ଉତ୍ସାହ ଓ ଅନ୍ତରରେ ଅଟଳ ପ୍ରତିଜ୍ଞା । ଏତିକି ସମ୍ବଳ କରି ବନମାଳୀ ପଣ୍ଡିତେ କର୍ମ ସମୁଦ୍ରରେ ଝାମ୍ପ ଦେଲେ । ନାଉରୀ ନଦୀ ବକ୍ଷରେ ତାର ନୌକା ମେଲି ଦେବା ପୂର୍ବରୁ ଘାଟସ୍ଥ ଖୁଣ୍ଟ ଅଥବା ବୃକ୍ଷରେ ନୌକାକୁ ବାନ୍ଧିରଖିଥିବା ରଜ୍ଜୁକୁ ଛିନ୍ନ କରିଦେବା ପରି ପଣ୍ଡିତେ ତାଙ୍କର ଉପାର୍ଜନ ଓ ପରିବାର ପୋଷଣରେ ଏକମାତ୍ର ପନ୍ଥା ଶିକ୍ଷକତାକୁ ବିସର୍ଜନ ଦେଇ ନିଜକୁ ସର୍ବତୋଭାବରେ ବିଦ୍ୟାଳୟ ପ୍ରତିଷ୍ଠା କାର୍ଯ୍ୟରେ ଉତ୍ସର୍ଗ କରିଦେଲେ । ଏଣିକି ଶୟନ, ସ୍ୱପନ ଓ ଜାଗରଣରେ ବିଦ୍ୟାଳୟ ହେଲା ତାଙ୍କର ଜପ, ତପ, ଧ୍ୟାନ, ଧାରଣା ସବୁ । ଜୀବନର ପ୍ରତି ମୁହୂର୍ତ୍ତ ଓ ଦେହର ପ୍ରତି ଶୋଣିତ ବିନ୍ଦୁ ଅକୁଣ୍ଠ ହୃଦୟରେ ସେ ବିଦ୍ୟାଳୟ ପାଇଁ ଦାନ କରିଛନ୍ତି । ସେ ମୂଲିଆ ହୋଇ ବାଉଁଶ କାଟିଛନ୍ତି, ଇଟା ବୋହିଛନ୍ତି, ପୂଝାରୀ ହୋଇ ଘେରେଇ କରି ପିଲାଙ୍କୁ ଖୁଆଇଛନ୍ତି ! ବିଦ୍ୟାଳୟ କକ୍ଷରେ ଶିକ୍ଷକ ହୋଇ ପାଠ ପଢ଼ାଇଛନ୍ତି । ପ୍ରଧାନ ଶିକ୍ଷକ ହୋଇ ସ୍କୁଲ ପ୍ରଶାସନିକ ଦାୟିତ୍ୱ ସମ୍ପୂର୍ଣ୍ଣ କରିଛନ୍ତି ଏବଂ ପରିଚାଳକ

ହୋଇ ବିଦ୍ୟାଳୟର ପରିଚାଳନା କରିଛନ୍ତି । ଏଥିପାଇଁ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି, ବହୁ ନିର୍ଯ୍ୟାତନା ଭୋଗ କରିବାକୁ ହୋଇଛି ଏବଂ କଠୋର ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହେବାକୁ ମଧ୍ୟ ପଡ଼ିଛି ।

ହେଲେ ସାଧକ ବନମାଳୀ ଏ ସକଳ ପ୍ରତିବନ୍ଧକ ସପକ୍ଷରେ ମସ୍ତକ ନତ କରିନାହାନ୍ତି । ଶେଷରେ ତାଙ୍କର ଜୟ ହୋଇଛି । ନିଃସ୍ୱ ଓ ସମ୍ବଳହୀନ ହୋଇ ମଧ୍ୟ ସେ ନିଜର ଦୃଢ଼ ମନୋବଳ, ଅଟଳ ପ୍ରତିଜ୍ଞା ଓ ଅସାଧାରଣ ସଂଗଠନ ଶକ୍ତି ବଳରେ ଦୋହଲରେ ଏକ ମ. ଇ. ସ୍କୁଲ ପ୍ରତିଷ୍ଠାରେ ସଫଳ ହୋଇଅଛନ୍ତି । କେବଳ ସେତିକି ନୁହେଁ, ଦୀର୍ଘ ୧୨ ବର୍ଷ କାଳ ସରକାରଙ୍କ ଠାରୁ କୌଣସି ଆର୍ଥିକ ସାହାଯ୍ୟ ନ ପାଇ ସେ ଯେ ବିଦ୍ୟାଳୟଟିକୁ ବଞ୍ଚାଇ ରଖିଥିଲେ ତାହା ନୁହେଁ, ଏହାକୁ ପ୍ରଗତିଶୀଳ, ଅଗ୍ରଗାମୀ, ଆଦର୍ଶ ବିଦ୍ୟାଳୟ ରୂପେ ପ୍ରତିଷ୍ଠିତ କରିବାରେ ସମର୍ଥ ହୋଇଛନ୍ତି । ସେ ଏହାକୁ କର୍ମାଭିମୁଖୀ କରିବା ପାଇଁ ବହୁ ଉଦ୍ୟମ କରିଛନ୍ତି ।

ଏକ ଦୀପଶିଖା ଅନ୍ୟ ଦୀପ ଶିଖାକୁ ପ୍ରଜ୍ୱଳିତ କଲାପରି ବନମାଳୀ ପଣ୍ଡିତେ ଆମ ସେ ଅଞ୍ଚଳରେ ଶିକ୍ଷାର ଯେଉଁ ନୂତନ ବର୍ତ୍ତି ଜଳାଇଲେ, ତାହା ଏକ ନବୀନ ଚେତନା ଓ ନୂତନ ଜାଗରଣ ସୃଷ୍ଟି କଲା ଏବଂ ତାଙ୍କର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ବହୁ ଲୋକ ଦୋହଲର ଚତୁର୍ଦ୍ଦିଗରେ ବିଦ୍ୟାଳୟମାନ ପ୍ରତିଷ୍ଠା କଲେ । ଦୋହଲରେ ଏକ ମ. ଇ. ସ୍କୁଲ ସ୍ଥାପନରେ ସନ୍ତୁଷ୍ଟ ନ ହୋଇ ପଣ୍ଡିତେ ଏହାକୁ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ପରିଣତ କରିବା ପାଇଁ ଲାଗି ପଡ଼ିଲେ । ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ବହୁ ବ୍ୟୟସାପେକ୍ଷ ହେଲେହେଁ ପଣ୍ଡିତ ମହାଶୟଙ୍କ ଜନପ୍ରିୟତା, ଅକ୍ଳାନ୍ତ ଶ୍ରମ ଓ ଅପୂର୍ବ କର୍ମ-କୁଶଳତା ତାଙ୍କର ଏ ସ୍ୱପ୍ନକୁ ଅଚିରେ ସଫଳ କଲା । ପଣ୍ଡିତ ମହାଶୟଙ୍କର ତ୍ୟାଗ ଓ ସାଧନାର ମୂର୍ତ୍ତି ବିଗ୍ରହ ରୂପେ ଏ ଅନୁଷ୍ଠାନ ଉତ୍ତରୋତ୍ତର ଉନ୍ନତିର ପଥରେ ଅଗ୍ରସର ହୋଇ ଏବେ ତାହା ଆମ ସେ ଅଞ୍ଚଳରେ ବିଶେଷ ଖ୍ୟାତିର ଅଗ୍ରାଧିକାରୀ ହୋଇ-ପାରିଛି ।

ବନମାଳୀ ପଣ୍ଡିତେ ବହୁକାଳ ପର୍ଯ୍ୟନ୍ତ ଦୋହଲ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସର୍ବମୟ କର୍ତ୍ତା ହୋଇ ରହିବା ସଙ୍ଗେ ସଙ୍ଗେ ତାଙ୍କର ବହୁମୁଖୀ କର୍ମ ପ୍ରଚେଷ୍ଟା ଦ୍ୱାରା ନାନା ଭାବରେ ସେ ଅଞ୍ଚଳର ସେବାରେ ନିଜକୁ ନିୟୋଜିତ କଲେ । କେତେକ ଅନିବାର୍ଯ୍ୟ କାରଣରୁ ୧୯୪୯ରେ ତାଙ୍କୁ ଦୋହଲ ସ୍କୁଲ ଛାଡ଼ିବାକୁ ପଡ଼ିଲା । ଦୋହଲ ଛାଡ଼ି ସେ କୋଠପଦା ମ. ଇ. ସ୍କୁଲରେ ଶିକ୍ଷକତା ଗ୍ରହଣ କଲେ ଏବଂ ସେହିଠାରୁ ଆରମ୍ଭ ହେଲା ତାଙ୍କ ସାଧନାମୟ ଜୀବନର ଦ୍ୱିତୀୟ ପର୍ଯ୍ୟାୟ । ଦୋହଲରୀର ସୀମିତ ପରିସର ମଧ୍ୟରେ ଯେଉଁ ପ୍ରତିଭା ଉନ୍ମେଷିତ ହୋଇଥିଲା, ତାହା ସେହିଠାରୁ ଏକ ବୃହତ୍ତର ପରି-ପ୍ରେକ୍ଷୀରେ ପରିପୂର୍ଣ୍ଣ ବିକାଶ ନିମିତ୍ତ ସୁଯୋଗ ଲାଭ କଲା ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଏଥି ପୂର୍ବରୁ ନିମ୍ନ-ମାଧ୍ୟମିକ ବିଦ୍ୟାଳୟ ସମୂହର ଶିକ୍ଷକଗଣ ଅତ୍ୟନ୍ତ ଅବହେଳିତ, ଏକାନ୍ତ ଦୀନହୀନ ଜୀବନ ଯାପନ କରୁଥିଲେ ! ସେମାନଙ୍କ ମଧ୍ୟରେ ଏକତା ଓ ସଂହତି ନ ଥିଲା । ସେମାନଙ୍କ ହାରି ଗୁହାରି ଶୁଣିବା ପାଇଁ ଓ କର୍ତ୍ତୃପକ୍ଷଙ୍କ ଠାରେ ସେମାନଙ୍କର ଦାବୀ ଉପସ୍ଥାପିତ କରିବା ପାଇଁ ରାଜ୍ୟରେ କୌଣସି ଅନୁଷ୍ଠାନ ନ ଥିଲା । ସେମାନେ ଯେ ରାଜ୍ୟର ଶିକ୍ଷା ଅବସ୍ଥାର ଏକ ଅପରିହାର୍ଯ୍ୟ ଓ ଗୁରୁତ୍ୱ ପୂର୍ଣ୍ଣ ଅଙ୍ଗ-ଏହା ସ୍ୱୀକୃତ ହେଉ ନ ଥିଲା । ବିଦ୍ୟାଳୟର ସ୍ଥାନୀୟ କର୍ତ୍ତୃପକ୍ଷ ଓ ପରିଚାଳନା ସମିତିମାନଙ୍କ ଦ୍ୱାରା ସେମାନେ ନାନା ଭାବରେ ଲାଞ୍ଛିତ, ଅପମାନିତ ଓ ଶୋଷିତ ହେଉଥିଲେ । ସେମାନଙ୍କର ଏ ପ୍ରକାର ଦୁର୍ଦ୍ଦଶା ଓ ଦୁର୍ଭାଗ୍ୟର କେତେକ ଦୃଷ୍ଟାନ୍ତ ବନମାଳୀ ପଣ୍ଡିତଙ୍କ ଦୃଷ୍ଟିକୁ ଆସିଲା । ସେମାନଙ୍କର ଦୟନୀୟ ଅବସ୍ଥା ତାଙ୍କର ହୃଦୟକୁ ଗଭୀର ଭାବରେ ଆଲୋଡ଼ିତ କଲା । ସେ ଭାବିଲେ, ଶିକ୍ଷକ ସମାଜର ଏହି ଅବହେଳିତ ଶ୍ରେଣୀ ପ୍ରତି ତାଙ୍କର କିଛି କରିବାର ଅଛି । ସେ ଜାଣିଥିଲେ, ଏହା ସହଜସାଧ୍ୟ ବ୍ୟାପାର ନୁହେଁ । ପୁଣି ଏଥିରେ ବହୁ ପ୍ରତିବନ୍ଧକ ରହିଛି । କିନ୍ତୁ ପ୍ରତିବନ୍ଧକ

ତ ତାଙ୍କ ଜୀବନର ଚିର ସହଚର । ନିଜର ସମସ୍ତ ଶକ୍ତି ଠୁଳ କରି ଶୀର ଜୀବନରେ ପୁଣି ଥରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ ପ୍ରତିଷ୍ଠା କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଦେଲେ । ତାଙ୍କର ଅସାଧାରଣ ସଂଗଠନ ଶକ୍ତି ଓ ତ୍ୟାଗ ବଳରେ ସେ ଏହାକୁ ଏକ ସକ୍ରିୟ ଓ ଶକ୍ତିଶାଳୀ ଅନୁଷ୍ଠାନ କରି ଗଢ଼ିବାରେ ଅଚିରେ ସମର୍ଥ ହେଲେ ।

ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କର ଯୁକ୍ତିଯୁକ୍ତ ଦାବୀ ସମୂହ ବିଭାଗୀୟ ଅଧିକାରୀ ଓ କର୍ତ୍ତାମାନଙ୍କର ସମ୍ମୁଖରେ ଉପସ୍ଥାପିତ କରି ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ଲାଘବ କରିବାରେ ଏ ଅନୁଷ୍ଠାନ ବହୁ ପରିମାଣରେ ସଫଳ ହୋଇଅଛି । ଛାତ୍ର କଲ୍ୟାଣ ଓ ଶିକ୍ଷାର ମାନବୃଦ୍ଧି ନିମିତ୍ତ ଏହି ସଙ୍ଘ ଏକ ପତ୍ରିକା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ଫଳପ୍ରଦ ପଦକ୍ଷେପମାନ ଗ୍ରହଣ କରିଅଛି । ଏହା ସମ୍ଭବ ହୋଇ ପାରିଛି କେବଳ ବନମାଳୀ ପଣ୍ଡିତଙ୍କର ଏକନିଷ୍ଠ ସାଧନା, ଜ୍ୱଳନ୍ତ ତ୍ୟାଗ ଓ ଅପୂର୍ବ କର୍ମକୁଶଳତା ହେତୁ । ଓଡ଼ିଶାର ଶିକ୍ଷକ ସଙ୍ଘ ଇତିହାସରେ ବନମାଳୀ ପଣ୍ଡିତଙ୍କ ନାମ ଯେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ଧନ ସମ୍ପଦ, କୁଳାଭିମାନ ଓ ପ୍ରଭୁତ୍ୱ ପ୍ରତିପତ୍ତି ନ ଥାଇ ଏକ ନିଃସ୍ୱ ଦରିଦ୍ର ବ୍ୟକ୍ତି ନିଜର ସାଧନା, ତ୍ୟାଗ ଓ କର୍ତ୍ତବ୍ୟ-ନିଷ୍ଠା ବଳରେ କ'ଣ କରିପାରେ, ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ବନମାଳୀ ପଣ୍ଡିତେ । ଉତ୍କଳର ଶିକ୍ଷକ ସମାଜ ତାଙ୍କୁ ଉତ୍କଳ ଶିକ୍ଷକ ମହାସଙ୍ଘର ସଭାପତି ରୂପେ ନିର୍ବାଚିତ କରି ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଛି ।

ନିଜର ସାଧନା ବଳରେ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଜଣେ ସାମାନ୍ୟ ସହକାରୀ ଶିକ୍ଷକ ପଦରୁ ଉଠି ସେ ଆଜି ଉତ୍କଳ ଶିକ୍ଷକ ମହାସଙ୍ଘର ସଭାପତି ହୋଇ ପାରିଛନ୍ତି । ଏହା ଏ ଦେଶର ଯୁବକମାନଙ୍କୁ ନୈରାଶ୍ୟର ଘନ ଅନ୍ଧକାର ମଧ୍ୟରେ ଯେ ଆଶାର ଆଲୋକ ଦେଖାଇବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ମୋ ବିଶ୍ୱାସରେ ତାଙ୍କର ତ୍ୟାଗ, ସାଧନା ଓ ପ୍ରତିଭା ପ୍ରତି ସତ୍‌କାର୍ଯ୍ୟତ ସମ୍ମାନ ପ୍ରଦର୍ଶନ କରାଯିବ, ଯଦି ତାଙ୍କର ସାଧନାପୀଠ ଦୋହଲ ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ 'ବନମାଳୀ ବ୍ରହ୍ମଚାରୀ ବିଦ୍ୟାପୀଠ' ନାମରେ ନାମିତ କରାଯାଏ ।

ସରକାର ଏ ଦିଗରେ ବିହିତ ପଦକ୍ଷେପ ଗ୍ରହଣ କଲେ ଏହା ହେବ ସେ ଅଞ୍ଚଳର ଶତ ଶତ ଅଧିବାସୀଙ୍କର ପ୍ରତିଭା ପ୍ରତି ବିନୀତ ଶ୍ରଦ୍ଧାଞ୍ଜଳି ।

● ଅବସରପ୍ରାପ୍ତ ଅଧ୍ୟକ୍ଷ
ଅନୁଗୁଳ ଟ୍ରେନିଂ କଲେଜ



# ମୋ ଦୃଷ୍ଟିରେ ବ୍ରହ୍ମଚାରୀ

ଶ୍ରୀ ଅନାମ ଚରଣ ଦାସ

"ମାନବ ଜୀବନ ନୁହଇଁ କେବଳ ବର୍ଷ-ମାସ-ଦିନ ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ।"

କର୍ମ ହିଁ ଧର୍ମ ( Work is worship ) ଓ କର୍ତ୍ତବ୍ୟ ହିଁ ଈଶ୍ୱର (Duty is God) ଏହାହିଁ ଯାହାର ଧାରଣା ଓ ଧ୍ୟେୟ, ସେ ଏକା ପ୍ରକୃତ ମନୁଷ୍ୟ। ଖାଇବା, ପିଇବା, ବଞ୍ଚିବା ଓ ଜୀବନକୁ ସୁନ୍ଦର ଭାବେ ଉପଭୋଗ କରିବା ମାନବ ଧର୍ମ ନୁହେଁ । ରୂପ-ରସ-ଗନ୍ଧଭରା ଦୁନିଆରେ ମନୁଷ୍ୟକୁ କୁପଥକୁ ଟାଣି ନେବାକୁ ବହୁ ଆକର୍ଷଣ ଅଛି । ଏସବୁ ଏଡ଼ି କର୍ତ୍ତବ୍ୟକୁ ଚିହ୍ନିବା-ଭଗବାନଙ୍କୁ ଚିହ୍ନିବା ସହଜ ନୁହେଁ । ଯେ ଚିହ୍ନେ ସେ ଖାଲି ମନୁଷ୍ୟ ନୁହେଁ ସୁମନୁଷ୍ୟ (Superman)। "କର୍ମଣ୍ୟେହି ସିଦ୍ଧ୍ୟନ୍ତି ପୁରୁଷାଣି ନ ମନୋରଥଃ।" କର୍ତ୍ତବ୍ୟ ହିଁ କଷଟି ପଥର। ତେଣୁ ପରପାଇଁ ବଞ୍ଚିବା ମଧ୍ୟ ମାନବ ଧର୍ମ । ଯେ ଆତ୍ମକୈନ୍ଦ୍ରିକ ସେ ବଡ଼ ସ୍ୱାର୍ଥପର । ଯେ ପରର ମନ ଚିହ୍ନେ ନାହିଁ, ସେ ପ୍ରଭୁ ପଣକୁ ଭଜନ ନୁହେଁ । କର୍ମ କରି ଫଳ ପ୍ରାପ୍ତିର ଆଶା ରଖିବା ମଧ୍ୟ ଉଚିତ ନୁହେଁ । କର୍ତ୍ତବ୍ୟ ନିଷ୍ଠାର ପୁରସ୍କାର ଯୁଗେ ଯୁଗେ ମିଳେ । କିନ୍ତୁ ସମସ୍ତେ କର୍ମୀ ନୁହନ୍ତି କିମ୍ବା କର୍ତ୍ତବ୍ୟନିଷ୍ଠ ନୁହନ୍ତି। ଯେ ତୁଳସୀ, ସେ ଦୁଇପତରୁ ବାସେ।

ଏସବୁକୁ ମୁଁ ଆଜି ଯାହାଙ୍କୁ ଲକ୍ଷ୍ୟକରି ଲେଖୁଛି, ସେ ସେହିଭଳି ଜଣେ ବ୍ୟକ୍ତି । ଯାହାଙ୍କୁ ବ୍ୟକ୍ତି କହିଲେ ଯଥେଷ୍ଟ ନୁହେଁ । ସେ ଏକକ ନୁହନ୍ତି—ଏକ ଅନୁଷ୍ଠାନ । ଯାହାଠାରୁ ପ୍ରତ୍ୟେକ ଲୋକ ଶିକ୍ଷା କରିବାର ଅଛି, ଏହିଭଳି ଜଣେ ନରର ପୌରୁଷ ପଣରୁ ଅନ୍ତତଃ ପକ୍ଷେ ମୋର କିଛି ଶିକ୍ଷାଲାଭ ହୋଇଛି । 'ନିଜ ହିତ ପାଇଁ କେବେ ଜାତ ନୁହେଁ ହିନ୍ଦୁ।' ତେଣୁ ଅନ୍ୟର ହିତରେ ଯାହାର ପ୍ରତି ପ୍ରାଣବିନ୍ଦୁ ଉତ୍ସର୍ଗିତ, ସେ କେବଳ ଧନ୍ୟ। କିନ୍ତୁ ସମସ୍ତେ ସାଧାରଣକୁ ଅସାଧାରଣରେ ପରୀକ୍ଷା କିମ୍ବା ପୁରୁଣା ସମୁଦ୍ରରେ ନୂଆ ମୁହାଣ ଫିଟାଇବାର ହିମତ୍ କରିପାରନ୍ତି ନାହିଁ । ଆଜିର ମଣିଷର ନିତିଦିନିଆ ଜୀବନରେ ସୁଖ-ଦୁଃଖ, ହସ-କାନ୍ଦ, ଆଶା-ନିରାଶା ଯେମିତି କ୍ଷଣିକ, ସେମିତି ତାର ବ୍ୟକ୍ତିଗତ ଜୀବନର ଧାରା ଚିରଜର୍ଜରିତ । ହୁଏ ତ ବ୍ୟକ୍ତିକୈନ୍ଦ୍ରିକ ନଚେତ୍ ସାଙ୍ଗଠନିକ ।

ଆଜିର ଦୁନିଆରେ ପରିବର୍ତ୍ତନ ଆଣିବା ଭାରି ସହଜ। ପରିବର୍ତ୍ତନ ପୁଣି ଦୁଇଟି ଉପାୟରେ ସମ୍ଭବ। ହୁଏତ ବୁଲେଟ (Bullet) ଦ୍ୱାରା ନଚେତ୍ ବ୍ୟାଲେଟ (Ballot) ଦ୍ୱାରା, ମୁଁ କିନ୍ତୁ ବୁଲେଟ୍ କହିଲେ ତୋପ ବନ୍ଧୁକର ଗୁଳି ବୁଝୁନାହିଁ କିମ୍ବା Ballot କହିଲେ ଭୋଟ କାଗଜ ବୁଝୁନାହିଁ । ଏହି ଦୁଇଟି ଅସ୍ତ୍ରକୁ ଆଶ୍ରୟ ଯେ କରେ, ସେ ଦୁନିଆରେ ନୂଆବାଟ ଫିଟାଇବାକୁ ସମର୍ଥ ହୁଏ । ଆମର ବ୍ରହ୍ମଚାରୀ Ballot ଅର୍ଥାତ୍ ଗଣତାନ୍ତ୍ରିକ ପ୍ରଥାରେ (ଠିକ୍ ନହେଲେ ମଧ୍ୟ) ଓଡ଼ିଶାର ଶିକ୍ଷକ ସଙ୍ଘ ଜରିଆରେ ଓ Bullet ଅର୍ଥ ତାଙ୍କର ଜ୍ୱାଳାମୟୀ ଭାଷାରେ ଶିକ୍ଷା କ୍ଷେତ୍ରରେ ନୂତନର

ସନ୍ଧାନରେ ବ୍ରତୀ । ଶିକ୍ଷା ଜଗତରେ ଓ ଶିକ୍ଷକ ସମାଜରେ ପରିବର୍ତ୍ତନ ଆଣିବା ତାଙ୍କର ଲକ୍ଷ୍ୟ ।

ମୁଁ ଯେବେ ତାଙ୍କୁ ଲକ୍ଷ୍ୟ କରିଛି, ଜାଣିଛି ସେ ମନୁଷ୍ୟ ନୁହଁନ୍ତି ଏକ କଳଘଡ଼ି । ଅବିରତ କର୍ମମୁଖର । ବିରାମହୀନ ସେ କର୍ମ । କ୍ଲାନ୍ତିହୀନ ସେ ନିଷ୍ଠା । ପ୍ରେରଣାପୂର୍ଣ୍ଣ ସେ ଉତ୍ସାହ । ଯେ ତାଙ୍କର ପରୀକ୍ଷା ସମୟର ଦିବାରାତ୍ରି ଖଟଣି ଦେଖିଛି, ସେ କେବଳ ଜାଣିବ ବ୍ରହ୍ମଚାରୀ ମନୁଷ୍ୟ ନୁହନ୍ତି, ଗୋଟିଏ କଳ । ତାଙ୍କଠାରେ ଯୌବନ-ସୁଲଭ ମାଦକତା ଓ ପ୍ରୌଢ଼ ଜୀବନର ଗାମ୍ଭୀର୍ଯ୍ୟତା ଏକାଧାରରେ ଠୁଳ । ତାଙ୍କଠାରେ ବୟସର ଦାଗ ଲାଗିଛି ବୋଲି ଜାଣି ହୁଏ ନାହିଁ । ଏହି ଦୃଢ଼ କର୍ତ୍ତବ୍ୟବୋଧ ଓ ନିରଳସ କର୍ମତତ୍ପରତା ତାଙ୍କୁ ଆଜି ଓଡ଼ିଶାର ଅବହେଳିତ, ନିଷ୍ପେଷିତ ଶିକ୍ଷକ ସମାଜର ନେତୃତ୍ୱ ଦେଇଛି । ନେତା ହୋଇ ଜନ୍ମ କେହି ହୋଇ ନଥାଏ କିମ୍ବା କେତେକ ସ୍ତାବକଙ୍କର ସ୍ତୁତିଗାନରେ କେହି ନେତା ପାଲଟି ଯାଏ ନାହିଁ । ନିର୍ଦ୍ଦିଷ୍ଟ ସାମାଜିକ ପରିସ୍ଥିତି ଓ ପରିପ୍ରେକ୍ଷୀରେ ଜନତା ମଧ୍ୟରୁ ନେତୃତ୍ୱର ସୃଷ୍ଟି ହୁଏ । ଏହା କିନ୍ତୁ ଆକସ୍ମିକ ନୁହେଁ । ବନମାଳୀ ବାବୁଙ୍କଠାରେ ନେତୃତ୍ୱ ପ୍ରଚ୍ଛନ୍ନ ଥିଲା । ତାହା ମଞ୍ଜିରୁ ଗଛ ବାହାରିବା ପରି ଶିକ୍ଷକ ସଙ୍ଘର ଉପଯୁକ୍ତ ବାତାବରଣରେ ପ୍ରକାଶିତ ହେଲା । ୧୯୫୮ ମସିହାରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘର ଜନ୍ମ । ବନମାଳୀ ବାବୁ ପେଷଣ, କଷଣ ଓ ଶୋଷଣ ମୁକ୍ତ ଆଶାରେ କୋଠପଦା ମି. ଇ. ସ୍କୁଲର ଶିକ୍ଷକତା ଛାଡ଼ି ଶିକ୍ଷା, ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ଉନ୍ନତି ଲାଗି ଅନିଶ୍ଚିତ ଭବିଷ୍ୟତର ଗହ୍ୱରକୁ ଲମ୍ଫ ପ୍ରଦାନ କଲେ । ଶିକ୍ଷା ତଥା ଶିକ୍ଷାନୁଷ୍ଠାନ ସାମାଜିକ ପରିବର୍ତ୍ତନରେ ନେତୃତ୍ୱ ଦିଏ । ଶିକ୍ଷା ପ୍ରଣାଳୀର ପରିବର୍ତ୍ତନ ଓ ସାମାଜିକ ପୁନର୍ଗଠନ ପରସ୍ପରକୁ ପ୍ରଭାବିତ କରେ । ଶିକ୍ଷାବିତ୍ କିମ୍ବା ଶିକ୍ଷା ପ୍ରେମୀ ନ ହେଲେ ଏ ନେତୃତ୍ୱ ନେବା ସହଜ ନୁହେଁ । ନିଜର ନିରପେକ୍ଷ ଚିନ୍ତାଧାରା, ଗଭୀର ଜ୍ଞାନ ପିପାସା, ନିବିଡ଼ ସମାଜ ଚେତନା, ଦୃଢ଼ ଆତ୍ମ ପ୍ରତ୍ୟୟ ଓ ଚରିତ୍ରବତ୍ତାର ଏକାନ୍ତ ସମାବେଶ ନ ହେଲେ ନେତୃତ୍ୱ ନେବା ସମ୍ଭବ ନୁହେଁ । ଏସବୁ ଗୁଣର ସମାବେଶ ଅଳ୍ପବହୁତେ ବ୍ରହ୍ମଚାରୀଙ୍କଠାରେ ମୁଁ ଦେଖିଛି । ତେଣୁ ସେ ଉଚ୍ଚ ଶିକ୍ଷିତ ବା ବିଶ୍ୱବିଦ୍ୟାଳୟ ଡିଗ୍ରୀଧାରୀ ନ ହେଲେ ବି ଶିକ୍ଷକ ମହାସଙ୍ଘର ସଭାପତି ଅର୍ଥାତ୍ ଶିକ୍ଷକ ସମାଜର ସର୍ବଶ୍ରେଷ୍ଠ ନେତା । ଏକାଧାରରେ ସେ ପଣ୍ଡିତ, ସେ ବ୍ରହ୍ମଚାରୀ, ସେ ଶିକ୍ଷକ, ସେ ସାହିତ୍ୟିକ । ତାଙ୍କଠାରେ କେତେକ ବିପରୀତ ଗୁଣର ସମାବେଶ ଲକ୍ଷ୍ୟ କରିବାର କଥା । ବେଳେ ବେଳେ ହୃଦୟ ତାଙ୍କର ବଜ୍ରଠାରୁ କଠିନ, ପୁଣି କେବେ କେବେ ଲବଣୀ ପରି କୋମଳ । ଅନ୍ୟାୟ ବିରୁଦ୍ଧରେ କେବେ କଠୋର ସଂଗ୍ରାମ କରିବାକୁ ଦୃଢ଼ପରିକର ତ ପୁଣି କେବେ ଧନ-ନିର୍ଯ୍ୟାତିତ ଶିକ୍ଷକ ବା ଯେ କୌଣସି ଆଶ୍ରୟ ପ୍ରାର୍ଥୀର ମର୍ମସ୍ପର୍ଶୀ ଦୁଃଖରେ ଭାବ-ବିହ୍ୱଳ ଓ ଶୋକକାତର । ଦରିଦ୍ରକୁ ଅର୍ଥଦାନରେ ସେ ଉଦାରତାର ମୂର୍ତ୍ତି-ପ୍ରତୀକ । କେହି କେହି ତାଙ୍କୁ ବି ଭୁଲ ବୁଝନ୍ତି । ମାତ୍ର ସେ ଯେମିତି ଉଦାର ସେମିତି ମିତବ୍ୟୟୀ । ମିତବ୍ୟୟିତା ସେ କଠୋର ଭାବରେ ଅବଲମ୍ବନ କରନ୍ତି । "ତେଜସ୍ୱି ନାବଧୀତ ମସ୍ତୁ" ତାଙ୍କ ଜୀବନର ଦର୍ଶନ ।

ଜୀବନରେ ବଡ଼ ହେବାକୁ ଇଚ୍ଛା କଲେ ରାଜନୀତି କିମ୍ବା ବାଣିଜ୍ୟ ବ୍ୟବସାୟ ଆଜି ଉତ୍କୃଷ୍ଟ ପନ୍ଥା, ମାତ୍ର ବ୍ରହ୍ମଚାରୀ ଏ ଦୁଇ ପ୍ରକାର ପନ୍ଥାର ଆଶ୍ରୟ ନେବାକୁ କ୍ଷମ ଥିଲେ ମଧ୍ୟ କାହିଁକି କେଜାଣି ଶିକ୍ଷା କ୍ଷେତ୍ର, ଶିକ୍ଷାଦାନ ଓ ଶିକ୍ଷା ସଂସ୍କାରରେ ବ୍ରତୀ ହେଲେ ଜାଣେ ନାହିଁ । ମତ୍ସ୍ୟମାନଙ୍କୁ ଉଦ୍ଧାର କରିବାକୁ ଋଷି ଚ୍ୟବନ କେଉଁଠି ଜାଲରେ ପଶିଥିଲେ । ମୋର ମନେହୁଏ, ବ୍ରହ୍ମଚାରୀ ଶିକ୍ଷକତା କରି ନ ଥିଲେ ନିଜର ସଂଚିତ ବହୁ ତିକ୍ତ-ମଧୁର ଅନୁଭୂତି ଓ ପୁଞ୍ଜୀଭୂତ ରୁଦ୍ଧ ଅସନ୍ତୋଷର ପ୍ରତିକ୍ରିୟା ପ୍ରକାଶ ପାଇ ନଥାନ୍ତା । ଶିକ୍ଷକ ଜାତିକୁ ନିଜ ଗୋଡ଼ରେ ଛିଡ଼ା କରାଇବା ପାଇଁ ଯେଉଁ ଅସରନ୍ତି ଶକ୍ତିର ଉତ୍ସ, ବିପୁଳ କାର୍ଯ୍ୟଶାଳତା ଓ ପ୍ରଚଣ୍ଡ ପୁରୁଷକାର ଦରକାର, ତାହାର ସେ ବାସ୍ତବ ଅଧିକାରୀ । ଲେଖମ ମୁନରେ ଯାହାର ଅଗ୍ନିର

ଉଦ୍‌ଗିରଣ, ଭାଷଣରେ ଯାହାର କର୍ତ୍ତବ୍ୟନିଷ୍ଠାର ପ୍ରେରଣା, ସାକ୍ଷାତ୍‌କାରରେ ଯାହାର ନିର୍ଭୀକ ମତ ପ୍ରକାଶ, ତାଙ୍କୁ ଖାଲି ଅନ୍ୟାୟ ଧର୍ମୀ ଶାସକ ନୁହନ୍ତି, ସମାଜର ବହୁ କ୍ଷେତ୍ରରେ ଦୁଷ୍କର୍ମ-ପ୍ରେମୀ ଅଧିଷ୍ଠିତ, ପରଶ୍ରୀପୁଷ୍ଟ ବ୍ୟକ୍ତି ହଂସ୍ରଜନ୍ତୁ ପରି ଭୟ କରନ୍ତି । କେହି ଶିକ୍ଷକ ଅନ୍ୟାୟକୁ ଦୃଢ଼ ସ୍ୱରରେ ପ୍ରତିବାଦ କଲେ ପ୍ରତିବାଦୀଙ୍କୁ "ବ୍ରହ୍ମଗ୍ରହୀ ଗିଲ୍" (ବଟିକା) ଖାଇଥିବାର ଆକ୍ଷେପ ମଧ୍ୟ କେତେକ ଅଫିସର କରିଥିବାର ମୁଁ ଜାଣିଛି । ଏହା କମ୍ ଗୌରବର କଥା ନୁହେଁ ।

ଉଦ୍ୟମଶୀଳତାର ଅଭାବରେ ପୁରୁଷକାରର ବିଲୁପ୍ତି ଘଟେ । ଏକଥା ସେ ଉତ୍ତମ ଭାବେ ଉପଲବ୍ଧି କରି ନିଶ୍ଚେଷ୍ଟ ନିରୁତ୍ସାହିତ ଶିକ୍ଷକମାନଙ୍କୁ ପରମୁଖାପେକ୍ଷୀ ନ ହେବାକୁ ସର୍ବଦା ସଚେତନ କରାଇଥାନ୍ତି । ଶିକ୍ଷକମାନଙ୍କର ଅଶ୍ରୁଳ ରୋଦନ, ହା-ହତୋସ୍ମି ର ଜଞ୍ଜାଳମୟ ଜୀବନରେ ତାଙ୍କର ସ୍ନେହ ସହାନୁଭୂତି ପୂର୍ଣ୍ଣ ପଦେ ଅଧେ ଉତ୍ସାହ ବାଣୀ, ଆଶା-ଆଶ୍ୱାସନା ପୂର୍ଣ୍ଣ ପଦେ ଅଧେ ମିଠାକଥା ଦେବତାର ଆଶୀର୍ବାଦ ଭଳି ଶିକ୍ଷକମାନଙ୍କୁ ବୋଧହୁଏ । ଶିକ୍ଷକମାନେ ଅନେକ କିଛି ଆଶା କରନ୍ତି ତାଙ୍କଠାରୁ । ଶିକ୍ଷକ ସମାଜର ଦୁଃଖ ନିର୍ଯ୍ୟାତନା ଶେଷର ଆରମ୍ଭ ହୋଇଛି ମାତ୍ର । ଆମକୁ ଆହୁରି ପ୍ରେରଣା ଦେବାକୁ ସେ ଆହୁରି ବଜ୍ର-କଠିନ ହୃଦୟ ନେଇ ଓ ଅସି ସମ ମସୀ ନେଇ ବଞ୍ଚି ରହିବା କାମନା ଛଡ଼ା ଆଉ କଣ ଦରକାର ?

ମୁଁ ତାଙ୍କୁ କେବଳ ଶିକ୍ଷକ ବା ଶିକ୍ଷକ ନେତା ଭାବେ ଯେତିକ ଜାଣିଛି ତାହାହିଁ ଲେଖୁଛି । ମୁଁ ନିମ୍ନ ମାଧ୍ୟମିକ ସଙ୍ଘର ଆରମ୍ଭରୁ ଅର୍ଥାତ୍ ୧୯୫୮ ଠାରୁ ନିଜେ ସେହି ସଙ୍ଘର ବିଭିନ୍ନ କର୍ମକର୍ତ୍ତା ଦାୟିତ୍ୱରେ ରହି ଓ ଏବେ ମଧ୍ୟ ସେହି ସଙ୍ଘର ବାହାରେ ବହୁ କ୍ଷେତ୍ରରେ କାର୍ଯ୍ୟ କରିବାର ଏକାନ୍ତ ସୁଯୋଗ ପାଇ ତାଙ୍କୁ ଅଧିକରୁ ଅଧିକ ଜାଣିବା ମୋ ପକ୍ଷରେ ଯେତିକ ସହଜ ହେଉଛି, ସେତିକ ତାଙ୍କର ବହୁ ପ୍ରଶଂସନୀୟ ଗୁଣର ପୂଜାରୀ ହେବାକୁ ମତେ ପଡ଼ୁଛି । ଅନ୍ୟକୁ ପରୀକ୍ଷା କରି ଜ୍ଞାନର ଗଭୀରତା ମାପିବାରେ ତାଙ୍କର ଯେତିକ ସତ୍ତ୍ୱ, ତାଠାରୁ ଅଧିକ ଆଗ୍ରହ ଅପର ଠାରୁ ଅନେକ ନୂଆ ନୂଆ ଶବ୍ଦ ଜ୍ଞାନ ଓ ପ୍ରୟୋଗ ବିଧି ହାସଲ କରିବାକୁ । ଏହା ହିଁ ଏକ ମହତ୍ ଗୁଣ । ଯେ ଜ୍ଞାନୀ, ସେ ସଦା ଛାତ୍ର ଓ ସଦା ଗବେଷକ ହେବାକୁ ପ୍ରୟାସୀ ।

ତାଙ୍କର ବ୍ୟକ୍ତିଗତ ସଂସର୍ଶରେ ଆସି ଓ ତାଙ୍କ ଲିଖିତ କେତେକ ପୁରସ୍କାର ପ୍ରାପ୍ତ ଶିଶୁ ସାହିତ୍ୟ ପଢ଼ି ତାଙ୍କର ଅତୀତ ଓ ବର୍ତ୍ତମାନକୁ ଲକ୍ଷ୍ୟ କରିବା ସହଜ ହୋଇଛି । ସେ ଆଜିର ଶିକ୍ଷକ ନେତା ହେବା ପୂର୍ବରୁ ଜଣେ ଆଦର୍ଶ ଶିକ୍ଷକ, ସମାଜ ସଂସ୍କାରକ ଓ ଲେଖକ ହିସାବରେ ଯେତିକ ପରିଚିତ, ତାଠୁଁ ଅଧିକ ପରିଚିତ ଜଣେ ନିସ୍ପୃହ ସମାଜସେବୀ ଓ ଦୟାଳୁ ପରୋପକାରୀ ଭାବରେ । ତାଙ୍କର ଅନେକ ପ୍ରତିଭାର ଆଭାସ ବାଲ୍ୟ କାଳରୁ ହିଁ ମିଳିଥିଲା । ସେ ୨୩ ବର୍ଷରେ ବିପତ୍ନୀକ ଗୋପବନ୍ଧୁଙ୍କ ଜୀବନଚରିତ ପଢ଼ି ନିଜ ସ୍ତ୍ରୀର ମୃତ୍ୟୁ ପରେ ୨୬ ବର୍ଷ ବୟସର ଉଦ୍ଦାମ ଯୌବନକୁ ବ୍ରହ୍ମଚର୍ଯ୍ୟର କଠୋର ଶିକୁଳିରେ ବାନ୍ଧିବାକୁ କ୍ଷମ ହେଲେ । ସଂଯତ ଆହାର, ନିୟମିତ ବ୍ୟାୟାମ, ସ୍ନାନ-ଧ୍ୟାନ ଓ ମୁକ୍ତାକାଶ ତଳେ ଶୟନ ତାଙ୍କୁ ବାର୍ଦ୍ଧକ୍ୟରେ ମଧ୍ୟ ଯୌବନର ଉଦ୍ଦୀପନା, ଉତ୍ସାହ ଓ ଶକ୍ତି ଦେଇଛି । ଜନୈକ ଇଂରେଜ କବିଙ୍କର **Old man's comfort** ପଢ଼ିଲେ ମୋର ବ୍ରହ୍ମଗ୍ରହୀଙ୍କର ଜୀବନ-ଦର୍ଶନ ମନେ ପଡ଼େ । ସେଠାରେ **Father William** ଯେପରି ବାର୍ଦ୍ଧକ୍ୟ ସମୟରେ ନିର୍ଭୟରେ ମୃତ୍ୟୁ ସମ୍ବନ୍ଧରେ ବାକ୍ୟାଳାପ କରୁଥିଲେ ଓ ତାଙ୍କର ଜୀବନର ସୁଖ ଓ ସ୍ୱାସ୍ଥ୍ୟକୁ ଅତୁଟ ରଖି ପାରିଥିଲେ, ତାହାହିଁ ବ୍ରହ୍ମଗ୍ରହୀ କରି ପାରିଛନ୍ତି । ବହୁ ଯୁବକ (ଯୁ-ହାନ ବଳଭାବେ) ତାଙ୍କର ଶରୀର ଶୋଭା ଓ ହାଡ଼ଭଙ୍ଗା ଶୀତସଞ୍ଜରେ ଛୁ-ଛୁ ପାଣି ଢାଳିହେବା ଦେଖିଲେ ତାଙ୍କୁ ପ୍ରକୃତରେ ବ୍ରହ୍ମଗ୍ରହୀ କହିବାକୁ ବାଧ୍ୟ ହେବେ । ଆକ୍ଷରିକ ଅର୍ଥରେ ସେ ବନବାସୀ ବ୍ରହ୍ମଗ୍ରହୀ ନୁହଁନ୍ତି, ମାତ୍ର ବନମାଳୀ ବ୍ରହ୍ମଗ୍ରହୀ । ପରମ ଗୃହୀ । ମାଂସାହାରୀ ।

ତାଙ୍କର ଗୃହସ୍ଥଜୀବନ-ଲବ୍ଧ ବିଦ୍ୟା ସହିତ ଗ୍ରାହସ୍ଥ୍ୟ ଜୀବନର ପରିପକ୍ୱ ଅଭିଜ୍ଞତା, ଗଭୀର ପାଣ୍ଡିତ୍ୟ ଓ ନୈତିକ ବିଚାର ଜ୍ଞାନ ତାଙ୍କୁ ବାନପ୍ରସ୍ଥ ଆଡ଼କୁ ନେଇ ଯାଇ ନାହିଁ ସତ, ମାତ୍ର ଉତ୍ତର ବୟସରେ ତାଙ୍କର କର୍ମମୟ ଜୀବନକୁ ଅଧିକ ଋଦ୍ଧିମନ୍ତ ଓ ଗୌରବୋଜ୍ଜ୍ୱଳ କରିଛି । ତାଙ୍କର ଜୟନ୍ତୀ ଦିବସରେ ମୁଁ ତାଙ୍କୁ ଖାଲି ସ୍ମରଣ କରୁନାହିଁ—ଅନୁସରଣ କରୁଛି । ଅପରକୁ ସ୍ମରଣ କରିବା ମାନବର ଧର୍ମ ଓ ସ୍ୱାଭାବିକ ପ୍ରବୃତ୍ତି । ବିଶେଷ ଭାବେ କୃତୀ, ସମ୍ମାନିତ ଓ ଅସାଧାରଣ ବ୍ୟକ୍ତି ବିଶେଷଙ୍କୁ ସ୍ମରଣ କରିବା ଲାଗି ସମସ୍ତେ ଅଭିଳାଷୀ । ଏହାକୁ ପୂଜ୍ୟ-ପୂଜା ବୋଲି କହିଲେ ଆହୁରି ଠିକ୍ ହେବ । କିନ୍ତୁ ଦେବତାଙ୍କୁ ପୂଜା କରିବାକୁ ହେଲେ, ପୂଜକଠାରେ ଦେବ ଭାବର ଆବିର୍ଭାବ ଦରକାର । ଅର୍ଥାତ୍ "ଦେବୋଭୂତ୍ୱା ଦେବଂ ଯଜେତ୍ ।" ବନମାଳୀ ବାବୁଙ୍କ ପରି ଗୁଣୀ, ଜ୍ଞାନୀ, ପଣ୍ଡିତ, ବ୍ରହ୍ମଜ୍ଞଙ୍କୁ ମୋ ଭଳି ଅପାଂକ୍ତେୟ କିପରି ଯେ ସମ୍ମାନିତ କରିବ ତାହା ଜାଣେ ନାହିଁ, ତଥାପି ଯାହା ନିଜର ଅନୁଭୂତ ତାହାହିଁ କହିଲି । ଏଥିରେ ଅତି-ରଞ୍ଜନ କିମ୍ବା ଅନୁରଞ୍ଜନ ନାହିଁ । "ଅଛି ତଦ୍ ବିଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା", ଏହାହିଁ ମୋର ଆଚରିତ ନୀତି ।

● ସମ୍ପାଦକ
କଟକ ଜିଲ୍ଲା ମାଧ୍ୟମିକ ଶିକ୍ଷକ ସଙ୍ଘ



# ଶାନ୍ତ କପୋତ ତୁମର ପଦେ ମୁଁ ନମେ

ଶ୍ରୀ ବାସୁଦେବ ପାତ୍ର

ତୁମେ ତ ସେକାଳ ପଖାଳ···ସେ ଯୁଗ ଲୋକ
ତିନିକୋଡ଼ି ନଅ ବରଷ କଲଣି ଭୋଗ,
ଧୋବ ଦେହେ ଏବେ ଅଙ୍ଗେ ଲଗାଇବା କଥା
ଦେଖି ମନେ ମନେ ଭାବୁଛ କ ହେଲା ଯୁଗ ॥ ୧ ॥

ସୁଖ ଶିକ୍ଷା ଭରା ଯଉବନେ ଯେବେ କାଳ—
ହଜାଇଣ ଦେଲା ହୃଦୟର ବାଣୀ ତୁମ,
ତପସ୍ୱୀର ସମ ବରହ୍ମ ଜୀବନ ଯାପି,
ଅର୍ପିଲ ପର ଉପକାରେ ତନୁ ମନ ॥ ୨ ॥

ସହିଅଛ ବହୁ ନିଷ୍ଠୁର ଅପବାଦ,
ନିର୍ଭୀକ, ଧୀର, ସତ୍ୟ ସନ୍ଧାନୀ, ରଥୀ,
ନିଜ ଜୀବନକୁ ତିଳତିଳ ଜାଳି ତମେ
ରଚିଅଛ କେତେ ଅଲେଖା ଅକୁହା ପୋଥି ॥ ୩ ॥

ଦୀନ ଦୁଃଖୀଙ୍କର ପରାଣ ବନ୍ଧୁ ସମ
ନୟନୁ ଢାଳିଛ ଅଶ୍ରୁ ବହୁତ ଥର,
ନିଷ୍ଠୁର ବାଣୀ ଫୁଟାଇଛ କେବେ ମୁଖେ
ଯେବେ ବା ଦେଖିଛ ସମାଜେ ଅନୀତି ଛବି ॥ ୪ ॥

ନିଷ୍ପେଷିତ ଏ ଗୁରୁକୁଳ-ଗୁରୁ ତୁମେ !
ଆର୍ଯ୍ୟ ରକତ ଶିରାରେ ଶିରାରେ ବହି,
ଲାଲ ମୁଖା ପିନ୍ଧା ଶାସକର ମୁହେଁ କାଳ—
ବୋଲିଅଛ କେତେ ଅପ୍ରିୟ ସତ୍ୟ କହି ॥ ୫ ॥

ବୁଦ୍ଧ ସମାନ ଶୁଦ୍ଧ ଜୀବନ ତୁମ,
ତୁମର ଜୀବନ କୋଟି କଣ୍ଠର ସ୍ୱର,
ମୋହିନୀ ମନ୍ତ୍ରେ ମୁଗ୍ଧ କରିଛ ପ୍ରିୟ
ଦଳିତ ପତିତ ଲାଞ୍ଛିତ ଗୁରୁକୁଳ ॥ ୬ ॥

ଫାଲ୍‌ଗୁନୀ ତୁମ ଅଗ୍ନି ଶପଥ ବଳେ,
(ଆମେ) ଜୟୀ ହେବୁ ଲେପି ଶାସକ ମୁଖରେ କାଳି,
ଧୂର୍ଜଟୀ ତୁମ ତାଣ୍ଡବ ନୃତ୍ୟ ଦେଖି
ଶିଖି-ମନାଇଙ୍କ କଲିଜା ଉଠିବ ଜଳି ॥ ୭ ॥

ତୁମେ ତ ନିଖିଳ ବନ୍ଧୁ ଦରଦୀ ପ୍ରାଣ
ଚଟୁଳ ବଚନେ ବାନ୍ଧିଛ କୋଟି ମନ,
ଅମର ତୁମର ଲେଖନୀ ସୌରଭରେ
ଲୁବ୍ଧ କରିଛ କୋଟି କୈଶୋର ପ୍ରାଣ ॥ ୮ ॥

ଧନ୍ୟ ହେ ତୁମେ ! ତାନ୍ତ୍ରିକ ବ୍ରହ୍ମଗ୍ରସ୍ତ,
ସତ୍ୟ ଶାନ୍ତ ମୈତ୍ରୀ ଗୀତିକା ଗାଇ,
ଅମା ଅନ୍ଧାରୁ ଆଲୋକ ଯାତ୍ରା ପଥେ,
କୃଷ୍ଣ ହେ ! ଆମ ସ୍ୟନ୍ଦନ ନିଅ ବାହି ॥ ୯ ॥

ତୁମେ ନୁହଁ ଖାଲି ଆମର...ବା ତାଙ୍କର...
ତୁମେ ତ ଅଜର ଅମର ମର୍ତ୍ତ୍ୟ ଭୂମେ,
ଦୀର୍ଘାୟୁ ହୁଅ ! ଶ୍ଲାଘ୍ୟ ହେ ବନମାଳୀ !
ଶାନ୍ତ କପୋତ ! ତୁମର ପଦେ ମୁଁ ନମେ ॥ ୧୦ ॥

● ପ୍ରଧାନ ଶିକ୍ଷକ
ଗୌରୀଶଙ୍କର ମ: ଇ: ବିଦ୍ୟାଳୟ
ସୁକୁଡ଼ା, ସୁନ୍ଦରଗଡ଼



# ବ୍ରହ୍ମଚାରୀ !

**ଶ୍ରୀ ବିଷ୍ଣୁଚରଣ ପଣ୍ଡା**

ବ୍ରହ୍ମଚାରୀଙ୍କ ସାଧନା ବ୍ୟର୍ଥ ହୋଇନ । ସେ ବର୍ତ୍ତମାନ ଚାଳିଶ ହଜାର ସଂଖ୍ୟା ବିଶିଷ୍ଟ ଶିକ୍ଷକ ପରିବାରର ମୁଖ୍ୟ କର୍ତ୍ତା । ବ୍ରହ୍ମଚର୍ଯ୍ୟ ପାଳନ କରିବା ସଙ୍ଗେ ସଙ୍ଗେ ନୂତନତ୍ୱ ସୃଷ୍ଟି କରିବା ଆମ ବ୍ରହ୍ମଚାରୀଙ୍କର ବିଶେଷତ୍ୱ । ସେ ଜଣେ ବ୍ୟକ୍ତି ନୁହନ୍ତି, ଗୋଟିଏ ଅନୁଷ୍ଠାନ ।

ଓଡ଼ିଶା ଶିକ୍ଷା ବିଭାଗରେ ଚରମ ଅବହେଳାର ସାକ୍ଷୀ । "ବିଚାରୀ ମାଇନର ସ୍କୁଲ ଶିକ୍ଷକ"—ଯାହା ମୁହଁରେ ନ ଥିଲା ଭାଷା, ମନରେ ନ ଥିଲା ଆଶା, ଯିଏ ମୁମୂର୍ଷୁ ଅବସ୍ଥାରେ ପରର ହାତଟେକାକୁ ଭରସା କରି ପଡ଼ି ରହିଥିଲା, ସେହି କଙ୍କାଳର ଆର୍ତ୍ତନାଦରୁ ବ୍ରହ୍ମଚାରୀଙ୍କ ସୃଷ୍ଟି । ସେ ଥିଲେ ଜଣେ V.M. ଶିକ୍ଷକ । ସଂସାରର ମାୟା ଡୋରି ତାଙ୍କର ଛିଡ଼ି ଯାଇଥାଏ । ଯାହା ନାହିଁ, ଗୃହା ନାହିଁ । କବିଗୁରୁଙ୍କ ସଙ୍ଗୀତ ମୂର୍ଚ୍ଛନା "ଏକଲା ଚଲୋରେ" ସ୍ମରଣ କରି ଅଥଳ ସାଗର ବକ୍ଷରେ ଏକାକୀ ଲମ୍ଫ ପ୍ରଦାନ କଲେ ବ୍ରହ୍ମଚାରୀ, ଦ୍ୱୀପାଲୋକର ସନ୍ଧାନ ପାଇଁ । ମୁଖରେ ତାଙ୍କର ତଥାଗତ ବୁଦ୍ଧଙ୍କର ଅମିୟ ବାଣୀ "ବୁଦ୍ଧଂ ଶରଣଂ ଗଚ୍ଛାମି ।"

ଏ ମହାସ୍ରୋତରେ ଯୋଗଦେଲେ ଜଣକ ପରେ ଜଣେ—ସୁରେନ୍ଦ୍ର, ବ୍ରଜ, ହରିଶ, କେଶବ, ବୈନତେୟ, ସିଦ୍ଧେଶ୍ୱର, ଅନାମ, ବିଷ୍ଣୁ ଓ ଆହୁରି କେତେ । ସଂଗଠନ ଚାଲିଲା ଖୁବ୍ ଜୋରସୋରରେ । ବ୍ରହ୍ମଚାରୀ ବୁଲିଲେ ଓଡ଼ିଶାର ଗଳିକନ୍ଦି । ସଭା ହେଲା । ସମ୍ମିଳନୀ ହେଲା । ବନମାଳୀ ବ୍ରହ୍ମଚାରୀ ସଂଗଠନ ଦାୟିତ୍ୱ ସ୍ୱେଚ୍ଛାରେ ବହନ କଲେ ।

ସାଧନାରେ ନିଷ୍ଠା ଥିଲେ ସିଦ୍ଧିଲାଭ ଖୁବ୍ ସରଳ ହୋଇ ଉଠେ । ତାହା ହିଁ ହେଲା । ବନମାଳୀ ବାବୁଙ୍କ ଅକ୍ଲାନ୍ତ ଉଦ୍ୟମ ଯୋଗୁଁ ଓଡ଼ିଶାର ମାଇନର ସ୍କୁଲର ଶିକ୍ଷକମାନେ ଗୋଟିଏ ପତାକା ତଳେ ଏକତ୍ରିତ ହେଲେ । ଏକକଣ୍ଠରେ ସ୍ଲୋଗାନ ଦେଲେ । କେତେ ସମ୍ମିଳନୀ, କେତେ ମନ୍ତ୍ରୀ, କେତେ ବକ୍ତୃତା, କେତେ ପ୍ରସ୍ତାବ ଆସିଲା ଓ ଗଲା । ମାତ୍ର ସବୁ ଜାଗାରେ ସେହି ଗୋଟିଏ ain spring ବନମାଳୀ ବ୍ରହ୍ମଚାରୀ—ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ଧ୍ରୁବ ଓ ଧ୍ରୁବକାଠି ।

କାମ କେତେଦିନ ଚାଲିଲା ଚଳିବୁଲିରେ । ତାପରେ କଟକରେ ଘର ନିଆଗଲା ଭଡ଼ା । ଦିନକୁ ଦିନ ସଂଘର କାର୍ଯ୍ୟ ଓ ପରିସର ବଢ଼ିବାକୁ ଲାଗିଲା । କମଣ୍ଡଳୁରେ ବା କେତେ ଜାଗା—ମାତ୍ର ଉପାୟ କ'ଣ ?

ସଭ୍ୟ ଚାନ୍ଦାରୁ ବା କ'ଣ କରିହେବ ? ଆରମ୍ଭ ହେଲା ପ୍ରଶ୍ନ ବ୍ୟବସାୟ, ପୁସ୍ତକ ପ୍ରକାଶନ, ଫର୍ମ ଛପେଇ । ସ୍ୱତନ୍ତ୍ରମତ ଏକ ବ୍ୟବସାୟ ପ୍ରତିଷ୍ଠାନରେ ପରିଣତ ହେଲା ଆମ ସଂଗଠନ । ଆସିଲା ପ୍ରଚୁର ଅର୍ଥ ।

ଅର୍ଥ ହିଁ ଅନର୍ଥର ମୂଳ—ମହା ନଗରୀର ବକ୍ଷ ଉପରେ ଠିଆ ହେଲା ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ । କେତେ କହିଲେ, ବନମାଳୀ ବ୍ରହ୍ମଚାରୀ ଶିକ୍ଷକମାନଙ୍କର

ପଇସାରେ ଜାଗା କଣି କୋଠା କରିଗଲେ । ସଂଘ ପଇସାରେ ତେଣେ ତାଙ୍କ ଗାଁରେ ପକ୍କା କୋଠା ପିଟିଲେଣି । କେତେ ଜନରବ । କଥାଟା ତେବେ କଣ ସତ୍ୟ ? ମାତ୍ର ସାହସ କାହାର ଏ ବିଷୟରେ ଯାଞ୍ଚ କରିବାକୁ ? କାର୍ଯ୍ୟକାରୀ କମିଟିରେ ଉଠିଲା ବହୁ ଭୂମିକି ତୋଫାନ । କିନ୍ତୁ ହାୟ ! ପ୍ରକୃତ ଘଟଣା ଦେଖି ହିଂସୁକ ମୁହଁ ତ ଅମ୍ଳିଲା ।

ସବୁ କଥା ହେଲା, ମାତ୍ର ଗୋଟିଏ ବଡ଼ ଦୋଷ ଥିଲା ତାଙ୍କର । ସେଇଟା ହେଲା ସଂଘ କୋଷରୁ କଣିକାଏ ହେଲେ ବି ତାହା ତାଙ୍କ ମା' ବାପ । ସଂଗଠନ ସମ୍ପାଦକ ସଂଘ କୋଷକୁ ଭରପୂର କରିବା ପାଇଁ ଦିନରେ ଅଠର ଘଣ୍ଟା ଖଟିଲେ । ମାତ୍ର ସଂଗଠନରେ ଅବହେଳା ଘଟିଲା । ସଙ୍ଗଠନ ପାଇଁ ବି ପଇସାଟିଏ ଖର୍ଚ୍ଚ କରିବାକୁ ସେ ନାରାଜ । ମହୁମାଛି ଭଳି ଖାଲି ସଞ୍ଚୟ ହିଁ ସାର । ସେଥିପାଇଁ ଯେତେ ନିନ୍ଦା, ସମାଲୋଚନା, ଗାଳିଗୁଲଜ ହୁଏ, ସେସବୁକୁ ସେ ହସି ହସି ସହି ଯାଆନ୍ତି । ନିନ୍ଦୁକମାନେ ଏବେ ବୁଝୁଛନ୍ତି, ଶିକ୍ଷକ ସଦନର ଏ ତ୍ରିତଳ ପ୍ରାସାଦ ଉପରେ ମୁଣ୍ଡ ଟେକିଛି ।

ଏତିକିରେ ତାଙ୍କ କାମ ସରିଲା ନାହିଁ । ଶିକ୍ଷକ ମହାସଂଘର ମହାସ୍ରୋତରେ ନିଜକୁ ଭସାଇ ଦେଲେ । ଭାଗୀଦାରମାନଙ୍କ ମଧ୍ୟରେ ସଦା ତଳେ ଥାଇ ସଦା ଉପରେ ବସିଲେ । ଶିକ୍ଷକ ଦର୍ପଣରେ "ସମ୍ବାଦ ଓ ସଙ୍କେତ" ଏବଂ "କିଏ କେମିତି" ପୃଷ୍ଠାରେ ବ୍ରହ୍ମଗୃହୀଙ୍କ ବାଣୀ ପ୍ରତିଧ୍ୱନିତ ହେଲା । ଗୁଳିଶ ହଜାର ବେସରକାରୀ ଶିକ୍ଷକ ସମାଜରେ ବିପ୍ଳବ ମାନସରେ ମସୀ ନିର୍ଗତ ହେଲା ବଡ଼ବାନଳ । ସେହି ଶିକ୍ଷକ ଗୋଷ୍ଠୀଙ୍କ ପାଇଁ ସେ ନିଦାନ କଲେ "ବ୍ରହ୍ମଗୃହୀ ପିଲ୍" ।

ବର୍ତ୍ତମାନ ତାଙ୍କ ମୁହଁରେ ଗୋଟିଏ ଅବଶୋଷ "ଶୟନେ, ସ୍ୱପନେ, ଜାଗରଣେ—ଯେଉଁମାନଙ୍କର ମଙ୍ଗଳ ପାଇଁ ମୁଁ ନିଜକୁ ଉତ୍ସର୍ଗ କଲି, ମୋ ଜୀବଦ୍ଦଶାରେ ସେମାନେ କ'ଣ ସୁଖୀ ହେବେନି ?" ବେଳେ ବେଳେ ସେ ବିବ୍ରତ ହୋଇ ସ୍ଲୋଗାନ ଦିଅନ୍ତି "ହେ ଶିକ୍ଷକ ଗୋଷ୍ଠୀ ! ମସୀ ଛାଡ଼ ଅସି ଧର ।" "ଭୟ ଛାଡ଼ି ରଣ କର ।"

ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ ଗୃହରେ ତାଙ୍କର କର୍ମ ତତ୍ପରତା, ଅଧ୍ୟବସାୟ ଓ ନିଷ୍ଠାପର ସାଧନା ଦେଖିଲେ କିଏ ତାଙ୍କୁ ୬୮ ବର୍ଷର ବୃଦ୍ଧ ବୋଲି କହିବ ? ଆବଶ୍ୟକ ବେଳେ ନିଜ ମୁଣ୍ଡରେ ପ୍ରଶ୍ନପତ୍ର ବଣ୍ଡିଲ୍ ନେଇ ଖାଲି ଗୋଡ଼ରେ ପୋଷ୍ଟ ଅଫିସ୍ ଯାଉଛନ୍ତି, ରିକ୍ସା ଖର୍ଚ୍ଚ ବଞ୍ଚାଇବା ପାଇଁ । ରାତିତମାମ ଅନିଦ୍ରା ହୋଇ ଖଟିଛନ୍ତି ମଜୁରୀ ବଞ୍ଚାଇବା ପାଇଁ । ଜାଣିଶୁଣି କାର୍ଯ୍ୟକାରୀ କମିଟି ଡାକ ନାହାନ୍ତି, ସମ୍ମିଳନୀ କରାଇ ନାହାନ୍ତି, ଗସ୍ତ ଖର୍ଚ୍ଚ ସାଇତି ରଖିବା ପାଇଁ ।

ତାଙ୍କ ସ୍ୱପ୍ନ ସଫଳ ହୋଇଛି, ସାଧନା ଅତୁଟ ରହିଛି, ସିଦ୍ଧି ଅବଶ୍ୟମ୍ଭାବୀ । କିଛି ନ ହେଲେ ବି ବ୍ରହ୍ମଗୃହୀ ବଞ୍ଚି ରହିବେ ଓଡ଼ିଶାର ପ୍ରତ୍ୟେକ ଶିକ୍ଷକ ହୃଦୟରେ ସବୁଦିନ ପାଇଁ ।

'ସଂଘଂ ଶରଣଂ ଗଚ୍ଛାମି' ଏହାହିଁ ବାଣୀ ହେଉ ।

● ପ୍ରଧାନ ଶିକ୍ଷକ
ରାଧାନାଥ ମ: ଇ: ବିଦ୍ୟାଳୟ
ସୋର, ବାଲେଶ୍ୱର



# ଏକ ଅସାଧାରଣ ମନୀଷୀଙ୍କ ସଂସ୍ପର୍ଶରେ

**ଶ୍ରୀ ଲକ୍ଷ୍ମୀନାରାୟଣ କର**

ଗାନ୍ଧିଜୀ ଥରେ କହିଥିଲେ—"ସମାଜର କୌଣସି ସ୍ତରରେ ଅନ୍ୟାୟ, ଅନୀତି ଓ ଦୁର୍ନୀତି ଦେଖାଗଲେ ଏବଂ ତାହାର ପ୍ରଭାବ ସେହି ସ୍ତରୀୟ ଲୋକଙ୍କ ସହନଶୀଳତା ଲଙ୍ଘନ କଲେ, ଏ ସବୁର ମୁକାବିଲା କରିବା ପାଇଁ ଜଣେ ଜଣେ ଦୁଃସାହସିକ ବ୍ୟକ୍ତି ଅଗ୍ରେ ଭିଡ଼ି ବାହାରି ଥାଆନ୍ତି"। ଏ ଉକ୍ତିଟି ବ୍ରହ୍ମଋଷିଙ୍କ ପାଇଁ ନିଶ୍ଚୁର ଭାବରେ ସତ୍ୟ। ଶିକ୍ଷକମାନେ ସେମାନଙ୍କର ସାମାଜିକ ଉପଯୋଗିତା ପାଇବା ପାଇଁ ଯେ ହକ୍‌ଦାର, ଏଥିପାଇଁ ବ୍ରହ୍ମଋଷିଙ୍କର ଅସୀମ ସାହସିକତା, ନିର୍ଭୀକ ସ୍ପଷ୍ଟବାଦିତା, ଦୁଃସାହସିକ ନୈତିକତା ସ୍ପଷ୍ଟ ବିଦ୍ୟମାନ। ସେ ଲାଞ୍ଛିତ ଅବହେଳିତ ଶିକ୍ଷକ ସମାଜକୁ ନିଜର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଛନ୍ତି। ଏଥିପାଇଁ ତାଙ୍କୁ ଯେଉଁ ଅପବାଦ, ଅପମାନ ଲାଞ୍ଛନା, ତାଡ଼ନା ଏବଂ ଭର୍ତ୍ସନା ଶୁଣିବାକୁ ପଡ଼ୁଛି, ସେଥିପାଇଁ ସେ ଆଦୌ ବିଚଳିତ ନୁହନ୍ତି। ସେ ନିର୍ଭୀକ ସଂଗ୍ରାମୀ। ମୁଁ ତାଙ୍କର ସହକର୍ମୀ ଭାବରେ ମୋର କେତେକ ବ୍ୟକ୍ତିଗତ ଅନୁଭୂତିକୁ ଏଠାରେ ବର୍ଣ୍ଣନା କରୁଛି।

ମୁଁ ସଂଘରେ ରହିଲି ୧୯୬୫ ରୁ ୧୯୬୭। ଏ ଦୁଇ ବର୍ଷର ଅନୁଭୂତି ଏବେ ବି ମୋ ମନରେ ଚିର ଜାଜ୍ୱଲ୍ୟମାନ ହୋଇରହିଛି। ତାହା ଅବିସ୍ମରଣୀୟ। ଠିକ୍ ଭାବରେ ମନେ ପଡ଼ୁନି। ତେବେ ବାର୍ଷିକ ପରୀକ୍ଷା ସରି ଆସିଥାଏ। ଖରାଦିନ। ପରୀକ୍ଷା ବେଳରେ ଭିଡ଼ ଓ ଧାଁ ଧପଡ଼ ସେ ପର୍ଯ୍ୟନ୍ତ ଲାଗି ରହିଥାଏ। ଖଟିବା ଏବଂ କାମରେ ଲାଗି ରହିବା ଏଇଟା ସାଧାରଣ ମାମୁଲି କଥା। ମୁଁ ଯୁବକ। ମୋତେ ଏ ସବୁ କେମିତି କେମିତି ଲାଗୁଥାଏ। ତେବେ ତାଙ୍କର ଚଳନ ଶକ୍ତି ଏବଂ ଧାବମାନ ଗତି ମୋତେ ବିଚଳିତ ଏବଂ ବ୍ୟତିବ୍ୟସ୍ତ କରି ପକାଉଥାଏ। ସେ ଦିନ ସବୁ ଦିନ ପରି ଶୁଖିଲା ଭାତ ଓ ରୁଟି ଖାଇ ଦୁହେଁ ଲାଗିଥାଉ ସେ ଓ ମୁଁ। ଆଉ କେତେ ଜଣ ଦପ୍ତରୀ। ଦପ୍ତରୀ କାମ ସାରି ଚାଲିଗଲେ। ଆମେ କିନ୍ତୁ ଲାଗିଥାଉ। ଦିନ ଯାଇ ରାତି କେପରି ହେଉଛି, ତାହା ଜାଣିବା କଷ୍ଟକର। ସେ ଦିନ ସବୁ କାମ ସାରିଲା ପରେ ସେ ଦିନର Daily Account ସାରିଲୁ। ସେ କହି ଉଠିଲେ—"See, what is the time"। ମୋର ସଂକ୍ଷିପ୍ତ ଉତ୍ତର-"ତିନଟା ତିରିଶି"। "ଜମାରୁ, ମୋଟେ"। ନିଦଟା ମୋ ଉପରେ ନିଦ ନିଦ ହୋଇ ଆସୁଥାଏ। ଢୁଳାଇ ବି ପଡ଼ିଲି ମଧ୍ୟ। ସେ ଗର୍ଜି ଉଠିଲେ—"Mr Kar, what is this ? do or die"। ମୁଁ ଚଳବଳେଇ ଉଠିଲି। "କଣ ଆଜ୍ଞା ! ଆଉ ପାରି ହବନି। ରାତି ପାହିବା ଉପରେ। ଏତିକି ଥାଉ। ଅନ୍ତତଃ ଦୁଇଘଣ୍ଟା ଟିକିଏ ଆଖି ପଡ଼ୁ।" "No, Never, I am above sixty, you are a young man of nine teen you have to do" ସେ ସିଂହପରି ଗର୍ଜି ଉଠିଲେ। ମୋ ବାକ୍‌ଶକ୍ତି ଧିମେଇ ଆସୁଥାଏ। ରାତି ପାହିଲା, ଆଉ ଆଖି ପତା ପଡ଼ିବା ନୋହିଲା। ଏମିତି ଦିନେ ଅଧେ

ନୁହେଁ । କେତେଦିନ କେତେ ରାତି, ତା'ର ହିସାବ ଦେଇ ହେବନି । ସେ କଥା ଏବେ ବି ମନେ ପଡ଼ିଲେ ମୋ ହାତ ଗୋଡ଼ ଚଞ୍ଚଳ ହୋଇ ଉଠେ ।

ଆଉ ଦିନେ । ଶ୍ରାବଣ ପୂର୍ଣ୍ଣିମୀ । ବ୍ରହ୍ମଗିରି ନିଜ ଘରୁ ଅପରାହ୍ଣରେ କିଛିକ ଫେରିଥାନ୍ତି । ତାଙ୍କ ମୁଣ୍ଡରେ ଚନ୍ଦନ ଲେପନର ଗାର ଦେଖି ମୁଁ ପଚାରିଲି-"କ'ଣ ଆଜ୍ଞା, ଚନ୍ଦନ ମାରିଛନ୍ତି" । ସେ ବିସ୍ମିତ ହେଲେ । ପର ମୁହୂର୍ତ୍ତରେ କହିଲେ—"କେଉଁ ବ୍ରାହ୍ମଣ କେତେବେଳେ ଲଗାଇ ଦେଇଥିବ" । ବିଭିନ୍ନ ପ୍ରକାର କାର୍ଯ୍ୟବ୍ୟସ୍ତତା ଭିତରେ ସେଦିନ ଯେ ବଳଭଦ୍ର ପୂର୍ଣ୍ଣିମୀ ଓ ବ୍ରାହ୍ମଣମାନେ ଚନ୍ଦନ ପଇତା ଦିଅନ୍ତି, ତାଙ୍କୁ ମାଲୁମ ନାହିଁ । ପୁଣି କେତେବେଳେ କେଉଁ ବ୍ରାହ୍ମଣ ଚନ୍ଦନ ଲଗାଇ ଦେଇଛି; ସେ ଜାଣି ନାହାନ୍ତି । ଏ ସବୁ ତାଙ୍କ କର୍ମବ୍ୟସ୍ତତା । ଆଉ କିଛି ନୁହେଁ ।

ଥରେ ସେ ତାଙ୍କ ପୁଷ୍ୟାରି ଟୋକାକୁ ବଡ଼ ପାଟି-କରି ଡାକ ପକାଇ କହିଲେ—"ଆରେ, ମୁଁ ଖାଇସାରି ପାଣି ପିଇଛି ନାଁ ନାହିଁ । ହାକୁଟି ଆସୁଛି । ପାଣି ଗିଲାସେ ଆଣେ" । କାମ ଭିତରେ ବୁଡ଼ି ରହି ପାଣି ପିଇଛନ୍ତି ନା ନାହିଁ, ତାହା ସେ ଜାଣି ନାହାନ୍ତି । ତାଙ୍କ ନିଜ କଥା ଅନ୍ୟ ଜଣେ ମନେ ପକାଇ କହିବ । ଅବଶ୍ୟ ପୁଷ୍ୟାରି ଟୋକା ତାଙ୍କୁ ଖାଇବାକୁ ଦେଲା ବେଳେ ତାଙ୍କୁ ପାଣି ଦେଇଛି ନା ନାହିଁ, ତାଙ୍କୁ ମନେ ପକାଇ ଦିଏ । ଏପରି ଦିନେ ଦିନେ ଖାଇବା ବି ସେ ଭୁଲି ଯାଆନ୍ତି । ବେଳ ଗଡ଼ିଯାଏ ।

ଦିନେ ତାଙ୍କ ପିଠିରେ ଗୋଟାଏ ବିରାଟ ବ୍ରଣ ଦେଖି ଜଣେ ଶିକ୍ଷକ ବାବୁ ପଚାରିଲେ—"ଆପଣଙ୍କ ପିଠିରେ କ'ଣ ଗୋଟାଏ ବ୍ରଣ ହୋଇ ପାଚିବାକୁ ବସିଲାଣି ।" ବ୍ରହ୍ମଗିରି କହିଲେ—"କାହିଁ ମୁଁ ତ କିଛି ଜାଣି ପାରୁ ନାହିଁ ।" ଶିକ୍ଷକ ଜଣକ ଆଶ୍ଚର୍ଯ୍ୟ ହେଲେ । ତାଙ୍କ ବିଜ୍ଞାଙ୍ଗରେ କୌଣସି ସ୍ପର୍ଶକୁ ସେ ଯେପରି ଅନୁଭବ କରି ପାରୁ ନାହାନ୍ତି ।

କୌଣସି ରୋଗ ଏପରି କି ଜ୍ୱର, ସର୍ଦ୍ଦି, କାଶ ତାଙ୍କୁ କେବେ ହେବାର ମୁଁ ଦେଖିନି । ଦିନେ ସନ୍ଧ୍ୟାରେ ଶେଯରେ ଶୋଇ ରହି ସେ ଅସୁସ୍ଥତା ଅନୁଭବ କରୁଥିବା ମୁଁ ଜାଣିପାରିଲି । ପଚାରି ବୁଝିଲି—ତାଙ୍କର ଦାନ୍ତଶୂଳା ହେଉଛି । ସେ କୌଣସି ଡାକ୍ତର ପରାମର୍ଶ ପାଇଁ ଗଲେନି । କେବଳ ଶୋଇ ରହି ମନେ ମନେ କହୁଥିଲେ—"ହେ ଭଗବାନ ! ମୁଁ ବା କାହାର କ'ଣ ଅନିଷ୍ଟ କରିଛି । ମୋତେ ଆଉ କିଛି ଦିନ ସୁସ୍ଥ ରଖି ଶକ୍ତି ଦିଅ । ମୁଁ ଅଧିକା କିଛି କାମ କରେ । ଦୀନ ଦୁଃଖୀଙ୍କର ସେବା କରେ । ସତକୁ ସତ ତା' ପର ଦିନ ଦେଖିଲି, ତାଙ୍କ ଦାନ୍ତ ବିନ୍ଧା ଆଉ ନାହିଁ । ସେ ସକାଳୁ ଉଠି କାମରେ ଲାଗିଛନ୍ତି ଏବଂ ଧାଉଁଛନ୍ତି ।

ଦିନେ ରାତି ଦଶଟାରେ ସମ୍ବଲପୁର ଟ୍ୟୁର୍‌ରେ ଯିବାର କଥା । ସନ୍ଧ୍ୟାବେଳେ ବହି ଦୋକାନରୁ ଫେରିଲେ । ସେଠି ଚପଲଟା ଗୁଡ଼ି ଆସିଲେ । ଦଶଟା ବେଳେ ଟ୍ୟୁର୍‌ରେ ଯିବା ପାଇଁ ପ୍ରସ୍ତୁତ ହେଲାବେଳକୁ ଦେଖିଲେ ଯେ ଚପଲଟା ନାହିଁ । ନିଜ ବିସ୍ମରଣ କଥା ଭାବି ବ୍ୟସ୍ତ ହେଲେ । ପୁଣି କିଛି ସମୟ ଚିନ୍ତା କରି ବସ୍ ଷ୍ଟାଣ୍ଡକୁ ଚାଲିଲେ । ପରେ ଜଣେ ଚପଲ ଆଣି ଦେବାକୁ ଯିବାରୁ ସେ ସେତେବେଳକୁ ବସ୍ ଷ୍ଟାଣ୍ଡରେ ନ ଥିଲେ । ଆମେ ଆଶା କରିଥିଲୁ —ସେ ପରେ ବାଟରେ ଚପଲ ଖରିଦ୍ କରି ପିନ୍ଧି ଆସିବେ । କିନ୍ତୁ ଆମ ଆଶାକୁ ଧୂଳିସାତ୍ କରି ସେ ଖାଲି ପାଦରେ ଟ୍ୟୁର୍ କରି ଫେରି ଆସିଲେ । ଆଜିକାଲିକା ବାବୁଙ୍କ ପରି ଅନ୍ୟ କେହି ହୋଇଥିଲେ ହୁଏ ତ ଚପଲ ଅଭାବରେ ଟ୍ୟୁର୍ ଯିବା ବନ୍ଦ ହୋଇଥାନ୍ତା । ତାଙ୍କର ବେଶଭୂଷା, ପୋଷାକ ପରିଚ୍ଛଦ ପ୍ରତି ବି ନଜର ନ ଥାଏ । ଦିନେ ଦିନେ ଖାଲି ପାଦରେ, ଖାଲି ଦେହରେ କେବଳ ଲୁଗାଟିଏ ପିନ୍ଧି ଶ୍ରେଷ୍ଠି ବଜାର, ଗୃହନଚୌକ୍, ଉଗରପଡ଼ା, କୁଆଡ଼େ କୁଆଡ଼େ ବୁଲି ଆସନ୍ତି ।

୧୯୬୬ । ୬୭ ମସିହା କଥା । କ୍ରମାଗତ ଅନାବୃଷ୍ଟି ଯୋଗୁଁ କଳାହାଣ୍ଡି, ବଲାଙ୍ଗୀର ଜିଲ୍ଲାରେ ଫସଲ ହାନି ହୋଇ ଖାଦ୍ୟାଭାବ ପଡ଼ିଥାଏ । ଥରେ ଏକ ସମାଜ ହିତକର ମାସ ଶେଷରେ ତା'ର ପଇସା ନେଲାବେଳେ କଥା ପ୍ରସଙ୍ଗରେ ବ୍ରହ୍ମଗିରିଙ୍କୁ କହିଲା—"ଆପଣଙ୍କର ତ ଆଉ କେହି ନାହାନ୍ତି । ବେଳ କାଳ ବି ସରି ଆସିଲାଣି । ଟଙ୍କା ସବୁ କ'ଣ କରିବେ ? ପ୍ରତିଦିନ ଖାଲି

ମଲେଇ, ଖିରମୋହନ, ରାବଡ଼ି ଖାଆନ୍ତୁ ।" ତତ୍‌କ୍ଷଣାତ୍ ବ୍ରହ୍ମଗୃଷି କହି ଉଠିଲେ—"ମୁଁ ଆଉ ଜାଣିନି ? ତେଣେ କଳାହାଣ୍ଡି ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ି ଲୋକଙ୍କୁ ସଜନା ପତ୍ର, ବଣ ଓଲୁଅ ମିଳୁନି । ଆଉ କଣ ନା ମୁଁ ଖାଇବି—ମଲେଇ, ରାବଡ଼ି । ଘର ବୁଦ୍ଧିଆ, ତୋ ମୁଣ୍ଡରେ ଟିକେ ଗୋବର ଦେ । ତୁ କହିଲୁ , ତୋ ଘରେ ତୁ କ'ଣ ଖାଉଛୁ ।" ଲୋକଟି ଅପ୍ରତିଭ ହୋଇ ମୁହଁକୁ ବଙ୍କେଇ ବଙ୍କେଇ ଫେରିଗଲା । ପ୍ରକୃତରେ ହକର ବଚରା କାହୁଁ ଜାଣିବ—ବ୍ରହ୍ମଗୃଷିଙ୍କର ଆଖି ଗରିବମାନଙ୍କ ଉପରେ—ନିଜ ଉପରେ ନୁହେଁ । ଥରେ ନୁହେଁ, ଅଧେ ନୁହେଁ, ରାତାରାତି କେତେ ରାତି ସେ କେବଳ ଦି'ମୁଠା ଚୂଡ଼ା ଖାଇ ଶୋଇଯିବାର ମୁଁ ଦେଖିଛି ।

ଏମିତି କେତେ କଥା । ଲେଖି ବସିଲେ, କହି ବସିଲେ, ପୋଥିଟାଏ ହେବ । ତେବେ ଏତିକରେ ରହି ଆଜ ତାଙ୍କ ଜୟନ୍ତୀ ବାସରେ ମୁଁ ତାଙ୍କ ପ୍ରତି ମୋର ଭକ୍ତି ଶ୍ରଦ୍ଧାଞ୍ଜଳି ଜଣାଉଛି ।

● ଇ. ଏସ୍. ଆଇ. କର୍ପୋରେସନ
ରାଜାବଗିଚା
କଟକ-୯



# କର୍ମଯୋଗୀ ଶ୍ରୀ ବନମାଳୀ ବ୍ରହ୍ମଚାରୀ

**ଶ୍ରୀ ମନୋମୋହନ ଦାସ**

ମନୁଷ୍ୟ ଜୀବନ କର୍ମମୟ । ଯେ ସତ୍ କର୍ମ କରି ଜୀବନ ଯାପନ କରେ, ସେ ହେଉଛି ପ୍ରକୃତ ଯୋଗୀ । ମନୁଷ୍ୟ ପକ୍ଷରେ ସମୟ ଅତି ମୂଲ୍ୟବାନ । ଯେ ସମୟର ମୂଲ୍ୟ ଉପଲବ୍ଧି କରି ତାର ସଦ୍‌ବ୍ୟବହାର କରି ପାରିଲା, ସେ ତାର ଜୀବନ ପଥରେ ଉତ୍ତରୋତ୍ତର ଅଗ୍ରସର ହୋଇ ଉନ୍ନତର ଚରମ ସୀମାରେ ଅଧିରୂଢ଼ ହୋଇ ପାରିବ । ଯେଉଁମାନେ ଜନ ସାଧାରଣର ଉପକାର କରି ଚିରସ୍ମରଣୀୟ ହୋଇଛନ୍ତି, ସେମାନଙ୍କ ଜୀବନୀ ଆଲୋଚନା କଲେ ଆମ୍ଭେମାନେ ଦେଖିପାରିବା ଯେ, ସେମାନେ ମୁହୂର୍ତ୍ତେ ମାତ୍ର ସମୟ ଅପବ୍ୟୟ କରିବାକୁ ପାପ ବୋଲି ମନେ କରନ୍ତି । ବ୍ରହ୍ମଚାରୀ ଏହିଭଳି ଧରଣର ଜଣେ ଲୋକ । ବାର୍ଦ୍ଧକ୍ୟରେ ପଦାର୍ପଣ କରିଥିଲେ ମଧ୍ଯ ସେ କେବେହେଲେ ପରିଶ୍ରମ କାତର ନୁହନ୍ତି । ଯୌବନ ସୁଲଭ କାର୍ଯ୍ୟ-ତତ୍ପରତା ତାଙ୍କ ଜୀବନର ଏକ ବିଶିଷ୍ଟ ଗୁଣ ।

ବ୍ରହ୍ମଚାରୀ ମୋର ବହୁଦିନର ପରିଚିତ ବନ୍ଧୁ । ନାନା ଅଭାବ ଅସୁବିଧା ଭିତର ଦେଇ ଉଚ୍ଚ ଶିକ୍ଷା କରିବା-ପାଇଁ ପ୍ରୟାସୀ ହୋଇ କଲେଜରେ ପ୍ରବେଶ କଲି, କିନ୍ତୁ ଆଶା ଅପୂର୍ଣ୍ଣ ରହିଲା । ଶେଷରେ ଶିକ୍ଷକତା କରିବାପାଇଁ ଆଗ୍ରହୀ ହୋଇ ଯେତେବେଳେ କଲେଜ ଶିକ୍ଷାରେ ପୂର୍ଣ୍ଣଚ୍ଛେଦ ଦେଇ କଟକ ଟ୍ରେନିଂ ସ୍କୁଲରେ ନାମ ଲେଖାଇଲି, ସେତେବେଳେ ବନମାଳୀ ବାବୁଙ୍କ ସହ ମୋର ପ୍ରଥମ ସାକ୍ଷାତ । ସେ ଥିଲେ ସେତେବେଳେ ପ୍ରାଚୀନ ପ୍ରଥାରେ ପ୍ରଶିକ୍ଷଣ ଶିକ୍ଷାକ୍ଷେତ୍ରରେ ତାଲିମ ପାଉଥିବା ଶେଷ ବର୍ଷର ଛାତ୍ର । ଯୌବନର ଶ୍ରୀଅଙ୍କ ତାଙ୍କର ଅଙ୍ଗସ୍ପର୍ଶ କରିଥାଏ ସେତେବେଳେ । ମୁଖ ମଣ୍ଡଳରେ ଦିବ୍ୟକାନ୍ତି ଝଲସି ଉଠୁଥିଲା । ସୁଗଠିତ ଅଙ୍ଗ ପ୍ରତ୍ୟଙ୍ଗ ଗୁଡ଼ିକ ଶରୀରକୁ ବେଶ୍ ବଳିଷ୍ଠ କରି ପାରିଥିଲା । ମୁଖମଣ୍ଡଳରେ ମାନସିକ ଦୃଢ଼ତା ସ୍ୱତଃ ପ୍ରତିଫଳିତ ହେଉଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା, ଯତେ ଯେପରି କାର୍ଯ୍ୟ ତତ୍ପରତା ବା ଉଦ୍‌ଯୋଗ ତାଙ୍କଠାରେ ରୂପାୟିତ ହୋଇଛି । ତାଙ୍କ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ତାଙ୍କର ସୁନାମ ଥିଲା । ସେତେବେଳେ ଟ୍ରେନିଂସ୍କୁଲରେ ଯେଉଁ ଶିକ୍ଷକ-ମାନେ, ଥିଲେ ସେମାନେ ମାତୃଭାଷାର ଉନ୍ନତି ଦିଗରେ ବିଶେଷ ଦୃଷ୍ଟି ଦେଉଥିଲେ । ତେଣୁ ସେ ସମୟର ଛାତ୍ରମାନେ ସାହିତ୍ୟ ଆଲୋଚନାରେ ବିଶେଷ ମନୋଯୋଗୀ ଥିଲେ । ଏହି ଟ୍ରେନିଂ ସ୍କୁଲରୁ ଯେଉଁ-ମାନେ ତାଲିମ ପ୍ରାପ୍ତ ହେଉଥିଲେ, ସେମାନେ ମଧ୍ୟ-ଇଂରାଜୀ ବିଦ୍ୟାଳୟ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟ ମାନଙ୍କରେ ସାହିତ୍ୟ ଶିକ୍ଷକ ରୂପେ ନିଯୁକ୍ତ ହେଉ-ଥିଲେ । ବନମାଳୀ ବାବୁ ଏଠାରୁ ଉତ୍ତୀର୍ଣ୍ଣ ହୋଇ କିଛିଦିନ ଶିକ୍ଷକତା କରିଥିଲେ ଏବଂ ସେ ସମୟରେ ତାଙ୍କ ସହ ମୋର ବିଶେଷ ସମ୍ପର୍କ ନ ଥିଲା ।

ବହୁଦିନ ବ୍ୟବଧାନ ପରେ ପୁଣି ଥରେ ତାଙ୍କ ସହିତ ଘନିଷ୍ଠଭାବରେ ସମ୍ପର୍କ ସ୍ଥାପିତ ହେଲା । ମୁଁ

ଯେତେବେଳେ ସରକାରୀ ଶିକ୍ଷକ କାର୍ଯ୍ୟରୁ ଅବସର ଗ୍ରହଣକରି ଏକ ବେସରକାରୀ ମଧ୍ୟଇଂରାଜୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କଲେ, ସେତେବେଳକୁ ସେ ଆମ ନିମ୍ନମାଧ୍ୟମିକ ଶିକ୍ଷକ ସଂଘର ସଂଗଠନ ସମ୍ପାଦକ ଓ ମୁଁ ନିମ୍ନମାଧ୍ୟମିକ ସ୍କୁଲର ଜଣେ ପ୍ରଧାନ ଶିକ୍ଷକ । ସେ ତାଙ୍କ ଜୀବନରେ ଏକ ମଧ୍ୟଇଂରାଜୀ ବିଦ୍ୟାଳୟରେ ପ୍ରଥମେ ଶିକ୍ଷକତା କରି ସୁନାମ ଅର୍ଜନ କରିଥିଲେ ଏବଂ ତାଙ୍କର ବ୍ୟକ୍ତିତ୍ୱ ପ୍ରଭାବରେ ସେଠାରେ ସେ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିପାରିଥିଲେ । ସେ ଉଚ୍ଚଶିକ୍ଷିତ ହୋଇ ନ ଥିଲେ ମଧ୍ୟ ସାହିତ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ ଅଛି । ସେ ପିଲାମାନଙ୍କ ପାଇଁ ଯେଉଁ କେତେଗୋଟି ପୁସ୍ତକ ଲେଖିଛନ୍ତି, ତାହା ଅତ୍ୟନ୍ତ ଉପାଦେୟ ଏବଂ ତାଙ୍କର କେତେ ଗୋଟି ପୁସ୍ତକ ପାଇଁ ସେ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

ବର୍ତ୍ତମାନ ବନମାଳୀବାବୁ ଯେଉଁ ଗୁରୁତର କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିଛନ୍ତି, ତାହାର ସୁରୁରୁ ସମ୍ପାଦନ ପାଇଁ ସେ ପ୍ରାଣପଣେ ଚେଷ୍ଟାରେ ଲାଗିପଡ଼ିଛନ୍ତି । ଆଜି ଯେଉଁ ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ କଟକରେ ମସ୍ତକ ଉତ୍ତୋଳନ କରିଅଛି, ଏହା ତାଙ୍କର ଅକ୍ଳାନ୍ତ ଚେଷ୍ଟାର ଫଳ ବୋଲି ସମସ୍ତେ ଏକସ୍ୱରରେ ସ୍ୱୀକାର କରିବେ ।

ସେ ଜଣେ ନିଃସ୍ୱାର୍ଥ ଦେଶସେବକ । ଏକମାତ୍ର କନ୍ୟାର ଦାୟିତ୍ୱ ତାଙ୍କ ଉପରେ ପ୍ରଦାନ କରି ତାଙ୍କର ସହଧର୍ମିଣୀ ସଂସାରରୁ ଚିର ବିଦାୟ ନେଲେ । ଯୌବନର ସୁଖ ସମ୍ଭୋଗ ଲାଳସା ପ୍ରତି ସେ ବୀତସ୍ପୃହ ହୋଇ ପଡ଼ିଲେ ଓ ଆଉ ପୁନର୍ବିବାହ କରିବାକୁ ଇଚ୍ଛା ନ କରି ଏକମାତ୍ର କନ୍ୟାର ଲାଳନ ପାଳନ କରି ଜୀବନରେ ସୁଖୀ ହେବାପାଇଁ ବ୍ୟବସ୍ଥା କଲେ । ମନୁଷ୍ୟର ମନ ବା ଇଚ୍ଛା ଏକ ପ୍ରକାର ଆଧାର । ସେ ଆଧାରରେ ଗୋଟାଏ ପଦାର୍ଥ ପୂର୍ଣ୍ଣରୂପେ ସ୍ଥାନ ଗ୍ରହଣ କଲେ ଅନ୍ୟ ପଦାର୍ଥ ପାଇଁ ଆଉ ସେଥିରେ ସ୍ଥାନ ରହେ ନାହିଁ । ବନମାଳୀ ବାବୁଙ୍କ ମନରୁ ସ୍ତ୍ରୀ ବିୟୋଗ ପରେ ପରେ କାମ ପ୍ରବୃତ୍ତି ଚରିତାର୍ଥ ଲାଳସା ଏକାବେଳକେ ଲୋପ ପାଇଗଲା ଓ ତାହା ପରିବର୍ତ୍ତିତ ଆକାର ଧାରଣ କରି ଜନସମାଜର ସର୍ବାଙ୍ଗୀନ କଲ୍ୟାଣସାଧନ କରିବା ପ୍ରବୃତ୍ତିରେ ପରିଣତ ହୋଇଗଲା । ସେ ସ୍ୱାମୀ ନିଗମାନନ୍ଦ, ସ୍ୱାମୀ ବିବେକାନନ୍ଦ ଓ ପଣ୍ଡିତ ଗୋପବନ୍ଧୁ ଆଦି ମହାପୁରୁଷ ମାନଙ୍କର ପଥ ଅବଲମ୍ବନ କରି ଜନସାଧାରଣଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ଦୃଢ଼ ପରିକର ହୋଇପଡ଼ିଲେ । ସେ ଥିଲେ ଜଣେ ଶିକ୍ଷକ ଏକ ବେସରକାରୀ ଅନୁଷ୍ଠାନରେ ଏବଂ ବେସରକାରୀ ସ୍କୁଲର ଶିକ୍ଷକ ମାନଙ୍କର ଦୁରବସ୍ଥା ସେ ଉପଲବ୍ଧି କରି ତାର ବିହିତ ପ୍ରତିକାର ପାଇଁ ଯତ୍ପରୋନାସ୍ତି ଚେଷ୍ଟା କଲେ । 'ସଂହତି କାର୍ଯ୍ୟ ସାଧିକା' ଏହି ମତ ଅବଲମ୍ବନ କରି ସେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ପ୍ରାଣ ପ୍ରତିଷ୍ଠା କଲେ । ଏ ସଂଘରେ ସଭାପତି, ଉପସଭାପତି ଓ ଅନେକ ଉଚ୍ଚ ଶିକ୍ଷିତ ସଭ୍ୟ ଅଛନ୍ତି, କିନ୍ତୁ ସେମାନେ ନିଷ୍କ୍ରିୟ । ମୁଁ କେତେଦିନ ପାଇଁ ଏହି ସଂଘର କାର୍ଯ୍ୟକାରୀ କମିଟିର ସଭ୍ୟ ହୋଇ ବନମାଳୀ ବାବୁଙ୍କର କାର୍ଯ୍ୟକଳାପ ଦେଖିବାର ସମ୍ପୂର୍ଣ୍ଣ ସୁଯୋଗ ପାଇଛି । ମୁଁ ଦୃଢ଼ ଭାବରେ ସ୍ୱୀକାର କରିବି ଯେ, ବନମାଳୀ ବାବୁହିଁ ଏହି ସଂଘର ପ୍ରାଣ । ତାଙ୍କର ସ୍ଥାନ ପୂରଣ କରିବା ଭଳି ଜଣେ ବ୍ୟକ୍ତି ଏ ସଂଘରେ ଅନ୍ୟ କାହାରିକୁ ମୁଁ ଏପର୍ଯ୍ୟନ୍ତ ଦେଖିବାକୁ ପାଇନାହିଁ ।

ଯେଉଁ ଦେଶରେ ଶିକ୍ଷକ ମାନଙ୍କର ସମ୍ମାନ ଯେତେ ବେଶି, ସେ ଦେଶ ସେତେ ଉନ୍ନତ । କାରଣ ଦେଶର ଶିକ୍ଷକମାନେ ହିଁ ଦେଶର ଉଜ୍ଜ୍ୱଳ ଭବିଷ୍ୟତ ବଂଶଧର ମାନଙ୍କର ଜୀବନ ଗଠନର ଦାୟିତ୍ୱ ଗ୍ରହଣ କରିଥାନ୍ତି । ପୂର୍ବ କାଳରେ ଭାରତବର୍ଷରେ ଗୁରୁମାନଙ୍କ ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶନ କରା ଯାଉଥିଲା, ଆଧୁନିକ ଯୁଗରେ ତାହା ବିରଳ । ଆଜି ଶିକ୍ଷକମାନେ ଦାରିଦ୍ର୍ୟ ପ୍ରପୀଡ଼ିତ ଓ ଦୁର୍ଦ୍ଦଶାଗ୍ରସ୍ତ । ମୁଷ୍ଟିମେୟ କେତେକ କର୍ତ୍ତବ୍ୟନିଷ୍ଠ ଶିକ୍ଷକଙ୍କ ବ୍ୟତୀତ ଅଧିକାଂଶ ଶିକ୍ଷକ 'ଯେତିକ ଚୂନାକୁ ସେତିକ ପିଠା' ମତ ଅବଲମ୍ବନ କରି କାର୍ଯ୍ୟ କରୁଛନ୍ତି । ଯାହା ଫଳରେ ଛାତ୍ରଛାତ୍ରୀ-ମାନେ ପ୍ରବେଶିକା ପରୀକ୍ଷାରେ ବହୁ ପରିମାଣରେ

କୃତକାର୍ଯ୍ୟ ହୋଇ ପାରୁ ନାହାନ୍ତି । ଦେଶର ନେତୃ-ଶ୍ରେଣୀୟ ଲୋକ ଓ କର୍ତ୍ତୃପକ୍ଷ ଏହାର ପ୍ରତିକାର ପାଇଁ ଆଦୌ ଦୃଷ୍ଟି ଦେଉ ନାହାଁନ୍ତି କହିଲେ ମିଥ୍ୟା ହେବ ନାହିଁ । ଏହା ନଗ୍ନ ସତ୍ୟ । ବନମାଳୀ ବାବୁ 'ଶିକ୍ଷକ ଦର୍ପଣ' ପତ୍ରିକାରେ ବେସରକାରୀ ଶିକ୍ଷକ ମାନଙ୍କ ଦୁଃଖ-ଦୁର୍ଦ୍ଦଶା-ପୂର୍ଣ୍ଣ କରୁଣ କାହାଣୀ ବାରମ୍ବାର ବର୍ଣ୍ଣନା କରୁଥିଲେ ମଧ୍ୟ କର୍ତ୍ତୃପକ୍ଷ ତାହାର ସୁବିଚାର କରୁ ନାହାନ୍ତି । ଏହି ଦରିଦ୍ର, ନିଷ୍ପେଷିତ ଶିକ୍ଷକ ମାନଙ୍କର ଅବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ ସେ ଅକ୍ଳାନ୍ତ ଚେଷ୍ଟା କରି କେତେକ ପରିମାଣରେ କୃତକାର୍ଯ୍ୟ ହୋଇ ପାରିଛନ୍ତି । ସେ ନିର୍ଭୟ ଚିତ୍ତରେ ଦୁର୍ନୀତିଗ୍ରସ୍ତ ଶିକ୍ଷା ବିଭାଗୀୟ କର୍ମଚାରୀଙ୍କୁ ସମାଲୋଚନା କରି ସେମାନଙ୍କ ଦୁର୍ନୀତିର ନିରାକରଣ ପାଇଁ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ବାରମ୍ବାର ଆକର୍ଷଣ କରିବା ଫଳରେ ଅଧିକାଂଶ ସ୍ଥଳରେ ଶିକ୍ଷକମାନେ ଉପକୃତ ହେଉ ଅଛନ୍ତି । ସବୁବେଳେ ସତ୍ୟ ଓ ନ୍ୟାୟର ଜୟ । ଅନ୍ୟାୟର କେବେହେଲେ ଜୟ ହୁଏ ନାହିଁ । ବେସରକାରୀ ମାଧମିକ ବିଦ୍ୟାଳୟମାନଙ୍କରେ ଯେଉଁଭଳି ଶାସନ କାର୍ଯ୍ୟ ଚାଲିଛି, ତାହା କୌଣସି କର୍ତ୍ତୃପକ୍ଷଙ୍କୁ ଅବିଦିତ ନାହିଁ । ଶିକ୍ଷକମାନେ ସେମାନଙ୍କର ପ୍ରାପ୍ୟ ପ୍ରାୟ କୌଣସି ସ୍ଥାନରେ ପାଉ ନାହାନ୍ତି କହିଲେ ଚଳେ । ତାଙ୍କର ବେତନର କେତେକାଂଶ, ଅନେକ ସ୍ଥଳରେ ଅର୍ଦ୍ଧାଧିକ ମଧ୍ୟ ବିଦ୍ୟାଳୟର କର୍ତ୍ତୃପକ୍ଷ ଆତ୍ମସାତ୍ କରୁଛନ୍ତି; କିନ୍ତୁ ଏହାର କୌଣସି ପ୍ରତିକାର ହୋଇ ପାରୁ ନାହିଁ । ଯାହାହେଉ ବନମାଳୀ ବାବୁ ଏହାର ପ୍ରତିକାର ପାଇଁ ଦୃଢ଼ ପଦକ୍ଷେପ ଗ୍ରହଣ କରିଛନ୍ତି ଏବଂ ଆଶା କରାଯାଏ, ନିକଟ ଭବିଷ୍ୟତରେ ଶିକ୍ଷକ ମାନଙ୍କ ଅବସ୍ଥାରେ ପରିବର୍ତ୍ତନ ଘଟିବ ଓ ଶିକ୍ଷକମାନେ ନିଶ୍ଚୟ ସେମାନଙ୍କର ପୂର୍ଣ୍ଣ ପ୍ରାପ୍ୟ ପାଇ ପାରିବେ ।

ଆଜି ଶିକ୍ଷକ ମଣ୍ଡଳ ତାର ନ୍ୟାଯ୍ୟ ସମ୍ମାନ ପାଇ ପାରୁ ନାହିଁ । ଏହା ଧର୍ମର ଗ୍ଳାନି ନୁହେ ତ ଆଉ କ'ଣ ? ତେଣୁ ତାର ଦୂରୀକରଣ ଅବଶ୍ୟମ୍ଭାବୀ ।

ଈଶ୍ୱର ବନମାଳୀ ବାବୁଙ୍କୁ ଦୀର୍ଘାୟୁ କରନ୍ତୁ ଓ ତାଙ୍କ ଶରୀରରେ ଶକ୍ତି ପ୍ରଦାନ କରନ୍ତୁ । ଦରିଦ୍ର ଶିକ୍ଷକ ମାନଙ୍କର ଦୁଃଖ ଦୁର୍ଦ୍ଦଶା ଦୂର ହେଉ ।

● ଶିବାନନ୍ଦ ସାହିତ୍ୟାଗାର
ବୋଧପୁର
କଟକ୍



# ପ୍ରତିଭା ସ୍ମରଣେ

**ଶ୍ରୀ ପୂର୍ଣ୍ଣାନନ୍ଦ ତ୍ରିପାଠୀ**

ଆଜି ନଭେମ୍ବର ୧୮ ତାରିଖ । ଓଡ଼ିଶାର ବରେଣ୍ୟ ଶିକ୍ଷକ, ଶିଶୁ ସାହିତ୍ୟିକ, ତଥା ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ସଭାପତି କର୍ମଯୋଗୀ ପୂଜ୍ୟ ବନମାଳୀ ବ୍ରହ୍ମଗ୍ରାଙ୍କ ଜୟନ୍ତୀ ଦିବସ । ତାଙ୍କ ବିଷୟରେ କିଛି ଚିନ୍ତା କରିବାକୁ ଗଲାବେଳେ ସ୍ୱତଃ ତାଙ୍କର ବହୁମୁଖୀ ପ୍ରତିଭା ନିକଟରେ ନତମସ୍ତକ ହେବାକୁ ପଡ଼େ । ଯେଉଁଦିନ ହେବ ମୁଁ ତାଙ୍କୁ ଜାଣେ ବା ତାଙ୍କ ସଂସ୍ପର୍ଶରେ ଆସିଛି ସେତିକିରୁ ମୁଁ ତାଙ୍କର କେତୋଟି ଦିଗ ସମ୍ପର୍କରେ କିଞ୍ଚିତ ଧାରଣା କରି ପାରିଛି ।

ଯେଉଁ ଶିକ୍ଷକ ଗୋଷ୍ଠୀର ଭୂମିକା ସମାଜଗଠନ ଦିଗରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ସେହି ମାନଙ୍କ ମଧ୍ୟରୁ ବ୍ରହ୍ମଗ୍ରାହୀ ମହାଶୟ ଜଣେ । ପୂଜ୍ୟ ବ୍ରହ୍ମଗ୍ରାହୀ ମହାଶୟଙ୍କୁ ଛାତ୍ର, ଶିକ୍ଷକ ତଥା ଜଣାଶୁଣା ଲୋକମାନେ "ପଣ୍ଡିତ ମହାଶୟ" ବୋଲି ଜାଣନ୍ତି । ତେଣୁ ମୁଁ ମଧ୍ୟ ତାଙ୍କୁ ସେହିରୂପେ ଜାଣେ । ପୂର୍ବରୁ ପଣ୍ଡିତଙ୍କ ବିଷୟରେ ବହୁ ଶିକ୍ଷକଙ୍କ ଠାରୁ ବହୁ କଥା ଶୁଣିଛି ଏବଂ ସମ୍ବାଦ-ପତ୍ରରୁ ତାଙ୍କ ବିଷୟରେ ପଢ଼ିଛି, ମାତ୍ର ତାଙ୍କୁ ଦେଖିବାର ସୁଯୋଗ ପାଇନଥିଲି ।

ତାଙ୍କ ସହିତ ମୋର ପ୍ରଥମ ଦେଖାହୁଏ କେଉଁ ଏକ ଶୁଭ ମୁହୂର୍ତ୍ତରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଅଫିସ୍‌ରେ । ସେଦିନ ସେଠାରେ ଆମର "ଜାତି-ପ୍ରେମ-ବହ୍ନି" ଯୁବ ସାଂସ୍କୃତିକ ଅନୁଷ୍ଠାନର କାର୍ଯ୍ୟକାରୀ ମିଟିଂ ଥାଏ । ସେଦିନ ସେଥିରେ ସଭାପତିତ୍ୱ କରିବା ପାଇଁ ଆମ ଅନୁଷ୍ଠାନର ସଭାପତି ଶ୍ରୀ ରବିନାରାୟଣ ମହାପାତ୍ର, ସାଧାରଣ ସଂପାଦକ ଶ୍ରୀ ଚୈତନ୍ୟ କୁମାର ସାହୁ, ସଂଗଠନ ସଂପାଦକ ଶ୍ରୀ ଦୁର୍ଗା ପ୍ରସାଦ ପରିଡ଼ା ପ୍ରମୁଖ ପଣ୍ଡିତ ମହାଶୟଙ୍କୁ ଅନୁରୋଧ କଲେ । ହିଁ ନାହିଁ ଭିତରେ ଶେଷକୁ ସେ ସଭାପତିତ୍ୱ ଗ୍ରହଣ କଲେ । ଏବେ ସେ ନିଜେ ଏଥିରେ ଉପଦେଷ୍ଟା ଅଛନ୍ତି । ସେତିକି ବେଳେ ତାଙ୍କ ସହିତ ମୋର ପ୍ରଥମ ପରିଚୟ । ଅଗାଧ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ସେଦିନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସେ ନିଜର ବିନମ୍ର ସୌଜନ୍ୟ ଆମ ନିକଟରେ ପ୍ରକାଶ କରିବାର ଦେଖି ମୁଁ ତଟସ୍ଥ ହୋଇ ଯାଇଥିଲି । ଉକ୍ତ ଅନୁଷ୍ଠାନର ମୁଁ ସାଂସ୍କୃତିକ ସଂପାଦକ ଭାବରେ ଠିକ୍ ଯୋଗ୍ୟତା ହାସଲ କରିଛି କି ନାହିଁ ତାହା ପରଖିବା ପାଇଁ ମୋତେ କେତେଥର ଗୀତ ବୋଲାଇ ବଡ଼ ହାଡ଼ବଡ଼ କରାଇଛନ୍ତି । ପଣ୍ଡିତଜୀ କି ବିରାଟ···ଏବଂ ମୋ ପରି କ୍ଷୁଦ୍ର···ତାଙ୍କ ପାଖରେ ପୁଣି ମୋର ପରୀକ୍ଷା··· କଳ୍ପନା ବି କରି ହୁଏନା । କିନ୍ତୁ ପରୀକ୍ଷା ଦେଇଛି । ପାସ୍ କି ଫେଲ କରିଛି ଜାଣେନା ।

ଦିନକର କଥା ମନେ ପଡ଼େ । 'ପାରିଜାତ' ନାମକ ଶିଶୁ ପତ୍ରିକାଟିଏ ପଢ଼ୁଥାଏ । ହଠାତ୍ ପଣ୍ଡିତ ମହାଶୟଙ୍କ ଫଟୋ ଦେଖି ଚହିଁ ପାରିଲି । ସେଥିରେ ଲେଖକ "ଅଣସ୍ତରୀ ବର୍ଷର ବୁଢ଼ା ନା ବାଇଶି ବର୍ଷର ଯୁବକ" ଶୀର୍ଷକ ଲେଖାଟିଏ ପଣ୍ଡିତଙ୍କ ଉପରେ ଲେଖିଥାନ୍ତି । ମଧୁବାବୁଙ୍କର "ନୁହେଁ ବୃଦ୍ଧ ସେହି ଜନ, ଶୁକ୍ଳ କେଶ ଅଛି ଯାର ଶିର" ପଂକ୍ତି

ଉଦ୍ଧାର କରି ସେ ଲେଖିଥାନ୍ତି ଯେ "ବ୍ରହ୍ମଶ୍ରୀଙ୍କ ମୁଣ୍ଡରୁ ବାଳ ଉପୁଡ଼ି ଗଲାଣି, ବୟସ ସରିଆସିଲାଣି, ମାତ୍ର ଯୁବକ ପରି ସେ କର୍ମ ଚଞ୍ଚଳ।" ବାସ୍ତବିକ୍ ପଣ୍ଡିତଙ୍କୁ ଯେ ଦେଖିବ ସେ ବୁଢ଼ା ବୋଲି କହିବନି। ସେ ହେଉଛନ୍ତି କର୍ମର ଅବତାର। ଅଦମ୍ୟ ଉତ୍ସାହ ଓ ଶତ ସିଂହର ବଳ ନେଇ ଏବେ ବି ସେ କର୍ମରତ। ବାର୍ଦ୍ଧକ୍ୟର ସୀମା ଏପର୍ଯ୍ୟନ୍ତ ବି ତାଙ୍କୁ ଛୁଇଁ ପାରିନି। ସବୁବେଳେ ତାଙ୍କର ଲେଖନୀ କର୍ମତତ୍ପର।

ପଣ୍ଡିତଙ୍କୁ ଜଣେ ଶିଶୁ ସାହିତ୍ୟିକ କହିଲେ ଭୁଲ୍ ହେବନି। ସେ ବର୍ତ୍ତମାନ ସୁଦ୍ଧା ଛୋଟ ପିଲାମାନଙ୍କ ଲାଗି ଅନେକ ପୁସ୍ତକ ରଚନା କରିଛନ୍ତି ଓ କରୁଛନ୍ତି, ଯେଉଁଗୁଡ଼ିକ କି ଓଡ଼ିଶା ତଥା ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ। ଶିଶୁ ମାନଙ୍କର ଜ୍ଞାନ ବୃଦ୍ଧି ତଥା ଉନ୍ନତି ଦିଗରେ ଏ ପ୍ରକାର ଉଦ୍ୟମ ପ୍ରଶଂସନୀୟ। ତାଙ୍କଠାରୁ କେତୋଟି ବହି ନେଇ ମୁଁ ମଧ୍ୟ ପଢ଼ିବାର ସୁଯୋଗ ପାଇଛି।

ବାସ୍ତବିକ୍ ପ୍ରକୃତ ପକ୍ଷରେ ସେ ଏକ ବହୁମୁଖୀ ପ୍ରତିଭାର ପ୍ରତୀକ। ସେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଶିଶୁ ସାହିତ୍ୟିକ, ସମାଜ ସେବକ ତଥା ମିତବାଦୀ ପୁରୁଷ, ଯାହାଙ୍କୁ କି ଗୋଟିଏ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବ ନାହିଁ। ସେହି ଗୁରୁପ୍ରତିମ ପଣ୍ଡିତ ମହାଶୟଙ୍କ ଜନ୍ମ ତିଥିରେ ତାଙ୍କର ଶୁଭାଶୀର୍ବାଦ ଭିକ୍ଷା କରି ମୁଁ ମୋର ପ୍ରଣତି ଜ୍ଞାପନ କରିବା ସଙ୍ଗେ ସଙ୍ଗେ ବିଭୁଙ୍କ ନିକଟରେ ପଣ୍ଡିତଙ୍କୁ ଶତାୟୁ ହେବାର କାମନା କରୁଛି।

ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁର୍ଦ୍ଦେବ ମହେଶ୍ୱରଃ
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ।"

● ରେଭେନ୍ସା ମହାବିଦ୍ୟାଳୟ
ତୃତୀୟ ବର୍ଷ କଳା
କଟକ-୩



# ଏତେ କ୍ଷୁଦ୍ର ! ପୁଣି ଏତେ ବିରାଟ !!

**ଶ୍ରୀ ଦୁର୍ଗାପ୍ରସାଦ ପରିଡ଼ା**

ସେଦିନ ରବିବାର ।

ସକାଳୁ ସକାଳୁ ବାହାରି ପଡ଼ିଲି ବ୍ରହ୍ମଚାରୀଙ୍କ ଅଫିସ । ଆମେ କେତେ ଜଣ କଲେଜ ପିଲା ଗୋଟିଏ ଅନୁଷ୍ଠାନ ଗଢ଼ିଛୁ । ସେଥିରେ ବ୍ରହ୍ମଚାରୀ ଉପଦେଷ୍ଟା ଅଛନ୍ତି ।

ଆଗରୁ ବ୍ରହ୍ମଚାରୀଙ୍କ ସଂସ୍ପର୍ଶରେ କେବେ ଆସି ନ ଥିଲି । କେବଳ ତାଙ୍କ ବହୁମୁଖୀ ପ୍ରତିଭା, ଅପୂର୍ବ କର୍ମ-ପ୍ରେରଣା, ବଳିଷ୍ଠ ନେତୃତ୍ୱ ସଂପର୍କରେ କେତେ କଥା ଶୁଣିଥିଲି । ଯୌବନରୁ ସେ କିପରି ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ନିଜକୁ ଦେଶ ସେବାରେ ନିୟୋଜିତ କରିଛନ୍ତି, ସେ ବିଷୟରେ ମୁଁ କେତେ କଣ ଶୁଣିଥିଲି । ଭାବୁଥିଲି କେତେ ମହାନ୍ ହୋଇଥିବେ ସେ !

ସେହି ବିରାଟ ବ୍ୟକ୍ତିଙ୍କ ସହ ମୁଁ ଯାଉଛି ପ୍ରତ୍ୟକ୍ଷରେ ଆଲୋଚନା କରିବା ପାଇଁ । ବିଶ୍ୱାସ ହେଉ ନ ଥାଏ । ସେ କେତେ ବିରାଟ···ଆଉ ମୋ ପରି କ୍ଷୁଦ୍ରାତିକ୍ଷୁଦ୍ର··· । କଳ୍ପନା କରି ପାରୁ ନଥାଏ ।

ସ୍କୁଲରେ ପଢ଼ୁଥିବା ସମୟରେ ମୁଁ କେବଳ ବ୍ରହ୍ମଚାରୀଙ୍କ ନାଁ ଶୁଣିଥିଲି । ତାଙ୍କର ଲିଖିତ 'ମାଧ୍ୟମିକ ପ୍ରବନ୍ଧ ଲିଖନ ଶିକ୍ଷା'ରୁ କେତେ ପ୍ରବନ୍ଧ କପି କରି ଶିକ୍ଷକଙ୍କଠାରୁ ବାହାବା ପାଇଛି, ତାର ହିସାବ ଦେଇ ହେବନି । ଖାତା ଉପରେ ଶିକ୍ଷକଙ୍କର ନାଲି କଲମର 'ଗୁଡ୍' ରିମାର୍କ ଦେଖି କେତେଥର ଯେ ଛାତି ମୋର ଫୁଲି ଉଠିଛି, ସେ କଥା ଭାବି ପାରୁନି । ସେତେବେଳେ ହୁଏତ ମୁଁ ଜାଣିବାର ସୁଯୋଗ ପାଇ ନ ଥିଲି, ଯାହା ଯୋଗୁଁ ମୁଁ ଆଜି ଏତେ ପ୍ରଶଂସାର ପାତ୍ର, ସେ ମହା-ପୁରୁଷ କିଏ ?

ଗାଁ ଚାଟଶାଳୀରେ ପଢ଼ୁଥିବା ସମୟରେ ଗୁରୁଜୀଙ୍କର ବେତ ମାଡ଼ କଥା ଭାବି ମୁଁ ଅଜାଣତରେ ମୋ ପିଠିରୁ ହାତ ବୁଲେଇ ଆଣୁଥାଏ । ସେ ସେଉଁ ଯନ୍ତ୍ରଣା, ଏବେ ବି ତାହା ମନରୁ ଯାଇନି । ସେତେବେଳେ ସେ ତ ଥିଲେ ପନ୍ଦର କି କୋଡ଼ିଏ ଜଣ ଛାତ୍ରଙ୍କର ଶିକ୍ଷକ । ଆମେ ତ ତାଙ୍କୁ ଏତେ ଭୟ କରୁଥିଲୁ । କିନ୍ତୁ ବ୍ରହ୍ମଚାରୀ ମହାଶୟ ତ ଶହ ଶହ ଶିକ୍ଷକଙ୍କର ଶିକ୍ଷକ । ଗୁରୁଙ୍କର, ଗୁରୁ, ଗୁରୁଙ୍କର ଓସ୍ତାଦ୍ । ସେ ଶିକ୍ଷକ ସମାଜକୁ ଶାସନ କରୁଛନ୍ତି । ଆଉ ସେ କେତେ ବିରାଟ ହୋଇ ନ ଥିବେ ! କେଉଁ ସାହସ ନେଇ ମୁଁ ତାଙ୍କ ସହ ଆଲୋଚନା କରିବି । ମନ ପଛେଇଲା । ଗୋଡ଼ ଅଟକିଲା । ବ୍ରହ୍ମଚାରୀଙ୍କ କଥା ମନେ ପଡ଼ିଯିବାରୁ ତଣ୍ଟି କଣ୍ଠ ଶୁଖି ଆସିଲା ।

ମନରେ ଖାଲି କିନ୍ତୁ କିନ୍ତୁ ଭାବ, କେତେ ଭୟ, କେତେ ଭ୍ରାନ୍ତି ।

ତଥାପି ସାହସ ସଞ୍ଚୟ କଲି । ଗାନ୍ଧୀଜୀଙ୍କ କଥା ମନେ ପଡ଼ିଯିବାରୁ ଭରସା ଆସିଲା । ସେ ଏଡ଼େ ବଡ଼ ଜାତିଟାକୁ ଶୃଙ୍ଖଳିତ କରି କେଡ଼େ ବଡ଼ କରେଇ ପାରି ନ ଥିଲେ । ପିଲମାନଙ୍କୁ କେତେ ଭଲ ପାଉ ନ ଥିଲେ ସେ ! ! ଆଉ କେତେ ସରଳ ନ ଥିଲେ !

ବ୍ରହ୍ମଚାରୀ ମହାଶୟ ହୁଏତ ଠିକ୍ ସେପରି ହୋଇ-ଥିବେ ।

ଏହାପରେ କେତେ କଥା ଭାବି ଭାବି ତାଙ୍କ ଅଫିସ ପାଖରେ ପହଞ୍ଚିଲି । ଦୂରରୁ ଦେଖିଲି ବ୍ରହ୍ମଚାରୀ ମହାଶୟ ଖଣ୍ଡିଏ ଆଣ୍ଠୁଲୁଗା ଖଦଡ଼ ଧୋତିଟିଏ ପିନ୍ଧି ଖାଲି ଦେହରେ ଅଫିସରେ ବସି କ'ଣ ଲେଖିଯାଉଛନ୍ତି । ଗୋରା ତକ ତକ ଦେହକୁ ତାଙ୍କର ସେ ଗୁରୁ-ଗମ୍ଭୀର ପ୍ରଶାନ୍ତ ମୁଖମଣ୍ଡଳ ଏକ ବିରାଟ ବ୍ୟକ୍ତିତ୍ୱର ସୂଚନା ଦେଉଥିଲା । ଉଦୟ ସୂର୍ଯ୍ୟର ନାଲି କିରଣ ଛିଟା କେଇ ଟୋପା ତାଙ୍କ ମୁହଁରେ ପଡ଼ି ଏକ ବିରାଟ ଦାର୍ଶନିକ ଭଳି ଗମ୍ଭୀର ଦେଖା ଯାଉଥିଲେ ସେ ।

ପାଖକୁ ଗଲି । ନବେ ଡିଗ୍ରୀ ମୁଣ୍ଡ ନୁଆଁଇ ନମସ୍କାର କଲି । ମୁଣ୍ଡ ଟେକି ଚାହିଁଲେ ସେ । ଓଠ-ଧାରରେ ଚେନାଏ ମଧୁର ହସ ଖେଳାଇ ପଚାରିଲେ, "ଆଜି ସବୁ କ'ଣ ହେଉଛି ?" ସତେ ଯେମିତି ମୁଁ ତାଙ୍କର ଯୁଗ ଯୁଗର ଚିହ୍ନା ।

ମୁଁ କହିଲି, ଆମେ "ଜାତି-ପ୍ରେମ-ବହ୍ନି" ନାମରେ ଅନୁଷ୍ଠାନଟିଏ ଗଢ଼ିଛୁ । ଆପଣଙ୍କୁ ସେଥିରେ ଉପଦେଷ୍ଟା ରଖିଛୁ । ମୋ କଥା ଶୁଣି ସେ ହଠାତ୍ କଲମଟା ଟେବୁଲ୍ ଉପରେ ଥୋଇ ମୋତେ ଚାହିଁଲେ । ଆମ ଅନୁଷ୍ଠାନର ଲକ୍ଷ୍ୟ ଆଦର୍ଶ ବିଷୟରେ କେତେ କ'ଣ ପଚାରିଲେ । ମୋ ଉତ୍ତର ଶୁଣି ସେ ଖୁବ୍ ଖୁସି ହୋଇ କହିଲେ, "ଅନୁଷ୍ଠାନର ନାମ 'ଜାତି-ପ୍ରେମ-ବହ୍ନି' ଖୁବ୍ ସୁନ୍ଦର ହୋଇଛି । ଏହି ଶବ୍ଦର ସୃଷ୍ଟିକର୍ତ୍ତା ଉତ୍କଳ-ଗୌରବ ମଧୁସୂଦନଙ୍କ ହୃଦୟରେ ଜାତି-ପ୍ରେମ ରୂପକ ଅଗ୍ନି କିପରି ଦାଉ ଦାଉ ଜଳୁଥିଲା, ତାହା ଆଗେ ଜାଣିବାକୁ ହେବ । ସେ ଦେଶ ପାଇଁ ଓ ଜାତି ପାଇଁ କ'ଣ କରିଥିଲେ, ତାହା ଜାଣିଲେ ଆମେ ଆମ ଶକ୍ତିରେ ତଦନୁରୂପ କାର୍ଯ୍ୟ କରିବାକୁ ପ୍ରେରଣା ଓ ପ୍ରୋତ୍ସାହନ ପାଇବା ସିନା ।" ଟିକିଏ ରହି ପୁଣି କହିଲେ, "ମନେ ରଖ, କିଛି ପାଇବାର ଆଶା ନ ରଖି କିଛି କରିବାର ଆଶା ରଖ ।" ତାଙ୍କ ଗୁରୁ ଗମ୍ଭୀର କଣ୍ଠର ଏଇ ମହତ୍ ବାଣୀ ପଦକ ଏବେ ବି ମୋ ମାନସ ପଟରେ ଉଙ୍କିମାରେ ।

ସେଦିନ ତାଙ୍କ ଠାରୁ ସ୍ୱୀକୃତି ନେଇ ଫେରି ଆସିଲି ।

କିଛି କ୍ଷଣ ପୂର୍ବରୁ ଯାହାଙ୍କୁ ମୁଁ ମେଘ ଭଳି ଗମ୍ଭୀର, ଅନନ୍ତ ମହାକାଶ ଭଳି ବିରାଟ ବୋଲି ଭାବିଥିଲି, କ୍ଷଣକ ମଧ୍ୟରେ ସେ ଭାବ ମୋର ଦୂରେଇ ଗଲା । ସେ ଗମ୍ଭୀର ହୋଇ ମଧ୍ୟ ସରଳ । ସେ ବିରାଟ ହୋଇ ମଧ୍ୟ କ୍ଷୁଦ୍ର, ଉଦାର । ତାଙ୍କର ମହନୀୟତା ତାଙ୍କୁ ହିମାଳୟ ପରି ଉଚ୍ଚାଙ୍ଗ କରି ଗଢ଼ିଛି ।

ଆଉ ଦିନକର କଥା ।

ଦିନେ ତାଙ୍କର ଅଫିସରେ ଆମ 'ଜାତି-ପ୍ରେମ-ବହ୍ନି'ର ଏକ କାର୍ଯ୍ୟକାରୀ ବୈଠକ ବସିଥିଲା । ବ୍ରହ୍ମଚାରୀ ମହାଶୟ ନିଜେ ସେଥିରେ ସଭାପତିତ୍ୱ କରୁଥାନ୍ତି । ସଭାଟି ଖୁବ୍ ସରଗରମ ଉପରେ ଚାଲିଥାଏ । ଅନୁଷ୍ଠାନର ପ୍ରାଦେଶିକ ସମ୍ମିଳନୀ, ଆଞ୍ଚଳିକ ଶାଖା ଉଦ୍‌ଘାଟନ-ଏହିପରି କେତେକ ଗୁରୁତ୍ୱ ପୂର୍ଣ୍ଣ ବିଷୟ ଆଲୋଚନାର ଅନ୍ତର୍ଭୁକ୍ତ ହୋଇଥାଏ । ଏହି ସମୟରେ ବାହାରୁ କେତେ ଜଣ ଶିକ୍ଷକ ଆସି ବ୍ରହ୍ମଚାରୀଙ୍କୁ କ'ଣ କହିଲେ । ସେ ତତ୍‌କ୍ଷଣାତ୍ ଉଠିପଡ଼ି ବିନମ୍ର ସ୍ୱରରେ କହିଲେ, "ଆଜ୍ଞା, କ୍ଷମା କରିବେ । ମୁଁ ଟିକିଏ ଆସୁଚି" ।

ଏତା କହି ସେ ଲଣ୍ଡ ଭଣ୍ଡ ହୋଇ ଘର ଭିତରକୁ ଧାଇଁଲେ । ମୁଁ ତାଙ୍କର ଏଭଳି ଗତି ଦେଖି ଧୈର୍ଯ୍ୟ ଧରି ପାରିଲି ନି । ଫିକ୍ କରି ହସିଦେଲି । ମୋ ହସ ଦେଖି ଅନ୍ୟମାନେ ବି ହସିଲେ ।

କିଛି କ୍ଷଣ ପରେ ପୁଣି ସେ ଫେରିଆସି ସଭାପତି ଆସନରେ ବସି ପଡ଼ିଲେ । ଏହିପରି ସେଦିନ ମିଟିଂରେ ପ୍ରାୟ ତିନି ଚାରିଥର ବାହାରକୁ ଧାଇଁଛନ୍ତି ଓ ପୁଣି ଆସି ସଭା ଚାଲୁ କରିଛନ୍ତି ।

ସତରେ ତାଙ୍କର କେତେ କାମ !!!

ଜୀବନସାରା ସେ ଖାଲି କାମ କରି ଆସିଛନ୍ତି, ଆଉ କାମ କରୁଛନ୍ତି । ତାଙ୍କର ବିଶ୍ରାମ ନାହିଁ । ଏ ପରିପ୍ରେକ୍ଷୀରେ ତାଙ୍କର ସମୟ କାହିଁ, ସେ ଗୋଟିଏ ସ୍ଥାନରେ ବସି ଘଣ୍ଟା ଘଣ୍ଟା ଧରି ସଭାଟିକୁ ପରିଚାଳନା କରିବେ ! ତାଙ୍କ ପାଇଁ ପ୍ରତି ମିନିଟ ହିଁ କାମର ଗଦାଗଦା ନିଥି ।

ସେଦିନ ସଭା ଶେଷ ହେଲା ବେଳକୁ ମଧ୍ୟ ସେ ନ ଥିଲେ । ସଭା ଶେଷ ହେବାକୁ ଯାଉଥିବା ଶୁଣି ପୁଣି ଧାଇଁ ଆସି ହସ ମୁହଁରେ ତାଙ୍କର ଅନୁପସ୍ଥିତି ଯୋଗୁଁ କ୍ଷମା ମାଗିନେଇ ସଭା ଶେଷ ହେଲା ବୋଲି ଘୋଷଣା କଲେ ।

ଏବେ ବି ତାଙ୍କର ମୋତେ ସେଇ ଗୋଟିଏ ପ୍ରଶ୍ନ, 'କଣ ପରିଡ଼ାଏ, କେତେଦୂର ଗଲା । ପାରୁଛତ ? ଦେଖ୍ ଏତିକରେ ମୋ ମନରେ ଆଶାର ପିରାମିଡ୍, କଳ୍ପନାର ସୌଧ । ମୁଁ ହାରିନି । ଆଗକୁ ଧାଇଁଛି । ତାଙ୍କର ଆଦର୍ଶ ମୋ ଆଖି ଆଗରେ । ଆଶୀର୍ବାଦ ତ ରହିବ । ତେବେ ଭୟ କ'ଣ ?

ବ୍ରହ୍ମଗିରି ମହାଶୟ କାମ କରି ଗଲେଚନ୍ତି, ବିଜୟର ଆଶା ନ ରଖି । କେତେଥର ହାରିଛନ୍ତି । କିନ୍ତୁ ଯୁବକଭଳିର ଚଞ୍ଚଳତା ନେଇ ପୁଣି ଦମ୍ଭ ହୋଇ ଛିଡ଼ା ହୋଇଛନ୍ତି । ସେ ଖାଲି ଗଲେଛନ୍ତି ଆଗକୁ··· ଆଗକୁ । ବିଶ୍ୱବିଜୟ ଛୁଇଁବା ତାଙ୍କର ଆଶା । ମାନବିକତାକୁ ପ୍ରଚାର କରିବା ତାଙ୍କର ଇଚ୍ଛା ।

କାରଣ ସେ ଯେ ମଣିଷ ଜାତି, ଆଉ ତାଙ୍କର ଧର୍ମ ଯେ ମାନବିକତା !

ସେ ଗଲେଛନ୍ତି । ବୟସ ତାଙ୍କୁ ଛୁଇଁନି, ତାଙ୍କ ମତରେ **"Eternal happiness comes by personal sacrifice, not by personal enjoyment."** ଏବଂ ତାଙ୍କ ଜୀବନରେ ସେ ମଧ୍ୟ ଏହା ପ୍ରମାଣିତ କରିଛନ୍ତି ।

ସେ ମଣିଷ । ତଥାପି ଚନ୍ଦ୍ର ସୂର୍ଯ୍ୟଙ୍କୁ ଜୟ କରିବା ତାଙ୍କର ଆଶା । ଅନ୍ଧକାରକୁ ବିନଷ୍ଟ କରିବା ତାଙ୍କର ଇଚ୍ଛା । ଚତୁର୍ଦ୍ଦିଗରେ ଆଲୋକର ଖାଜ ବୁଣିବା ତାଙ୍କର କଳ୍ପନା । ତେଣୁ ଅନନ୍ତ ମହାକାଶର ନୀଳିମା ତାଙ୍କୁ ମୁଗ୍ଧ କରିନି, ଅନନ୍ତ ମହାକାଶର ଗଭୀରତା ତାଙ୍କୁ ହତାଶ କରିନି ।

ସେ ଗଲେଛନ୍ତି ଆଗକୁ·····ଆହୁରି ଆଗକୁ । ଲକ୍ଷ୍ୟ ତାଙ୍କର ଅନେକ ଦୂରରେ ।

ସେ ଗଲେଛନ୍ତି, ଆଉ ଗଲୁଥିବେ ମଧ୍ୟ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ । ତାଙ୍କୁ ଏ ପବିତ୍ର ଜନ୍ମ ଜୟନ୍ତୀରେ ମୁଁ ମୋର ବିନମ୍ର ପ୍ରଣତି ଜଣାଉଛି । ସେ ଦୀର୍ଘଜୀବୀ ହୁଅନ୍ତୁ ।

● ସଂଗଠନ ସଂପାଦକ
'ଜାତି-ପ୍ରେମ-ବହ୍ନି'
ଝାଞ୍ଜିରୀମଙ୍ଗଳା
କଟକ-୯



# ମୁଁ ତାଙ୍କୁ ଯେଭଳି ଦେଖିଛି

ଶ୍ରୀ ସତ୍ୟପ୍ରିୟ ନାୟକ

"ଆଶା-ଆଷାଢ଼ ଯେବେ ଢାଳିଲା ପାଣି
ନିଶାନବଢ଼ ଅନ୍ଧାରେ କହ କାହାଣୀ···।"

ବାଦ୍ୟଯନ୍ତ୍ରର ତାଳେତାଳେ ସଭା ମଣ୍ଡପର ଅନ୍ତରାଳରୁ 'ଆବାହନୀ-ଗୀତିକା'ର ଲହର ଛୁଟି ଆସିଲା । ସଙ୍ଗୀତର ସମ୍ମୋହନୀ ସ୍ୱରରେ ତନୁମନ କ୍ଷଣିକ ପାଇଁ ଶିହରି ଉଠିଲା । ବିକ୍ଷିପ୍ତ ମନକୁ କେନ୍ଦ୍ରୀଭୂତ କରି ମନ୍ତ୍ରମୁଗ୍‌ଧ ପରି ସଙ୍ଗୀତର ମୃଦୁ ମଧୁରତାକୁ ଅନୁଭବ କଲି ।

ସଭାମଣ୍ଡପର ଅନ୍ତରାଳରୁ ଧୀର ପଦ ଗୃଳ କଣୋଖ ଯୂଥିକା ମଣ୍ଡପ ନିକଟକୁ ଆଗେଇ ଆସିଲେ ।

'ଗୀତିକା'ର ଶେଷ ପର୍ଯ୍ୟାୟ······

"କହ କାହାଣୀ······

ଝରୁ ଦେଶ ନେତା କଣ୍ଠୁ ଅଭୟ ବାଣୀ···"

ଫୁଲମାଳ ।

ନମସ୍କାର ।

କରତାଳି ।

ବିଦାୟ ।

କଣୋଖ ଯୂଥିକା ଯେଉଁ ପଥଦେଇ ସଭାମଣ୍ଡପକୁ ଆସିଥିଲେ । ତାର ବିପରୀତ ପଥରେ ବିଦାୟ ନେଲେ ।

ସଭାମଣ୍ଡପରେ ସପ୍ତରଥୀ······

'ଦେଶନେତା'ଙ୍କୁ ଚିହ୍ନିବାପାଇଁ ଯେତିକି ଉଦ୍ଦାମତା ନ ଥାଏ ତା ଅପେକ୍ଷା ବେଶୀ ଥାଏ ମୋ' ନିଜ ନେତାଙ୍କୁ ଚିହ୍ନିବା ପାଇଁ । କିଏ ତେବେ ମୋ' ନିଜ ନେତା ?

ସଭାମଣ୍ଡପରେ ଆସୀନ ଅନ୍ୟଷଟ୍‌-ଭଦ୍ରବ୍ୟକ୍ତିଙ୍କ ପରିଚୟ ଦେବାକୁ ଯାଇ ଯେ ନିଜ ପରିଚୟ ନ ଦେଇ ତୁନି ରହିଗଲେ । ଗାଣିତିକ ସୂତ୍ର ଅନୁସାରେ ମୁଁ ତାଙ୍କୁ ଚିହ୍ନିନେଲି ।

କାର୍ଯ୍ୟସୂଚୀ ଭିତ୍ତିରେ ତାଙ୍କର ଭାଷଣ ଶୁଣିବାର ସୁଯୋଗ ସେଦିନ ମିଳିଲା । ତାଙ୍କ ଭାଷାର ମାଧୁର୍ଯ୍ୟ, ଭାବର ସୌନ୍ଦର୍ଯ୍ୟ, କଥନଭଙ୍ଗୀର ଗାମ୍ଭୀର୍ଯ୍ୟ ଏବେ ବି ମୋର ଅବଚେତନ ମନ ତଳେ ଅଳଭା ଗାର ହୋଇ ରହିଛି । ସେଦିନ ତାଙ୍କ ଭାଷାରେ ଯେଉଁ ଅଗ୍ନିର ଝଲକ ଥିଲା, ତାହା ଯେ ଦିନେ ଶିଥିଳ ଶିକ୍ଷକ ସମାଜକୁ ଉତ୍ତପ୍ତ କରିପାରିବ, ଏକଥା ମୁଁ ସେହିଦିନ ଅନୁଭବ କଲି ।

"ରାଜ୍ୟର ସର୍ବାଧିନାୟକ ମାନ୍ୟବର ମୁଖ୍ୟମନ୍ତ୍ରୀ ହଜାର ହଜାର ନିମ୍ନ ମାଧମିକ ଶିକ୍ଷକଙ୍କର ପ୍ରତିନିଧି-ବର୍ଗଙ୍କୁ ଏତେ ଅସମ୍ମାନ କରିପାରନ୍ତି, ତାଙ୍କର କଥା ଓ କାର୍ଯ୍ୟରେ ଏତେ ଅସାମଞ୍ଜସ୍ୟ ଦେଖାଯାଏ ଏବଂ ତାଙ୍କ ପ୍ରତିଶ୍ରୁତି ଏତେ ଫମ୍ପା, ତାହା ଆମ୍ଭେମାନେ ସେହିଦିନୁ ଜାଣିଲୁ ।"

ଜଣେ ସହଯୋଗୀ ମନ୍ତ୍ରୀଙ୍କ ସଭାପତିତ୍ୱରେ ମୁଖ୍ୟ ମନ୍ତ୍ରୀଙ୍କ ସମ୍ପର୍କରେ ଯେଉଁ ମହାଶୟ ଏଭଳି ନିର୍ଭିକ ମତ ପ୍ରକାଶ କଲେ, ସେ ହେଉଛନ୍ତି ଶିକ୍ଷକ ସମାଜର ନେତା ଓ 'ସଙ୍ଘ'ର ପ୍ରାଣ-ପ୍ରତିଷ୍ଠାତା ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗୃହ ।

କଟକ ଟ୍ରେନିଂସ୍କୁଲର ଗ୍ରନ୍ଥ ଦ୍ୱାରରେ ଶ୍ରୀ ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ଏଇ ୩୨ୟ ବାର୍ଷିକ ଅଧିବେଶନରେ ମୁଁ ତାଙ୍କୁ ପ୍ରଥମ ଦେଖିଲି ।

ମନରେ ସେତେବେଳେ, ଯୁବକ ସୁଲଭ ଉଦ୍ଦାମତା-କଶୋର-ସୁଲଭ ମାଦକତା, ବାଳକସୁଲଭ ପ୍ରବଣତା ଗୋଟିକ ପରେ ଗୋଟିଏ ଲୁଚକାଳି ଖେଳୁଥାଆନ୍ତି । ଅନନ୍ତ ପାରବାରକୁ ଲଙ୍ଘିବାର ଦୁଃସାହସ, ଅଗ୍ନିବଳୟକୁ ଲମ୍ଫ ଦେବାର ଅଛହାସ୍ୟ, ନନ୍ଦନ-କାନନର ପାରିଜାତ ତୋଳିବାର କଳ୍ପନା, ମଳୟ ରଥରେ ଘୂରି ବୁଲିବାର ଜଳ୍ପନା ଯେଉଁ ବୟସରେ ଜାଗରିତ ହୋଇଥିଲା । ତାଲିମ ଭବନରୁ ଫେରି ଯାହାକୁ କର୍ମକ୍ଷେତ୍ରରୂପେ ବାଛି ନେଲି, ସେ ଅଞ୍ଚଳରେ ସେତେବେଳେ 'ସଙ୍ଘ'ର ପ୍ରସାର ନ ଥାଏ । ବ୍ରହ୍ମଗୃହୀ ମହାଶୟଙ୍କ ନିକଟକୁ ନିଜର ଅଭିଳାଷ ଜଣାଇ ପତ୍ର ଖଣ୍ଡିଏ ଲେଖିଲି ।

ଦେଖି ନଥିବା ଶୁଣି ନଥିବା ଜାଣିନଥିବା ମୋ'ପରି ସୁଦୂର ମଫସଲ ଅଞ୍ଚଳର ଜଣେ ଶିକ୍ଷକ ପଠାଇଥିବା ଚିଠିର ଉତ୍ତର ସେ ପଠାଇବେ, ଏ ଧାରଣା ମୋର ନ ଥିଲା । "× × ଆପଣଙ୍କ ସଙ୍ଗେ ଥରେ ସାକ୍ଷାତ ହେଲେ ଭାରି ଖୁସି ହୁଅନ୍ତି, ମାତ୍ର ସମୟାଭାବ ତାହା କରାଇ ଦେଉନାହିଁ ।

"ଆଜି ବିଶେଷ ଅନୁରୋଧ, ଆପଣ ଗୋଟିଏ କ୍ଷୁଦ୍ର ଗଳ୍ପ ଆମ ପ୍ରସ୍ତାବିତ ପତ୍ରିକା ପାଇଁ ପଠାଇବେ × ×"

[ପତ୍ରାଙ୍କ ୭୦୭, ତା ୧୭।୧୨।୭୩

କଜଳ-କଳାରାତିରେ ବିଦ୍ୟୁତ୍‌ର କ୍ଷଣିକ ସ୍ପନ୍ଦନ ଯେପରି ଅନ୍ଧକାରମୟ ସମଗ୍ର ଆକାଶକୁ ଆଲୋକିତ କରିଦିଏ, ତାଙ୍କର ଏଇ ଦି'ଧାଡ଼ି ଲେଖା ମୋର ଅନ୍ତରକୁ ଝଲସାଇ ଦେଲା ।

ଛାତ୍ରାବସ୍ଥାରେ କବିତା ପ୍ରତି ମମତା ଥିଲା । ପରେ ପରେ କ୍ଷୁଦ୍ର ଗଳ୍ପରେ ମନୋନିବେଶ କଲି । ଟ୍ରେନିଂ ସ୍କୁଲରେ ଗୋଟିଏ ମାତ୍ର କ୍ଷୁଦ୍ର ଗଳ୍ପ ଲେଖି 'ଜିଜ୍ଞାସୁରେ' ପ୍ରକାଶପାଇଁ ଦେଇଥିଲି । ଏଥର ବିସ୍ମୟ ନଜାଣି ସାପଗାତରେ ହାତ ଦେଲି । ଲେଖାଟି ପଠାଇଦେଲି । ମନରେ ଆଶା ଓ ଆଶଙ୍କାର ଲୁଚକାଳି । ଚିଠି ପାଇଲି—"× × ଶିକ୍ଷକ ଜୀବନରେ ଅନୁଭୂତ ଦୈନ୍ୟ ପୂର୍ଣ୍ଣ କାହାଣୀକୁ ଆଶ୍ରୀକରି କ୍ଷୁଦ୍ରଗଳ୍ପ ଲେଖିବାରେ ଆପଣଙ୍କ ବାହାଦୁରୀ ଦେଖୁଛି, ତାହାହିଁ ଲେଖନ୍ତୁ ପରବର୍ତ୍ତୀ ସଂଖ୍ୟା ପାଇଁ । × ×" (ପତ୍ରାଙ୍କ ୭୬୧, ତା ୯ । ୨ । ୭୫ )

କାହାର ଯଶଃ ଗୌରବ ପାଇଁ ସେ ଯେତକ ଶତଜିହ୍ୱ ହୋଇ ପ୍ରଶଂସା କରନ୍ତି, ଦୋଷ ଦୁର୍ବଳତା ପାଇଁ ମଧ୍ୟ ସହସ୍ର ଜିହ୍ୱ ହେବାକୁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଶହେ ଖଣ୍ଡ ବହି ବିଭିନ୍ନ ସ୍କୁଲରେ ବିକ୍ରି କରି ନପାରି ୨୧ ଖଣ୍ଡ ଫେରାଇ ଦେବାରୁ ସେ ମୋର ଆଳସ୍ୟ ବିଷୟରେ କଡ଼ା ଚିଠି ଲେଖିଲେ । ଆମେ ଏକା ସାଥିରେ କାମ କରୁଥିଲେ ମଧ୍ୟ ତାଙ୍କ ପ୍ରତି ମୋର ଅଗାଧ ଭକ୍ତି । ତାଙ୍କ ତୁଳନାରେ ମୁଁ ପିଲା ! ଚିଠି ପଢ଼ି ମୁଁ ଲଜ୍ଜିତ ହେଲି ଏବଂ ଲେଖିଲି । "୭୯ ଖଣ୍ଡ ବିକ୍ରି କରି ଦେଇଥିବାରୁ ପୁରସ୍କାର ସ୍ୱରୂପ 'କର୍ଣ୍ଣ ରସାୟନ' ସାକ୍ଷାତ ହେଲା ବେଳେ ଦେବେ ।" ପରେ ଦେଖା ହେବାରୁ ସେଇକଥା ସୂଚାଇଲି । ସେ କେବଳ ହସିଲେ ।

ପୁଷ୍ପିକଲା ଡ. ଆଇ. ଙ୍କ ସମ୍ପର୍କରେ ମୁଁ ମୋର କେତେକ ଅପରିପକ୍ୱ ମତ ପ୍ରକାଶ କରି ତାଙ୍କ ପାଖକୁ ଚିଠି ଲେଖିଲି । ସେ ଏହାର ଉତ୍ତର କଡ଼ା ଭାଷାରେ ଫେରନ୍ତା ଡାକରେ ଜଣାଇଲେ । ମୁଁ ଲଜ୍ଜିତ ହେଲି । ସୌଭାଗ୍ୟ କ୍ରମେ ଦିନେ ଦୁଇଦିନ ମଧ୍ୟରେ ପତ୍ରିକା ପଢ଼ି ସମସ୍ତ ବିଷୟ ଅବଗତ ହେଲି ଏବଂ ତାଙ୍କୁ ମୋର ଭୁଲ ଜଣାଇ ଚିଠି ଲେଖିଲି ।

ଗୋପ ପଞ୍ଚାୟତ ସମିତି ଅନ୍ତର୍ଗତ ୨୯ଟି ମ: ଇ: ବିଦ୍ୟାଳୟକୁ ନେଇ ଏକ ଆଞ୍ଚଳିକ ସଭା ୨୪-୧୦-୭୫ ତାରିଖରେ ଗଣେଶ୍ୱରପୁର ବାଳିକା ବିଦ୍ୟାଳୟରେ ଅନୁଷ୍ଠିତ ହେଲା । ବ୍ରହ୍ମଗୃହୀ ମହାଶୟଙ୍କୁ ସଭାପତି ଆସନ ଅଳଂକୃତ କରିବା ପାଇଁ ଅନୁରୋଧ କରାଯାଇଥିଲା । ଠିକ୍ ସମୟରେ ସେ କାର୍ଯ୍ୟକାରୀ କମିଟିର ଜନୈକ ସଭ୍ୟଙ୍କ ସହ ଉପସ୍ଥିତ ହେଲେ । ମୋତେ ଦେଖିବା ମାତ୍ରେ ମୋ ପିଠିରେ ହାତ ବୁଲାଇ

କହିଲେ, "ଯୁଦ୍ଧ କବିତାଟି ତୁମର ଖୁବ୍ ଭଲ ହୋଇଛି, ଏଇ ସଂଖ୍ୟାରେ ବାହାରୁଛି" ।

ଦିବାଳି ଉତ୍ସବ ସତ୍ତ୍ୱେ ଆଶାତୀତ ଶିକ୍ଷକ ସମାବେଶ ଦେଖି ସେ ଆନନ୍ଦିତ ହୋଇଗଲେ । ସଙ୍ଘ ପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ସେ ଯେଉଁ ଭାଷଣ ଦେଲେ, ତାହା ପ୍ରତ୍ୟେକ ସୁପ୍ତ ଶିକ୍ଷକ ପ୍ରାଣରେ ନୂତନ ଆଶାର ସଙ୍କେତ ଦେଲା ।

ଗୋପଠାରେ ଗୁଡ଼ାଯାଇଥିବା ଅଖାଟି ପଠାଇ ଦେବାକୁ ମୋତେ କହି ବିଦାୟ ନେଲେ । ଦୁଃଖର କଥା, ନିର୍ଦ୍ଦିଷ୍ଟ ଦୋକାନଦାର 'ଅଖା' କଥା ଅସ୍ୱୀକାର କଲେ । ମୋ ଉପସ୍ଥିତିରେ ଏ ଘଟଣା ଘଟି ନଥିବାରୁ ମୁଁ ଏ ଦିଗରେ ଅଧିକ ଅଗ୍ରସର ହୋଇ ପାରିଲି ନାହିଁ । ସେ ମୋତେ ଚିଠି ଲେଖିଲେ, "ଅଖା ନପଠାଇଲେ ଅଖା ଧୋଉଥିବ ଗୁଣ ଗାଉଥିବ" ( ପତ୍ରାଙ୍କ ୧୦୧୨, ତା ୧୦ । ୧ । ୭୬ )

ମୁଁ ଲେଖିଲି "ଅଖା ତ ପାଇଲି ନାହିଁ, ଧୋଇବି କିପରି ? ତଥାପି ଗୁଣ ଗାଇବି" ।

ପରୀକ୍ଷା ଦାୟିତ୍ୱରେ ଥିବା ଶିକ୍ଷକ ଏକଦା ମୋତେ ଜଣାଇଲେ, "ଦୁଇଟି ଯାକ ପାର୍ଶଲରେ କେବଳ ଷଷ୍ଠ ଶ୍ରେଣୀର ପ୍ରଶ୍ନ । ପରୀକ୍ଷା କ'ଣ ବନ୍ଦ କରାଯିବ ?"

ମଝିରେ ଗୋଟିଏ ଦିନ ରବିବାର । ଟେଲିଗ୍ରାମ୍‌ରେ ଜଣାଇଲି, ପ୍ରଶ୍ନ ଆଣି ଅଫିସ୍ ପିଅନ ପହଞ୍ଚିଲା । ସେଦିନ ରାତିରେ କୁଶଭଦ୍ରାରେ ଅଦିନଆ ବନ୍ୟା ଆସିଲା । ଘାଟଡଙ୍ଗା ଆସିବାରେ ବିଳମ୍ବ ହେବାରୁ ମଥ ରେ ପଗଡ଼ି ବାନ୍ଧି ତା ଭିତରେ ପ୍ରଶ୍ନ ରଖି ପହଁରି ପହଁରି ସ୍କୁଲଠାରୁ ଦୁଇ କିଲୋମିଟର ଦୂର ମୋ ଗାଁଠାରେ ପିଅନ ପହଞ୍ଚିଲା । ମନେ ମନେ ଭାବିଲି, "ଓଳିଗୁଣେ କୋଳି, ତେଲଗୁଣେ ଚକୁଳି ।" ଖାଦ୍ୟ ପେୟର ବ୍ୟବସ୍ଥା କରି ବସ୍‌ଖିଚ୍ ଦେଇ ବିଦାୟ କରିଦେଲି । ସେ ଦିନ ଘାଟଡଙ୍ଗାକୁ ଅପେକ୍ଷା କରିଥିଲେ ପରୀକ୍ଷା ନିଶ୍ଚିତ ଭାବରେ ଘୁଞ୍ଚିଥାଆନ୍ତା ।

ମୁଁ ଆର୍ଥିକ ଅନାଟନରେ ପଡ଼ି ଏକଦା ବ୍ରହ୍ମଗିରୀ ମହାଶୟଙ୍କୁ ଜଣାଇଲି । ଆବଶ୍ୟକତାର ଗୁରୁତ୍ୱ ଉପଲବ୍‌ଧି କରି ସେ ଖଣ୍ଡିଏ ସାଦା କାଗଜ ମୋ' ହାତକୁ ବଢ଼ାଇ ଦେଲେ । ସେ ଯାହା ଡାକଲେ, ମୁଁ ତାହା ଲେଖିଲି, ଟିପ ଦେଇ ଟଙ୍କା ଆଣିଲି ।

ଟଙ୍କା ଫେରାଇବା ବେଳେ ରସିଦ ମୁତାବକ ସୁଧର ହାର ହିସାବ କରି ଟଙ୍କା ଦେଲି । ଗଣି ସାରିବା ପରେ କହିଲେ, "ନିଅ, ଏତେ ଟଙ୍କା ତ ମୁଁ ଦେଇ-ନ ଥିଲି ।" ମୁଁ କିଛି କହିପାରିଲି ନାହିଁ ।

ଦିଲ୍ଲୀ ପାର୍ଲିମେଣ୍ଟ ଭବନ ସମ୍ମୁଖରେ ସମୃଦ୍ଧ ଧାରଣା ଦେବାପାଇଁ ବ୍ରହ୍ମଗିରୀ ମହାଶୟ ଚିଠି ଲେଖି ମୋତେ ଜଣାଇଲେ । ଦିଲ୍ଲୀ ଯିବା ପାଇଁ ଯେତିକି ଉତ୍ସାହିତ ହେଲି, ତାଠାରୁ ବେଶୀ ନିରୁତ୍ସାହିତ ହେଲି ଅର୍ଥାଭାବ ଯୋଗୁ । ଚିଠି ଲେଖି ଜଣାଇଲି ଓ ବ୍ୟକ୍ତିଗତ ଭାବରେ ଏକଶହ ଟଙ୍କା ଧାର ନେଇ ଦିଲ୍ଲୀ ଗଲି ।

ଫେରିଲାବେଳେ କହିଲେ, "ମୋ ପାଇଁ କ'ଣ ଆଣିଛ ?" ମୁଁ ଲଜ୍ଜିତ ହେଲି, ତଥାପି କହିଲି "ଆପଣଙ୍କ ପାଇଁ ଅନୁଭୂତି ଆଣିଛି । ସ୍କୁଲ୍‌କୁ ଗଲେ ଦେବି ।"

'ଶିକ୍ଷକ ଦର୍ପଣ'ରେ ପ୍ରକାଶିତ ହେବାପାଇଁ କେତେ-ଗୁଡ଼ିଏ କବିତା ସଂଶୋଧନ ଉଦ୍ଦେଶ୍ୟରେ ସେ ମୋ' ପାଖକୁ ପଠାଇଲେ । ସେଗୁଡ଼ିକ ସଂଶୋଧନ କରି ନ ପାରି ମୁଁ ତାଙ୍କ ପାଖକୁ ଲେଖିଲି, "ମୋ କବିତ୍ୱ ପଛକେ ଚୂଲିକି ଯାଉ, ମୁଁ ଏ କବିତାକୁ ସଂଶୋଧନ କରି ପାରିବି ନାହିଁ । ପ୍ରତି ଧାଡ଼ିକୁ ନୂଆ ରୂପ ଦେବି କିପରି ? ଗୋଟିଏ ମାତ୍ର କବିତା ଯଥା ସମ୍ଭବ ସଂଶୋଧନ କରି ପଠାଇଲି ।" ଭାବିଥିଲି ବୋଧହୁଏ ସେ ମୋ ଉପରେ ବିରକ୍ତ ହେବେ ।

ଦେଖାହେଲା । ସେ ପ୍ରସଙ୍ଗ ଉତ୍ଥାପନ କରି କହିଲେ, "ନୂତନଙ୍କୁ ଉତ୍ସାହିତ କରି କବି ଓ ଲେଖକ ସୃଷ୍ଟି କରିବା ପରି ଆମର ଲକ୍ଷ୍ୟ ।"

କିଛିଦିନ ପରେ କେତେ ଗୁଡ଼ିଏ କ୍ଷୁଦ୍ର ଗଳ୍ପ ମୋ ପାଖକୁ ପଠାଇଲେ । ଦିନେ କବିତା ଦେଖି ମୁଁ ନିରୁତ୍ସାହିତ ହୋଇଥିଲି, ଆଜି କ୍ଷୁଦ୍ର ଗଳ୍ପ ଦେଖି ଖୁବ୍ ଆନନ୍ଦିତ ହେଲି । ସେଥିରୁ କେତୋଟି ଉଚ୍ଚକୋଟୀର ଗଳ୍ପ ମୋ ମନକୁ ବେଶ୍ ଛୁଇଁଲା ।

ସେପ୍ଟେମ୍ବର ୫, ୧୯୭୨ରେ କଳାମଣ୍ଡପଠାରେ ଅନୁଷ୍ଠିତ ଶିକ୍ଷକ ସଭାରେ ଜନୈକ ଡେପୁଟି ଡ. ପି. ଆଇ. ଶିକ୍ଷକ ସମାଜ ପ୍ରତି କପଟ ନିର୍ଦ୍ଦୟୀ ହୋଇ ଉଠୁଥିଲେ, ତାହା ବର୍ଣ୍ଣନା କରୁ କରୁ ସେ କାନ୍ଦି ପକାଇଲେ । ମୋର ସ୍ପଷ୍ଟ ମନେଅଛି, ହାତ ପାପୁଲିରେ ସେ ଲୁହ ପୋଛୁ ଶପଥ କଲେ, ଏ ଡେପୁଟିଙ୍କୁ ସେ ବଦଳି ନ କରିବା ପର୍ଯ୍ୟନ୍ତ ସ୍ଥିର ହୋଇ ବସି ରହିବେ ନାହିଁ । ଘନ ଘନ କରତାଳିରେ କଳାମଣ୍ଡପ ପ୍ରକମ୍ପିତ ହୋଇ ଉଠିଲା ।

କିଛିଦିନ ପରେ ସେହି ଡେପୁଟି ଡିରେକ୍ଟରଙ୍କର ସ୍ଥାନାନ୍ତର ଓ ପଦାନ୍ତର ହୋଇଗଲା ।

ଶିକ୍ଷକମାନଙ୍କ ସପକ୍ଷରେ ସେ ଯେତିକି ଯୁକ୍ତି କରନ୍ତି, କୌଣସି କୌଣସି ଶିକ୍ଷକଙ୍କର ଉଦାସୀନତା ପ୍ରତି ମଧ୍ୟ ସେ ଆକ୍ଷେପ କରନ୍ତି । ଘରକଣିଆଁ କୁ ଅଣ୍ଟିରେ ରଖିଲେ ଶେଷକୁ ବିବସ୍ତ୍ର ହେବାକୁ ପଡ଼ିବ— ଏକଥା ସେ ସ୍ପଷ୍ଟରୂପେ ଅନୁଭବ କରିଥାଆନ୍ତି । ଏପରି କି କେହି କେହି ଅବୁଝା ଶିକ୍ଷକ ତାଙ୍କ ବିରୋଧରେ କିଛି ବିଷୋଦ୍‌ଗାର କଲେ ତାହା ସେ ପତ୍ରିକା ମାଧ୍ୟମରେ ପ୍ରକାଶ କରିବାକୁ କୁଣ୍ଠାପ୍ରକାଶ କରନ୍ତି ନାହିଁ ।

ମୁଁ ତାଙ୍କୁ ବ୍ୟକ୍ତିଗତ ଭାବେ ଯେତିକି ଜାଣେ, ତା ସବୁ ପ୍ରକାଶ କରିବା ପାଇଁ ମୋର ଧୈର୍ଯ୍ୟ ନାହିଁ । ଏ ସମୁଦ୍ରକୁ ଶଙ୍ଖେ ମାତ୍ର । ସମଷ୍ଟିଗତ ଭାବେ ତାଙ୍କର ନେତୃତ୍ୱ, ସେବା, ପରୋପକାର, ନିର୍ଭୀକତା ଓ ସଂଗ୍ରାମୀ ମନୋବୃତ୍ତି ତାଙ୍କୁ ଶିକ୍ଷକ ମହାସଙ୍ଘର ସଭାପତି ପଦରେ ଅଧିଷ୍ଠିତ କରିପାରିଛି ।

● ପ୍ରଧାନ ଶିକ୍ଷକ
ଗଣେଶ୍ୱରପୁର ବାଳକ ମ: ଇ: ସ୍କୁଲ
ପୁରୀ



# ବନମାଳୀ ବ୍ରହ୍ମଚାରୀ ଜିନ୍ଦାବାଦ

**ଶ୍ରୀ ଅବନୀ କୁମାର ବରାଳ**

କେମିତି ଏକ ଲଜ୍ଜାବୋଧ ଘେରିଯାଉଛି, କଲମ କାଗଜ ଧରି ଲେଖି ବସିଲା ବେଳକୁ । ଭୟଙ୍କର ଅସ୍ୱସ୍ତି ଲାଗୁଛି । କାରଣ, ମୋତେ ଲାଗୁଛି, ବନମାଳୀ ବାବୁଙ୍କ ବିଷୟରେ ଲେଖିବା ଯାହା, ମୁଁ ମୋର ନିଜର ଅତି ଆପଣାର, ନିଜ ପରିବାରର କୌଣସି ବ୍ୟକ୍ତିଙ୍କ ବିଷୟରେ ଲେଖିବା ସେଇଆ । ନିଜ ବିଷୟରେ ଲେଖିବା ଭଳି···ବନମାଳୀ ବାବୁ ଆଉ ମୁଁ; ସଙ୍ଗଠନ ଓ ଲଢେଇ ଭିତରେ ପରସ୍ପରର ଏତେ ଆପଣାର ହୋଇଯାଉଛୁ, ଏତେ ନିବିଡ଼ ଭାବରେ ଏକାତ୍ମ ହୋଇଯାଇଛୁ ଯେ, ତାଙ୍କୁ ନିଜଠାରୁ ଅଲଗା କରି ଦୂରରୁ ଦେଖିବା ଓ ତାଙ୍କ ବିଷୟରେ ମୋର ମତାମତ ଦେବା, ସତରେ ଅସମ୍ଭବ । ବିଚିତ୍ର ଏକ ପରିସ୍ଥିତି !

କିନ୍ତୁ ଏକଥା ମଧ୍ୟ ସତ ଯେ, ବନମାଳୀ ବ୍ରହ୍ମଚାରୀଙ୍କୁ ଏତେ ଘନିଷ୍ଠ, ଏତେ ନିବିଡ଼ ଭାବରେ ମୁଁ ଓ ମୋଭଳି ଆଉ ଜଣେ ଦୁଇଜଣଙ୍କ ବ୍ୟତୀତ, ତାଙ୍କ ନିଜର ପରିବାରର ଲୋକେ ମଧ୍ୟ ଜାଣି ନଥିବେ ।

ଏଣୁ ଅଗତ୍ୟା ମୋତେ ଏ ଦୁର୍ବହ ଭାର ବହନ କରିବାକୁ ହିଁ ପଡ଼ିବ ।

ସ୍ନେହୀ ବ୍ରହ୍ମଚାରୀଙ୍କୁ ଓଡ଼ିଶାର ଅନେକେ ଦେଖିଥିବେ—ଜାଣିଥିବେ । କିନ୍ତୁ ଶିଶୁ ଭଳି ସରଳ, ପୁଣି ସିଂହ ଭଳି ନିରଙ୍କୁଶ ବ୍ରହ୍ମଚାରୀଙ୍କୁ ଖୁବ୍ କମ୍ ଲୋକ ଜାଣିଥିବେ । ବନମାଳୀ ବାବୁ ସତରେ ତାଙ୍କର ଏ ଅଠସ୍ତରୀ ବର୍ଷ ବୟସ ପୂର୍ତ୍ତି ସମୟରେ, ଶିଶୁର ଅନାବିଳ ସରଳତା ଧରି, ସମସ୍ତ ଲୌକିକ ସଙ୍କୋଚ ଓ ଲଜ୍ଜାର ଉପରେ ରହି, ବାଟରେ ଘାଟରେ ଯେଉଁଠି ହେଲେ ପ୍ରଶ୍ନ କରି ପାରନ୍ତି, "ପ୍ରଦତ୍ତ ଶବ୍ଦକୁ ଦେଢ଼ଗୁଣ ବଢ଼ାଇ ଅଙ୍କନ କର ବୋଲି ଯେଉଁ ପ୍ରଶ୍ନ ପଡ଼ୁଥାଏ, ତାହା କପରି ହେବ ? ଅବା, 'ବର୍ମାଶେଲ'ର 'ଶେଲ' ଶବ୍ଦର ଅର୍ଥ କ'ଣ ? ପୁଣି କେତେବେଳେ ପ୍ରମିନେଣ୍ଟ ଓ ଏମିନେଣ୍ଟ ଶବ୍ଦ ଭିତରେ ବ୍ୟବହାରଗତ ପାର୍ଥକ୍ୟ କ'ଣ ?" ଇତ୍ୟାଦି । ପୁଣି ସେଇ ବନମାଳୀ ବାବୁ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ଉପରେ ତାଙ୍କରି ଅଫିସରେ ଚଢ଼ଉକରି, ତାଙ୍କୁ ଜୋତା ଭୂଷିବାକୁ ଲୋକ ପଠାଇବେ କିମ୍ବା ସେ ଅଫିସରଙ୍କୁ ଯିଏ ଥାପ୍‌ପୋଡ଼ ମାରିବ, ତାକୁ ଦୁଇଶହ ଟଙ୍କା ପୁରସ୍କାର ଦେବେ ବୋଲି ଖୋଲାଖୋଲି ଭାବରେ ଓ ସାଧାରଣ ସଭାରେ ଭାଷଣ ଦେଇପାରନ୍ତି । ଏ ବ୍ରହ୍ମଚାରୀ ନିରଙ୍କୁଶ ଓ ପ୍ରଚଣ୍ଡ······ ।

ସାଙ୍ଗଠନିକ କାମରେ, ସଭା-ସମିତିରେ ଯୋଗଦେବା ପାଇଁ, ଆମେ ଓଡ଼ିଶାର କନ୍ଦିକନ୍ଦ, କୋଣ ଅନୁକୋଣ, ଯେପରି ପାନିଆରେ କୁଣ୍ଡାଇଲା ଭଳି କୁଣ୍ଡାଉଛୁ, ମୋର ଧାରଣା କୌଣସି ରାଜନୈତିକ ଦଳ ବୋଧହୁଏ ଏତେ ସଭା-ସମିତିକୁ ଯାଉ ନ ଥିବେ । ରାତି ରାତି ଧରି ବିନିଦ୍ର ରହି, ଖରାତରାରେ ଅଖାଦ୍ୟ ଖାଇ ବା ଉପାସରେ ରହି ବୁଲିବୁଲି, ଆମ୍ଭେମାନେ ଯେଉଁମାନେ ତାଙ୍କଠାରୁ କନିଷ୍ଠ ଓ ଯୁବକ-ବିବେକାନନ୍ଦ,

କୈଳାସବାବୁ, ଆଜି ବରିଷ୍ଠ ହୋଇଛନ୍ତି, ଅଶକ୍ତ ହୋଇଛନ୍ତି ଏବଂ ବେଳେବେଳେ ଶ୍ରାନ୍ତ-କ୍ଳାନ୍ତ ହୋଇ ଥକି ଯାଇଛନ୍ତି । ମୋ ଜାଣତରେ ବନମାଳୀ ବାବୁଙ୍କୁ କେବେ ଥକି ଯିବାର ଦେଖିନାହିଁ—ରହିଯିବାର ଦେଖି ନାହିଁ । ଉଦ୍ଦାମ ଯୁବ ସୁଲଭ ଚଞ୍ଚଳତାରେ, ଆମ ସମସ୍ତଙ୍କୁ ପରାସ୍ତ କରି ସେ ଆଗେଇ ଯାଆନ୍ତି ! ଅନେକ ସ୍ଥଳରେ ଭାଷଣ ପ୍ରସଙ୍ଗରେ, ବିବେକାନନ୍ଦ ତାଙ୍କ ବିଷୟରେ କହନ୍ତି,—"ଆପଣମାନଙ୍କ ଆଗରେ ଇଏ ଅଠଷଠୀ ବର୍ଷର ତରୁଣ ଯୁବକ...... ।" ଆମ ଭିତରେ କଥା ପଡ଼େ ଅନେକ ସମୟରେ, ଏ ମେସ୍ ଭାତ, ଅଖାଦ୍ୟ ଖାଇ, ବନମାଳୀ ବାବୁ ପରିବାରର ସ୍ୱାଚ୍ଛନ୍ଦ୍ୟ ଭିତରେ ରହିଥିବା ଆମମାନଙ୍କୁ ପରାଜିତ କରିବାକୁ ଏ ଉଜ୍ଜ୍ୱଳ ପ୍ରାଣୋଚ୍ଛ୍ୱାସ ପାଉଛନ୍ତି କେଉଁଠୁ ? ଥଳକୂଳ ପାଉ ନାହିଁ ।

ଆଦୌ ସଙ୍କୋଚ ନ କରି କୌଣସି ବିଷୟରେ ନିଜର ଅଜ୍ଞତା ପ୍ରକାଶ ଓ ସେ ବିଷୟରେ ଜାଣିବାର ଉଦଗ୍ର ଆବେଗ ବନମାଳୀ ବାବୁଙ୍କ ବ୍ୟତୀତ ଦ୍ୱିତୀୟ କୌଣସି ବ୍ୟକ୍ତିଙ୍କୁ ମୁଁ ଜାଣିନାହିଁ—ଲକ୍ଷ୍ମୀନାରାୟଣ ସାହୁଙ୍କ ପରେ । ଆମେ ସମସ୍ତେ ଗୋଟିଏ ସୀମିତ ଗଣ୍ଡି ଭିତରେ ଆବଦ୍ଧ ରହି, ନିଜକୁ ନିଜେ ମୁଦି ଦେଇଛୁ । ବନମାଳୀ ବାବୁ ଏ ବୟସରେ ବି ନିଜକୁ ଖୋଲି ରଖିଛନ୍ତି । ସେମିତି କୌଣସି ଦ୍ୱିଧା ନ କରି, ଆଉ କାହାର ଭୁଲ୍ ହୋଇଥିଲେ ସଂଶୋଧନ କରିଦେବା, ସୁଧାରି ଦେବାର ପ୍ରୟାସ ମଧ୍ୟ ତାଙ୍କ ଛଡ଼ା ଆଉ କାହାଠାରେ ଦେଖିନାହିଁ । ମୋତେ ବନମାଳୀବାବୁ ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି, ସମ୍ମାନ ମଧ୍ୟ କରନ୍ତି । ଏକଥା ଆମକୁ ଜାଣିଥିବା ଯେ କେହି ଲୋକ ଜାଣେ । ଏସବୁ ସତ୍ତ୍ୱେ, ମୋର ବର୍ଣ୍ଣାଶୁଦ୍ଧି ସଂଶୋଧନ କରି, ବନମାଳୀ ବାବୁ ଅନେକ ସମୟରେ ମୋତେ ଖୋଲା-ଖୋଲି ଭାବରେ କହିବା ଆମ ସଙ୍ଗଠନର ସମସ୍ତେ ଜାଣନ୍ତି । ମୁଁ ଓଡ଼ିଆ ବିଭାଗର ଅଧ୍ୟାପକ-ସାହିତ୍ୟିକ, ହେଲେ ମଧ୍ୟ, ଏଇ ସେଦିନ ବନମାଳୀ ବାବୁ, ସଭିଁଙ୍କ ଆଗରେ ମୋତେ କହିଲେ, 'ଶିକ୍ଷୟିତ୍ରୀ' ହେବନାହିଁ—ହେବ "ଶିକ୍ଷୟିତ୍ରୀ" । ସାଧାରଣ ଭାବରେ ଆମେ ଚଳଣୀରେ 'ଶିକ୍ଷୟିତ୍ରୀ' ବୋଲି ଲେଖୁଁ । ଏଇ ତ୍ରୁଟି ପାଇଁ, ମୁଁ ଏ ଦୁଇଟି ଯାକ ଛାଡ଼ି ଏବେ 'ଶିକ୍ଷିକା' ବୋଲି ଲେଖୁଛି ।

ମୁଁ ସତରେ ବେଳେ ବେଳେ ଭାବେ, ଲୋକଟା ଭିତରେ ଏତେ ବେଶୀ 'ଜୀବନ', ଏତେ ବେଶୀ 'ଚଞ୍ଚଳତା' ରହିଲା କେମିତି ? ସବୁବେଳେ ଆମେ କୁହାକୁହି ହେଉ, ବନମାଳୀ ବାବୁଙ୍କ ବୟସରେ ରହିଥିଲେ, ଆମେ ଏତିକି କର୍ମଠ ରହିପାରିବା ତ ?

କେଉଁ ଦୂର ଦୂରାନ୍ତରୁ କୋରାପୁଟ କି ବାଇରଙ୍ଗପୁରରୁ ଫେରିବାବେଳେ, ଆମେ ଘୁମାଇ ପଡ଼ିଲେ, ବନମାଳୀ ବାବୁ ହସ ଗପ, ମଜା ଗପ ଆରମ୍ଭ କରନ୍ତି । ସେତେବେଳେ ଆନନ୍ଦ ତାଙ୍କର ବାନ୍ଧବାଡ଼ ମାନେ ନାହିଁ । ହସି ହସି ବେଦମ୍ ହେଉ ଆମେ । ଆମେ କହୁ—ସେ ଜିଦ୍ ଧରନ୍ତି । ହସି ହସି କୋତରା ହୁଅନ୍ତି ।

ବେଳେ ବେଳେ ବନମାଳୀ ବାବୁ ଏତେ ସ୍ପଷ୍ଟବାଦୀ ଓ ଅପ୍ରିୟ ସତ୍ୟବାଦୀ ଯେ ସଂଗଠନ ଭିତରେ ଆମେ ହଇରାଣରେ ପଡୁ । କୌଣସି ଗୋଟିଏ ବିଷୟରେ ବା ବ୍ୟକ୍ତି ସମ୍ପର୍କରେ, ଅତି ଗୋପନୀୟ ବିଷୟ ଜାଣିଥିଲେ, ଆମେ ତାଙ୍କୁ ଭରସି କହୁନା—କାରଣ, ବନମାଳୀ ବାବୁ ଆଦୌ ନ ଲୁଚାଇ, ସେକଥା ପଚାରି ଦେବେ ଓ ଅଡୁଆରେ ପକାଇବେ । କୌଣସି ଜଣେ ଶିକ୍ଷକ ବହିଷ୍କୃତ ହେବା ପରେ, ତାଙ୍କ ସଂପର୍କରେ ଅନୁସନ୍ଧାନ ଓ ତାଙ୍କ ସମ୍ପର୍କରେ ଦାବୀ ଉପସ୍ଥାପିତ କଲାବେଳେ, ଆଉ କେତେ ଜଣ ଶିକ୍ଷୟିତ୍ରୀ ଆମକୁ ତାଙ୍କ ଚରିତ୍ର ଦୋଷ ସମ୍ପର୍କରେ ଜଣାଇଲେ ଓ ମୁଁ କେଇଜଣ ଲୋକଙ୍କଠାରୁ ଶୁଣି ବନମାଳୀ ବାବୁଙ୍କ ଆଗରେ କହିଥିଲି । ସେ ଶିକ୍ଷକଙ୍କୁ ଦେଖିବା ମାତ୍ରେ, ଆଗପଛ ନ ବିଚାରି ଆମ ସମସ୍ତଙ୍କୁ ସ୍ତମ୍ଭିତ କରି ବନମାଳୀ ବାବୁ ସ୍ପଷ୍ଟ ଭାବରେ ପଚାରିଲେ—"ତମର ବୟସ ଅଳ୍ପ । ସତ ସତ କହିଲ, ତମର ଚରିତ୍ର ଦୋଷ ଅଛି କି ନାହିଁ ?" କାହାକୁ ପଚାରନ୍ତି—ସତ କହିଲ, ତମେ ଝିଅଙ୍କୁ ତୋଷରପାତି କରିଚ କି ନାହିଁ ?

ବହୁ ବର୍ଷ ତଳେ ତାଙ୍କ ସମ୍ପର୍କରେ ଘନିଷ୍ଠ ଭାବରେ ନ ଆସିଥିଲା ବେଳେ, ଗୁଡ଼ିଏ ଇତର ଲୋକଙ୍କ ଯୋଗୁଁ ମୋର ଧାରଣା ଥିଲା ବନମାଳୀ ବାବୁ ପ୍ରଶ୍ନ ବ୍ୟବସାୟୀ ଓ ଶିକ୍ଷକ ସଂଗଠନ ତାଙ୍କର ଏକ ଅସ୍ତ୍ର—ବ୍ୟବସାୟ ପରିଚାଳନା ପାଇଁ। ଯେତିକି ଅଭିଜ୍ଞତାରେ ଆଣୁଛି, ମୋର ଧାରଣା କେବଳ ବଦଳି ଯାଇନାହିଁ —ମୁଁ ସେତିକି ଆଗ୍ରହ ଓ ବିସ୍ମୟ ନେଇ ତାଙ୍କୁ ଦେଖିଛି···ଦେଖୁଛି। ତାଙ୍କର କାର୍ପଣ୍ୟ, କୁବେରର କାର୍ପଣ୍ୟ—ଆବଶ୍ୟକ ପଡ଼ିଲେ ସମସ୍ତ ଉଜାଡ଼ ଦେଇ ଅଜାଡ଼ ଦେବାକୁ ତିଆର ସେ—ମାତ୍ର ବିନବ୍ୟୟ କରିବାକୁ ଗୋଟିଏ ପଇସା ମଧ୍ୟ ନାହିଁ।

ଓଡ଼ିଶାରେ ଅନେକ ସଂଗଠନ ସହିତ ସମ୍ପୃକ୍ତ ମୁଁ। କିନ୍ତୁ ବନମାଳୀ ବ୍ରହ୍ମଚାରୀଙ୍କ ଭଳି କୌଣସି ଗୋଟିଏ ହେଲେ ବ୍ୟକ୍ତି ମୁଁ ଦେଖିନାହିଁ, ଯିଏ ସଂଗଠନ ସହିତ ସମ୍ପୂର୍ଣ୍ଣ ଏକାତ୍ମ ! କେବଳ ଏକାତ୍ମ ନୁହଁ; ସଂଗଠନ ସହିତ ବ୍ରହ୍ମଚାରୀ କୌଣସି ଏକ ବିନ୍ଦୁରେ ଏକାକାର ହୋଇ ଯାଇଛନ୍ତି ! ସଂଗଠନ ବ୍ୟତୀତ ବନମାଳୀ ବାବୁଙ୍କ ଅସ୍ତିତ୍ୱ ନାହିଁ ! ବନମାଳୀବାବୁଙ୍କ ବ୍ୟତୀତ ସଂଗଠନର ମଧ୍ୟ ଅସ୍ତିତ୍ୱ ନାହିଁ ସେ ତାଙ୍କର ହାତଗଢ଼ା ଶିକ୍ଷକ-ସଦନରେ ରୁହନ୍ତି। ସେଇ ମେସ୍‌ରେ ଯାହା ମିଳିଲା ଖାଆନ୍ତି। ସଂଗଠନ ବ୍ୟତୀତ ତାଙ୍କର ବିଷୟ କୌଣସି କାମ ନାହିଁ। ବ୍ୟକ୍ତିଗତ ବୋଲି କୌଣସି ଜୀବନ ବନମାଳୀ ବ୍ରହ୍ମଚାରୀଙ୍କର ନାହିଁ। ନିଜ ପାଇଁ ସତେ ଯେମିତି ସେ ବଞ୍ଚି ନାହାନ୍ତି—ବଂଚିଛନ୍ତି ଶିକ୍ଷକ ସଂଗଠନ ପାଇଁ! ଏଇ ଜୀବନ ଭିତରେ ବନମାଳୀ ବାବୁ ନିଜେ ଏକ ଅନୁଷ୍ଠାନରେ ପରିଣତ ହୋଇଯାଇଛନ୍ତି। ଏକ ଚଳମାନ ଜୀବନ୍ତ ଅନୁଷ୍ଠାନ !

ସେଦିନ କଟକରେ ଶିକ୍ଷକମାନଙ୍କର ସଂଗ୍ରାମୀ ଶୋଭାଯାତ୍ରା ଚାଲିଥାଏ। ଯୁବକମାନେ ଆଉ କେଇଜଣ ଶିକ୍ଷକ ବନ୍ଧୁ ବିପୁଳ ଉନ୍ମାଦନାରେ ସ୍ଲୋଗାନ ଦେଉଥାନ୍ତି, "ଲଢ଼େଇ ··· ଲଢ଼େଇ ··· ଲଢ଼େଇ ଚାହୁଁ··· । ଲଢ଼େଇ କରି ବଞ୍ଚିବା ଚାହୁଁ ।" ଆଉ -"ଛଟେଇ ହେଲେ ଲଢ଼େଇ ହେବ—ଲଢ଼େଇ ହେବ··ନିଆଁ ଜଳିବ।"

ଆଗରେ ୬୮ ବର୍ଷର ତରୁଣ ବନମାଳୀ ବାବୁ ଛତାଖଣ୍ଡେ ହାତରେ ଝୁଲାଇ ଝୁଲାଇ ଚାଲୁଥାନ୍ତି, ସମାନ ଉନ୍ମାଦନାର ସହିତ ତାଳ ପକାଇ। କହୁଥାନ୍ତି ମୋତେ, ମେଳି ସ୍ଲୋଗାନଟା ଦେବାକୁ କୁହ, 'ଲଢ଼େଇ ହେବ—ନିଆଁ ଜଳିବ'— । "ସତରେ ନିଆଁ ଜାଳି ନଦେଲେ, କିଛି ହେବ ନାହିଁ"।

କେବେ ବନମାଳୀ ବାବୁ 'ନିରୀହ ଶିକ୍ଷକ' ଥିଲେ। ଅନ୍ୟାୟର ପ୍ରତିବାଦ କରୁଥିଲେ। ପ୍ରତିରୋଧ ପାଇଁ ହୁଏତ ସାହସ କୁଳାଉ ନ ଥିଲା ଶିକ୍ଷକ ସମାଜର । ଅଣସ୍ତରୀ ମସିହାଠାରୁ ବନମାଳୀବାବୁଙ୍କ ପାଇଁ 'ସଂଗ୍ରାମ' ଦାବୀ ପୂରଣ ସକାଶେ ଏକ ଅସ୍ତ୍ର କେବଳ ନୁହେଁ—ସଂଗ୍ରାମ···ଅବିଚଳିତ, ଧାରାବାହିକ, ଲଗାତର ସଂଗ୍ରାମ ତାଙ୍କ ଜୀବନର ମାର୍ଗ। ଜୀବନର ବ୍ରତ। ଲଢ଼େଇ ବିନା ଜୀବନ ନାହିଁ, ଏକଥା ସେ ନିଜ ଅଭିଜ୍ଞତାରୁ ବୁଝିଛନ୍ତି।

ସେଥିପାଇଁ ଆମେ 'ଧାରଣା' ପାଇଁ ପ୍ରସ୍ତାବ ଦେଲେ, ସେ 'ଘେରାଉ' ପାଇଁ ଡାକରା ଦିଅନ୍ତି। ଆମେ 'ଘେରାଉ' ଯାଏ ଗଲେ ସେ 'ଜେଲ୍‌ଭରୋ' ବୋଲି ଆଉ ପାଦେ ଆଗେଇ ଯାଆନ୍ତି।

ଜୀବନ ସାୟାହ୍ନରେ, କୌଣସି ଉପହାର-ଉପଢୌକନ କିମ୍ବା ପୁରସ୍କାର, ସାମାଜିକ ସମ୍ମାନ ବା କୌଣସି କଥାକୁ ଅପେକ୍ଷା ନ ରଖି, ଅବିଚଳିତ ଭାବରେ ଅନ୍ୟ ପାଇଁ ନିଜକୁ ଉଜାଡ଼ି କରି ନିଃଶେଷ କରିଦେବା କେବଳ ବନମାଳୀ ବ୍ରହ୍ମଚାରୀଙ୍କ ଦ୍ୱାରା ହିଁ ସମ୍ଭବ। ବିଶେଷ କରି ବିଭିନ୍ନ ବଦରେ ଆକ୍ରାନ୍ତ ଏ ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ।

ମୋ ଜାଣିବାରେ ବନମାଳୀ ବାବୁ ଭଗବାନଙ୍କୁ ଡାକିବା, ପୂଜା କରିବା, ମନ୍ଦିରକୁ ଯିବା ମୁଁ କେବେ ଦେଖିନାହିଁ। ସେ ସ୍ପଷ୍ଟ ମନା କରି ଦିଅନ୍ତି ଏଥିପାଇଁ। ଦୃଢ଼ ଆତ୍ମପ୍ରତ୍ୟୟ ସହିତ କର୍ମବାଦହିଁ ତାଙ୍କ ଜୀବନର ବ୍ରତ । ଆଦର୍ଶ। ନିଜ କର୍ମ ହିଁ ଭଗବାନ। ସେଇଥି ପାଇଁ ସେ ଆଜୀବନ କର୍ମ କରିଯିବାର ସଂକଳ୍ପ ନେଇ ହିଁ ବଞ୍ଚିଛନ୍ତି।

ତାଙ୍କର ସରଳତା, ନିଷ୍କପଟତା, ସାଧୁତା, ସତ୍ୟବାଦିତା ଓ ମିତବାଦିତା ସମ୍ପର୍କରେ ବନେଇ କହିବାର ପ୍ରୟୋଜନ ନାହିଁ । କାରଣ ସେଥିପାଇଁ କାହାର ସାର୍ଟିଫିକେଟ ତାଙ୍କର ଲୋଡ଼ାନାହିଁ, କି ମୋର ମଧ୍ୟ ସେଥିପାଇଁ ଆସ୍ପର୍ଦ୍ଧା ନାହିଁ ।

ଓଡ଼ିଶାର ସଦ୍ୟ-ଜାଗ୍ରତ ଅଗ୍ରଗାମୀ ଶିକ୍ଷକ-ସମାଜର ଚଳମାନ ଅନୁଷ୍ଠାନ, ମାନବିକତା ଓ ସ୍ନେହ-ଶ୍ରଦ୍ଧାର ଅକୃତ୍ରିମ ପୂଜାରୀ, ନିରାଡମ୍ବର ଜୀବନ ଓ ନିଷ୍କଳୁଷ ପ୍ରାଣର ଅଧିକାରୀ, ବନମାଳୀ ବ୍ରହ୍ମଚାରୀ ନିଜେ ନିଜର କେବଳ ତୁଳନା ନୁହନ୍ତି ନିଜେ ହିଁ ନିଜର ପରିଚୟ ।

ତାଙ୍କୁ ସବୁଠୁଁ ବେଶୀ ଜାଣିଲେ ବି, ତାଙ୍କ ସମ୍ପର୍କରେ ଲେଖିବା ସମ୍ଭବ ନୁହେଁ ।

ତାଙ୍କର ଅଶୀତିତମ ବର୍ଷପୂର୍ତ୍ତି ଉପଲକ୍ଷେ ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି ଓ ମୋର ଅନ୍ତରର ଗଭୀରତମ ପ୍ରଦେଶରୁ ଶ୍ରଦ୍ଧା ଓ ଭକ୍ତି ଜଣାଇ କାମନା କରୁଛି—'ଜୀବନ୍ତୁ ଶରଦ ଶତମ୍'... ଯୁଗ ଯୁଗ ଜିଓ ବନମାଳୀ ବ୍ରହ୍ମଚାରୀ'...ବନମାଳୀ ବ୍ରହ୍ମଚାରୀ ଜିନ୍ଦାବାଦ୍ ।

● ଅଧ୍ୟାପକ
ପ୍ରାଣନାଥ ମହାବିଦ୍ୟାଳୟ
ଖୋର୍ଦ୍ଧା, ପୁରୀ



# ସେ ଏକ ଅନିର୍ବାଣ ଅଗ୍ନିଶିଖା

ଶ୍ରୀ ଅର୍ଜୁନ ଦାଶ

ବନମାଳୀ ବ୍ରହ୍ମଗୃହସ୍ଥ,
ସତ୍ୟ, ନ୍ୟାୟ, ନିଷ୍ଠା ସାଧନାର ସିଏ ଏକ ଜାଗ୍ରତ ପ୍ରହରୀ ।
ଏ ଜାତିର ଗୁରୁକୁଳ ଯେବେ
ଭ୍ରଷ୍ଟାଗ୍ରହୀ ଅତ୍ୟାଗ୍ରହୀ ଶାସକ ଶାସନେ
ପିଷ୍ଟ, କ୍ଳିଷ୍ଟ, ଲାଞ୍ଛିତ, ଘୃଣିତ,
ସେହି ଏକା ସୁପୁରୁଷ,
ସମବେଦନାର ସ୍ୱର ଉଠାଇ ସେ କାଳେ
ବିପ୍ଳବର ନନ୍ଦୀଘୋଷ ଗୁଳ
ବଜ୍ରାଗ୍ନିର ଧ୍ୱନି ମୁଖେ ତୋଳି
କଣ୍ଠେ ଦେଇ ଉଦାତ୍ତ ଆହ୍ୱାନ
ସଙ୍ଗଠନ, ସହତିର ହର୍ମ୍ୟ ଗଢ଼ିଥିଲେ ।

ଗ୍ରାମେ ଗ୍ରାମେ, ସହରେ ସହରେ,
ସରକାରୀ-ସୌଦାଗରୀ ଦପ୍ତରେ ଦପ୍ତରେ
ସ୍ୱେଚ୍ଛାଗ୍ରହୀ ଶାସକର ଦଳ
ଅର୍ଥଲୋଭୀ ସମ୍ପାଦକଗଣ
ଦୁର୍ବିନୀତ ଅଶିକ୍ଷିତ ସଭ୍ୟ ଗଣ ସହ
ଯେବେ ଦୁର୍ନୀତିର ଜାଲ ବୁଣି ବସେ,
ଅନାହାରେ ଅର୍ଦ୍ଧାହାରେ ଏ ଜାତିର ଶିକ୍ଷକ ସମାଜ
ଯେବେ ମରେ ରୋଗେ, ଶୋକେ, ଭୋକେ, ଯନ୍ତ୍ରଣାରେ,
ସେହି ଏକା ସାର୍ଥକ ସନ୍ନାସୀ
ସେହି ଏକା ନିର୍ଭୀକ ସୈନିକ
ଦେଇ ମୁହାମୁହିଁ ରଣର ଆହ୍ୱାନ
ଦୁର୍ନୀତିର ମୁଖା ଖୋଲି ଧରେ ।

ସୁବର୍ଣ୍ଣରେଖାର ତଟରୁ ଦଣ୍ଡକ ଅରଣ୍ୟ
ବଙ୍ଗୋପସାଗର କୂଳରୁ ବଣାଇ ପର୍ଯ୍ୟନ୍ତ
ଏକ ପ୍ରତିଧ୍ୱନି—
ବନମାଳୀ ବ୍ରହ୍ମଗୃହୀ
ନୁହେଁ ଏକ, ଅସଂଖ୍ୟ ସେ ଅଗଣନ ସୀମାହୀନ,
ସେ ଏକ ଉତ୍ତପ୍ତ ଅଗ୍ନିଶିଖା
ଦଳିତ, ପେଷିତ ଅତ୍ୟାଗୃହୀତର ଅନ୍ତରେ ଅନ୍ତରେ
ଅହର୍ନିଶ ଜଳେ
ଅନିର୍ବାଣ, ଅବଲୁପ୍ତ ତାହା,
ଧ୍ୱଂସ କରେ ସ୍ୱେଚ୍ଛାଗୃହୀ ମଦାନ୍ଧ ଶାସନ
ଧ୍ୱଂସକରେ ଦୁର୍ମତିର ମୋହ ନାଗ ଫାଶ
ଛିନ୍ନ କରେ ଶୋଷଣ ଶୃଙ୍ଖଳ
ନୁହେଁ, ନୁହେ ସେହି ଏକ ଅବା ଏକା
ସେହି ଏକ ଗଣ-ଅନୁଷ୍ଠାନ
ସେ ଏକ ଅନିର୍ବାଣ ଅବଲୁପ୍ତ ଅଗ୍ନିର ତାରକା ।

● ପ୍ରଧାନ ଶିକ୍ଷକ
ବାଙ୍କମଙ୍ଗଳା ମି. ଇ. ସ୍କୁଲ
ଗୋପାଳପୁର, କଟକ



# ପଣ୍ଡିତ ବ୍ରହ୍ମଗୃହୀ

**ଶ୍ରୀ ବ୍ରଜମୋହନ ମହାନ୍ତି**

"ଆପଣଙ୍କ ନାମ ।"

"ମୋ ନାମ ବ୍ରଜମୋହନ ମହାନ୍ତି" ଧୀର ସ୍ୱରରେ କହିଲି ମୁଁ ।

"କଣ କହିଲେ ?" ପୁଣି ପ୍ରଶ୍ନ ।

"ବ୍ରଜମୋହନ ମହାନ୍ତି ।"

"ଶୁଭିଲା ନି ।"

ଏଥର ଜାଣିଲି ଲୋକଟି ନିଶ୍ଚୟ ବଡ଼ବୋଲା । ତେଣୁ ଖୁବ୍ ଉଚ୍ଚ କଣ୍ଠରେ ଗଳା ଫାଡ଼ କହିଲି—"ବ୍ରଜମୋହନ ମହାନ୍ତି । ମୁଁ ଜଣେ ଏମ୍. ଏ. ଶ୍ରେଣୀର ଛାତ୍ର ।" ତାପରେ ଓଡ଼ିଆ ସାହିତ୍ୟ ସମ୍ପର୍କରେ ମୋ ସହିତ କେତେକ ଆଲୋଚନା କରି ବିଦାୟ ନେଲେ ସେହି ବୟସ୍କ ଲୋକ ।

ମୁଁ ବସି ରହିଥାଏ ।

ସାମାନ୍ୟ ବେଶହୀନ, ଗୌର ଅଥଚ ସାହିତ୍ୟ ସମ୍ପର୍କରେ ସଚେତନ ଲୋକଟିର ପରିଚୟ ପାଇ ମୁଁ ପ୍ରଶ୍ନ କଲି, "ଦି ସିଟି ବୁକ୍ ଡିପୋର" ତତ୍ତ୍ୱାବଧାରକ ସ୍ୱର୍ଗତ ବିଶ୍ୱନାଥ ରଥଙ୍କୁ । ସେ କହିଲେ—"ଏ ହେଉଛନ୍ତି ଶ୍ରୀ ବନମାଳୀ ବ୍ରହ୍ମଗୃହୀ । ପୂର୍ବରୁ ଶିକ୍ଷକ ଥିଲେ । ଏବେ ଶିକ୍ଷକତା ଛାଡ଼ି ଏକ ଶିକ୍ଷକ ସଙ୍ଗଠନ ଗଢ଼ିଛନ୍ତି ।" ଆଉ ଅଧିକ ପରିଚୟର ଆବଶ୍ୟକତା ପଡ଼ିଲା ନାହିଁ । କାରଣ ଶ୍ରୀ ବ୍ରହ୍ମଗୃହୀଙ୍କ "ଗୁଣ ଦର୍ପଣ", "ବ୍ୟାକରଣ" ଇତ୍ୟାଦି କେତେଖଣ୍ଡି ଉପାଦେୟ ପୁସ୍ତକ ପାଠ କରିବାର ସୌଭାଗ୍ୟ ମୁଁ ଅର୍ଜ୍ଜନ କରିଥିଲି ।

ତେବେ ସେ ଯାହା ହେଉ—ଏହି ହେଉଛି ଶ୍ରୀ ବ୍ରହ୍ମଗୃହୀଙ୍କ ସହିତ ମୋର ପ୍ରଥମ ସାକ୍ଷାତ ।

ତାପରେ ସମୟ କ୍ରମେ ମୋତେ ବସା ନେଇ ରହିବାକୁ ପଡ଼ିଲା କଟକର ରାଜାବଗିଚାରେ । ଠିକ୍ ମୋର ବସାକୁ ଲାଗି ଏକ କୋଠରୀରେ ରହୁଥିଲେ ଶ୍ରୀ ବ୍ରହ୍ମଗୃହୀ । ଏ କୋଠରୀଟି ମଧ୍ୟ ଥିଲା ତାଙ୍କ ଶିକ୍ଷକ ସଙ୍ଗଠନର ଅଫିସ । ଫଳରେ ତାଙ୍କ ସହିତ ମୋର ସମ୍ପର୍କ ସୁଦୃଢ଼ ଓ ଘନିଷ୍ଠ ହେଲା । କେତେ ଆଳାପ ଆଲୋଚନାରେ କଟିଗଲା ଦିନଗୁଡ଼ିକ ।

ଆଉ ଗୋଟିଏ ଘଟଣାର ଉଲ୍ଲେଖ ନ କରି ରହିପାରୁନି । ସେତେବେଳେ ମୋର "ଓଡ଼ିଆ ଭାଷା-ବିଜ୍ଞାନ" ପୁସ୍ତକର ଛପା କାର୍ଯ୍ୟ ଚାଲିଥାଏ । ଦିନେ ମୁଁ କହିଲି—"ବ୍ରହ୍ମଗୃହୀ ବାବୁ । ଭାଷା ବିଜ୍ଞାନର ପ୍ରୁଫ୍ ପ୍ରେସ୍ ଲୋକମାନେ ଦେଖିପାରୁ ନାହାନ୍ତି, ତେଣୁ ଛାପାରେ ସଂଖ୍ୟାଧିକ ଭ୍ରମ ରହିଯାଉଛି । ଆପଣ ଟିକେ ପ୍ରଥମ ପ୍ରୁଫ୍‌ଗୁଡ଼ିକ ଦେଖିଦେବେ ?"

ସାଦରେ ସମ୍ମତି ଜଣାଇଲେ ସେ । ନିଜର କାର୍ଯ୍ୟବ୍ୟସ୍ତ ଜୀବନରୁ ସମୟ ସଞ୍ଚୟ କରି ପ୍ରତ୍ୟେକ ଦିନ କିଛି କିଛି ସମୟ ଦେଲେ ଏଥିପାଇଁ । ତେଣୁ ମୁଁ ଜୀବନବ୍ୟାପୀ ଋଣୀ ରହିଲି ତାଙ୍କ ନିକଟରେ । ଏହି ହେଉଛି ଶ୍ରୀଯୁକ୍ତ ବ୍ରହ୍ମଗୃହୀଙ୍କ ସହିତ ମୋର ନିବିଡ଼ତା ।

କେବଳ ସେତିକି ନୁହେଁ—ଯେତେବେଳେ ଯେଉଁ ସମୟରେ ମୁଁ ତାଙ୍କ ନିକଟକୁ ଯାଇଛି, ସେ

ମୋତେ ଆଦର ସମ୍ମାନ ଜଣାଇ ଖୁସି କରାଇନ୍ତି ବହୁଭାବେ ।

କେବଳ ମୁଁ ନୁହେଁ—ସମସ୍ତେ ଯେ ତାଙ୍କଠାରୁ ଏ ବ୍ୟବହାର ପାଉଥିବେ—ଏଥିରେ ସନ୍ଦେହ ନାହିଁ ।

ଶ୍ରୀଯୁକ୍ତ ବ୍ରହ୍ମଗ୍ରନ୍ଥୀ ଜଣେ ସୁସାହିତ୍ୟିକ, ବଳିଷ୍ଠ ସଂଗଠକ, ପ୍ରବୀଣ ଶିକ୍ଷକ ଓ ପର ଦୁଃଖରେ ଦୁଃଖୀ, ହୃଦୟବାନ୍ ମଣିଷ । ମୁଁ ଯେତେଦୂର ଜାଣେ—ସେ ବହୁ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ଦାନ କରି, କେତେକଙ୍କୁ ନିଜ ନିକଟରେ ପୁଅ ପରି ରଖି ମଣିଷ କରିଛନ୍ତି । ଏଭଳି ପରୋପକାରିତା କ୍ୱଚିତ୍ ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ।

ଶ୍ରୀଯୁକ୍ତ ବ୍ରହ୍ମଗ୍ରନ୍ଥୀ ଶିଶୁ ସାହିତ୍ୟ ରଚନାରେ ମଧ୍ୟ ଜଣେ ପ୍ରବୀଣ ବ୍ୟକ୍ତି । ଏଥିଲାଗି ତାଙ୍କୁ ପୁରସ୍କାର ମିଳିଛି । କିନ୍ତୁ ପୁରସ୍କାର ପ୍ରାପ୍ତିରେ ସେ ଉଲ୍ଲସିତ ହୋଇନାହାନ୍ତି । ସମାଜରେ ଏକ ସୁସ୍ଥ ଶିକ୍ଷକ ଜୀବନ ଓ ଶୃଙ୍ଖଳିତ ଛାତ୍ର ଜୀବନ ଗଠନରେ ସେ ଉତ୍ସର୍ଗ କରିଛନ୍ତି ନିଜକୁ । ଜୀବନରେ ସବୁକିଛି ତ୍ୟାଗ କରି ସେହି ତ୍ୟାଗର ତାଜମହଲ କରି ସେ ଗଢ଼ିତୋଳିଛନ୍ତି ଶିକ୍ଷକ ସଙ୍ଗଠନ ।

ତାଙ୍କ ନିକଟରେ ପୁଅ ଝିଅ ପରିବାରର ଗୁରୁତ୍ୱ ନାହିଁ । କାରଣ ଜୀବନର ପ୍ରାରମ୍ଭରୁ ସେ ବିପତ୍ନୀକ ହୋଇଥିଲେ ମଧ୍ୟ ଦ୍ୱିତୀୟ ଥର ପାଇଁ ପୁଣି ଘର ସଂସାର କରିନାହାନ୍ତି । ଏକମାତ୍ର କନ୍ୟା ପ୍ରତି ମଧ୍ୟ ବିଶେଷ ଆକୃଷ୍ଟ ହୋଇନାହାନ୍ତି । ବସ୍ତୁତଃ ସେ ଆମ ରାଜ୍ୟର ସମସ୍ତ ଶିକ୍ଷକ ଓ ଛାତ୍ରଙ୍କୁ ଗ୍ରହଣ କରି ନେଇଛନ୍ତି ନିଜ ପରିବାରର ଲୋକ ଭାବରେ ।

ଖଦଡ଼ ପୋଷାକଧାରୀ ଏ ନିରାଡ଼ମ୍ବର ଲୋକଟିକୁ ଦେଖିଲେ କିଏ ଭାବିବ ଯେ, ସେ ସ୍ୱତଃ ଜଣେ ମୂର୍ତ୍ତିମନ୍ତ ଅନୁଷ୍ଠାନ ।

ଯାହାହେଉ ଆଜି ଯେ ଏହିଭଳି ଜଣେ ଶିକ୍ଷାବିତ୍, ସଂଗଠକ, ସଂସ୍କାରକ, ନିଷ୍ଠାବାନ୍, ପରୋପକାରୀ, ହୃଦୟବାନ୍ ଓ ସ୍ୱାର୍ଥତ୍ୟାଗୀ ମଣିଷର ଜୟନ୍ତୀ ପାଳନ ଲାଗି ଉଦ୍ୟମ ଆରମ୍ଭ ହୋଇଛି, ସେଥିପାଇଁ ମୁଁ ବିଶେଷ ଆନନ୍ଦିତ । ମୋର ଶୁଭେଚ୍ଛା ତାଙ୍କୁ ଦୀର୍ଘାୟୁ କରୁ—ଏହାହିଁ ଜୟନ୍ତୀ ବାସରେ ମୋର କାମନା ।

ସୁଜାତା ଭବନ
ରାଜାବଗିଚା, କଟକ-୯

# ଶିକ୍ଷକ-ନେତା ବ୍ରହ୍ମଚାରୀ

**ଶ୍ରୀ ଯତୀନ୍ଦ୍ର ମୋହନ ମିଶ୍ର**

ସ୍ୱାଧୀନୋତ୍ତର ଭାରତୀୟ ନେତାମାନଙ୍କୁ ମୁଁ ଯେତେଦୂର ଜାଣେ, ଜଣେ ଶିକ୍ଷକ ହିସାବରେ ସେମାନଙ୍କୁ ମୁଁ ଦୁଇ ଭାଗରେ ବିଭକ୍ତ କରେଁ । ଯଥା :—ଅଣରାଜନୈତିକ ଏବଂ ରାଜନୈତିକ । ଅଣ ରାଜନୈତିକ ତାଲିକାରେ ଯେଉଁମାନେ ନେତା ଅଛନ୍ତି, ସେମାନେ ଖୁବ୍ ଅଳ୍ପ ହେଲେ ମଧ୍ୟ ସମାଜ ଓ ସଂସ୍କୃତି ବିଷୟରେ ଖୁବ୍ ଚେତନଶୀଳ ଏବଂ ବୈଜ୍ଞାନିକ, ମନସ୍ତାତ୍ତ୍ୱିକ ତଥା ଦାର୍ଶନିକ ମନୋଭାବାପନ୍ନ, ବାସ୍ତବବାଦୀ ଦୂରଦ୍ରଷ୍ଟା ଭାବରେ ଗଣ୍ୟ । ସେମାନଙ୍କ କାୟମନୋବାକ୍ୟ ଏକ ତାନରେ ପରିଚାଳିତ ଏବଂ ସେମାନଙ୍କ ପ୍ରଜ୍ଞା,ଚିନ୍ତା ଓ କାର୍ଯ୍ୟ ହୃଦୟ-କଷଟିରେ ଶାଣିତ । ତାଙ୍କର ଜୀବନ କାରୁଣ୍ୟ-ପ୍ରେରିତ ଓ ସେବାମୟ । ସେହିମାନେ ହିଁ ଯୁଗେ ଯୁଗେ ସଂସ୍କୃତିର ଜାଗ୍ରତ ପ୍ରହରୀ ହୋଇ ରହନ୍ତି । ସେମାନଙ୍କୁ ଏବକାର ସମାଜ ବିଶେଷ ଭାବରେ ଚିହ୍ନି ପାରୁ ନ ଥିଲେ ମଧ୍ୟ, ବରଂ ସମାଜ ସେମାନଙ୍କୁ ମସ୍ତିଷ୍କ-ନଳାରେ (**Brain drain**) ଫିଙ୍ଗିବାକୁ ଚେଷ୍ଟା କରି ଆସିଥିଲେ ମଧ୍ୟ ଶେଷରେ ସେମାନଙ୍କ ନେତୃତ୍ୱ ପ୍ରତିଷ୍ଠିତ ହୁଏ । ସେମାନେ ଶେଷରେ ଏକ ଯୁଗ ସୃଷ୍ଟି କରିଯା'ନ୍ତି । ସାଂସ୍କୃତିକ ମୂଲ୍ୟବୋଧ ଦୃଷ୍ଟିରୁ ଏହାକୁ ଆମେ ତଥାପି ଗାନ୍ଧିଯୁଗ ବୋଲି କହିପାରିବା । କାରଣ ଗାନ୍ଧୀ ଏହି ଶ୍ରେଣୀର ନେତା ଏବଂ ତାଙ୍କ ପରେ ଆଚାର୍ଯ୍ୟ ବିନୋବା, ଆମ ପ୍ରଦେଶର ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ପରିବାରର ମନୋମୋହନ ଚୌଧୁରୀ, ଶରତ୍ ଚନ୍ଦ୍ର ମହାରଣା, ଚିତ୍ତରଞ୍ଜନ ଦାସ ଇତ୍ୟାଦି ଏହି ଶ୍ରେଣୀର ନେତାମାନେ ଯାହା କାୟମନୋବାକ୍ୟରେ ସଫଳତାର ସହିତ ଦେଖାଇ ଯାଇଛନ୍ତି—କାର୍ଯ୍ୟତଃ ତାକୁ ଆମ ସମାଜ ଗ୍ରହଣ କରି ନ ଥିଲେ ବି ତାହା କ୍ରମେ ଅଧିକରୁ ଅଧିକ ସତ୍ୟ ପ୍ରତ୍ୟୟ ଜାତ କରୁଛି । ସେ ଯାହା ହେଉ, ମୁଁ ଭାବେ ଆଜିର ରାଜନୈତିକ ନେତାମାନେ ନିଜସ୍ୱ ସାଂସ୍କୃତିକ ପଥରୁ ସ୍ଖଳିତ ହୋଇ ନିଜ ଢୋଲ ନିଜେ ପିଟି ପ୍ରଖ୍ୟାତ ହେବାର ବହୁ ସାମାଜିକ ସୁଯୋଗ ଯେଭଳି ଭାବରେ ପାଇ ପାରୁଛନ୍ତି, ଏମାନେ ସେଭଳି ସୁଯୋଗ ପାଇଲେ ଏମାନଙ୍କ ସଦ୍‌ବିଚାର ଏବଂ କାର୍ଯ୍ୟାବଳୀର ସମ୍ପ୍ରସାରଣ ଆହୁରି ତ୍ୱରାନ୍ୱିତ ହୋଇପାରନ୍ତା । କାରଣ ଏମାନଙ୍କ ପ୍ରଜ୍ଞା, ଚିନ୍ତା ଓ କାର୍ଯ୍ୟରେ ଛଳନା ଓ ଅସତ୍ୟର ସ୍ଥାନ ନାହିଁ ।

ଅନ୍ୟାନ୍ୟ ପ୍ରଦେଶ ଭଳି ଓଡ଼ିଶାରେ ଏହି ଶ୍ରେଣୀର ନେତାମାନଙ୍କ ସଂଖ୍ୟା କିଛି କମ୍ ନୁହେଁ । ସ୍ୱର୍ଗତ ଉତ୍କଳମଣି ଗୋପବନ୍ଧୁ, ସ୍ୱର୍ଗତ ମଧୁବାବୁ, ସ୍ୱର୍ଗତ ଆଚାର୍ଯ୍ୟ ହରିହର ଓ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ବ୍ୟତୀତ ବଞ୍ଚିଥିବା ଆଉ କେତେକ ନେତାଙ୍କୁ ଏହି ପର୍ଯ୍ୟାୟଭୁକ୍ତ କରାଯାଇ ପାରେ । ମୁଁ ଏହି ପର୍ଯ୍ୟାୟରେ ଓଡ଼ିଶାର ଶିକ୍ଷକ ସମାଜର ନେତା ବନମାଳୀ ବ୍ରହ୍ମଚାରୀଙ୍କୁ ଅନ୍ତର୍ଭୁକ୍ତ କରିବାକୁ ଆଜି ଗୌରବ ଅନୁଭବ କରୁଛି । କେବଳ ଓଡ଼ିଆ ନେତାମାନଙ୍କ

ଦ୍ୱାରା ଅନୁପ୍ରାଣିତ ଏବଂ ପ୍ରେରିତ ହୋଇ ସେ ଯେ ଏକ ଚରିତ୍ରବାନ ଓଡ଼ିଆ ନେତା ଭାବରେ ଆଜି ଦଣ୍ଡାୟମାନ ହୋଇ ପାରିଚନ୍ତି, ତାହାହିଁ ସମଗ୍ର ଓଡ଼ିଆ ଜାତି ପକ୍ଷରେ ଗର୍ବ ଓ ଗୌରବର ବିଷୟ । ପ୍ରକୃତ ନେତା ସିଏ, ଯେ ନିଜର ନିଷ୍ଠା ଓ ଆଦର୍ଶକୁ ବଜାୟ ରଖି ସମାଜ କ୍ଷେତ୍ରରେ ତାକୁ ଦୃଢ଼ତାର ସହିତ ପ୍ରୟୋଗ କରିପାରେ ଏବଂ ନିଜର ଅନୁଯାୟୀମାନଙ୍କର ଅହରହ ଖବର ଅନ୍ତର ରଖି, ସେମାନଙ୍କ ଦୁଃଖର ଅପନୋଦନ କରି ପ୍ରେରଣା ଯୋଗାଏ । ଏସବୁ ଗୁଣ ବ୍ରହ୍ମଗ୍ରହିଙ୍କଠାରେ ପରିପୂର୍ଣ୍ଣ ।

ତାଙ୍କର ଜୀବନ ୭୯ ବର୍ଷରେ ପଦାର୍ପଣ କରିବା ସମୟରେ ତାଙ୍କର ଜୟନ୍ତୀ ଉତ୍ସବ ପ୍ରଥମ କରି ସମଗ୍ର ଓଡ଼ିଶାରେ ପାଳନ କରାଯାଉଛି, ଏହା ଅତ୍ୟନ୍ତ ଆନନ୍ଦର କଥା । ଏହି ଦୃଷ୍ଟିରୁ ମୁଁ ତାଙ୍କର ଜୀବନୀ ଓ କେତେକ ଘଟଣାବଳୀର ଅବତାରଣା କରି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।

**ସଂକ୍ଷିପ୍ତ ଜୀବନୀ**—ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗ୍ରହି କଟକ ଜିଲ୍ଲା କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଦୋହଲ ଗ୍ରାମରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ୧୯୦୫ ମସିହା ନଭେମ୍ବର ମାସ ୧୮ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ମାତାଙ୍କ ନାମ ସାବିତ୍ରୀ ଦେବୀ ଏବଂ ପିତାଙ୍କ ନାମ ଶ୍ରୀଚରଣ ପଣ୍ଡା । ତାଙ୍କ ମାତାଙ୍କର ମୃତ୍ୟୁ ଶୈଶବାବସ୍ଥାରେ ହୋଇଥିଲା । ଫଳରେ ସାବତମାତାର ତାଡ଼ନାରେ ସେ କିଛିବର୍ଷ ରହିଥିଲେ । ପରେ ବାଲ୍ୟାବସ୍ଥାରେ ପିତାଙ୍କର ମଧ୍ୟ ମୃତ୍ୟୁ ଘଟିଲା । ସେ ୧୯୧୯ ମସିହା ପର୍ଯ୍ୟନ୍ତ ଗ୍ରାମର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରି ସେହି ବର୍ଷ ପଟ୍ଟାମୁଣ୍ଡାଇ ମି:ଇ: ସ୍କୁଲରେ ୬ଷ୍ଠ ଶ୍ରେଣୀରେ ନାମ ଲେଖାଇଲେ । ପରିସ୍ଥିତି ଦୃଷ୍ଟିରୁ ପରିବାରର ମୋହ ତାଙ୍କୁ ଗ୍ରାସ କରିପାରି ନଥିଲା । ଫଳରେ ଏହିଠାରୁ ଅଧ୍ୟୟନ ଦିଗରେ ତାଙ୍କର ସମସ୍ତ ଶକ୍ତି ନିୟୋଜିତ କରିପାରିଲେ । ତୁଳସୀ ଦୁଇ ପତ୍ରରୁ ବାସିଲପରି ଏହି ଶ୍ରେଣୀରେ ତାଙ୍କର ପ୍ରତିଭା ବିକଶିତ ହୋଇଥିଲା । ସେ ଉଚ୍ଚ ପ୍ରାଥମିକ ବୃତ୍ତି ଲାଭ କରିଥିବାରୁ ଏବଂ ତାଙ୍କର ସୁନ୍ଦର ନିଜସ୍ୱ ସାହିତ୍ୟିକ ପ୍ରତିଭା ଥିବାରୁ ତାଙ୍କୁ ଷଷ୍ଠ ଶ୍ରେଣୀ ତର୍କ ସଭାର ସମ୍ପାଦକ ପଦ ମିଳିଲା । ତର୍କ ସଭାପାଇଁ ଆଗରୁ ନିର୍ଦ୍ଧାରିତ ବିଷୟରେ ପ୍ରବନ୍ଧ ଲେଖିବାକୁ ପଡ଼ୁଥିଲା । ଏଥିଯୋଗୁ ସେ ବିଭିନ୍ନ ପ୍ରକାର ଶବ୍ଦ, ଖଣ୍ଡ ବାକ୍ୟ ଓ ଉଦ୍ଧୃତାଂଶ ସଂଗ୍ରହ କରି ଟିପାଖାତାରେ ରଖୁଥିଲେ ଏବଂ ସେଗୁଡ଼ିକୁ ପ୍ରବନ୍ଧରେ ପ୍ରୟୋଗ କରୁଥିଲେ । ଏହିପରି ଉଦ୍ୟମ ଯୋଗୁ ସେ ବହୁ ପ୍ରକାର ପାଠାଗାର ପୁସ୍ତକ ଓ ବାହ୍ୟ ପୁସ୍ତକ ଅଧ୍ୟୟନର ସୁଯୋଗ ପାଇଲେ । ୭ମ ଶ୍ରେଣୀ ପାସ୍ କଲାପରେ କଟକସ୍ଥ ନର୍ମାଲ ଟ୍ରେନିଂସ୍କୁଲରେ ଭର୍ତ୍ତି ହେଲେ । ଭି. ଏମ୍. ପାସ କରିଥିବା ଶିକ୍ଷକମାନଙ୍କର ଗୁରୁତାଲିମ ସେତେବେଳେ ତିନି ବର୍ଷ ଥିଲା । ସେହି ସମୟରେ ତାଙ୍କର ସାହିତ୍ୟିକ ପ୍ରତିଭାକୁ ଆହୁରି ଖୋରାକ ମିଳିଲା । ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ଘୋଷିତ ଏକ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ହେବାରୁ ତାଙ୍କୁ ଟ ୧୫-୦୦ ପୁରସ୍କାର ମିଳିଥିଲା । ସେଠାରେ ମଧ୍ୟ ତାଙ୍କର ଟିପାଖାତାର ବପୁ ବଢ଼ି-ଚାଲିଲା ଏବଂ ବାହ୍ୟ ପୁସ୍ତକ ପଠନ ଅଭ୍ୟାସ ବଢ଼ିଲା । ସେ ପିଲାଦିନୁ ବହିରଙ୍କ ଥିଲେ । କିଛି ପଇସା ମିଳିଗଲେ ଛୋଟ ଛୋଟ ବହି କିଣି ପକାଉଥିଲେ । ସେହିପରି ସେଡ଼ିଏ ବହି ସଂଗ୍ରହ କରି ରଖିଥିଲେ । କଟକରୁ ଏଠୁ ସେଠୁ ଗୁଡ଼ିଏ ବହି ମାଗିଆଣି ଗ୍ରାମରେ 'ଶୁକ୍ଳେଶ୍ୱର ପାଠାଗାର' ସ୍ଥାପନ କଲେ । ସେହି ସମୟରେ ଟ୍ରେନିଂ ସ୍କୁଲରେ ଯେଉଁ ସବୁ ଖେଳ ଓ କସରତ ହେଉଥିଲା, ତାର ନିୟମାବଳୀ ଟିପିରଖି ପରେ "ବିବିଧ ଖେଳ ଶିକ୍ଷା" ନାମରେ ତାଙ୍କର ପ୍ରଥମ ପୁସ୍ତକ ରଚନା କଲେ । ଖେଳ ବିଷୟରେ ଏହା ଓଡ଼ିଶାର ପ୍ରଥମ ପୁସ୍ତକ ହୋଇ ରହିଅଛି ।

ଟ୍ରେନିଂ ସରିବା ପରେ ତାଙ୍କୁ ଚାକିରିର ଅନ୍ୱେଷଣ କରିବାକୁ ପଡ଼ିଥିଲା । ତତ୍କାଳୀନ ବ୍ରିଟିଶ୍ ସରକାର ଭାରତରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର ପରୀକ୍ଷା ଠାଏ ଠାଏ ଚଳାଇଥିଲେ । ଆମ ଓଡ଼ିଶାରେ ବାଙ୍କି ଠାରେ ଚାରି ବର୍ଗମାଇଲ ଅଞ୍ଚଳ ମଧ୍ୟସ୍ଥ ଗ୍ରାମ

ଗୁଡ଼ିକରେ ଷୋଳ ଗୋଟି ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରି ଏକ ପରୀକ୍ଷାମୂଳକ ଶିକ୍ଷା ଚଳାଯାଉଥିଲା । ବନମାଳୀ ବାବୁଙ୍କର ଇଚ୍ଛା ଥିଲା କଟକରେ କୌଣସି ଠାରେ ଶ୍ରୀକରୀରେ ରହି ମ୍ୟାଟ୍ରିକ୍ ପାସ୍ କରିବାକୁ । କିନ୍ତୁ ତାଙ୍କର ଗୁରୁଜନଙ୍କ ବାଧ୍ୟବାଧକତାରେ ପଡ଼ି ଏହି ପ୍ରାଥମିକ ବିଦ୍ୟାଳୟର ନିଯୁକ୍ତି ପତ୍ର ଗ୍ରହଣ କଲେ । ସେତେବେଳେ କୌଣସି ଯାନ ବାହନ ନଥିଲା । ସେ ୨୮ ମାଇଲ ବାଟ ପଦବ୍ରଜରେ ଯାଇ ପାହାଡ଼ ଜଙ୍ଗଲ ଘେରା ସେହି ପ୍ରାଥମିକ ବିଦ୍ୟାଳୟରେ ଯୋଗ ଦେଲେ । ଏଠାରେ ଚଉଦ ବର୍ଷରୁ କମ୍ ସମସ୍ତ ପିଲାଙ୍କ ବାପା ମା'ମାନେ କୌଣସି କାର୍ଯ୍ୟରେ ନ ଲଗାଇ ସ୍କୁଲକୁ ପଠାଇବାକୁ ବାଧ୍ୟ ହେଉଥିଲେ । ସେ ପ୍ରଥମେ ଯେତେବେଳେ ଯୋଗଦେଲେ, ସେତେବେଳେ ସେଠାକାର ପାଠପଢ଼ା ପଦ୍ଧତି ଓ ବ୍ୟବସ୍ଥା ବିରୁଦ୍ଧରେ କେତେକ ସଂସ୍କାର ଆରମ୍ଭ କରିଦେଲେ । ଏଇଠୁ ଶିକ୍ଷା କ୍ଷେତ୍ରରେ ତାଙ୍କର ପ୍ରକୃତ ବୈପ୍ଳବିକ କାର୍ଯ୍ୟ ଆରମ୍ଭ ହେଲା । ସେତେବେଳର କଟକ ଜିଲ୍ଲାବୋର୍ଡର ଚେୟାରମ୍ୟାନ ଂଗୋପବନ୍ଧୁ ଚୌଧୁରୀ ସେଠାକାର ଅନୁଷ୍ଠାନ ପରିଦର୍ଶନରେ ଯାଇଥିଲାବେଳେ ସେ ଅନ୍ୟ ସମସ୍ତ ଶିକ୍ଷକଙ୍କୁ ଏକାଠି କରାଇ ସେଠା ଶିକ୍ଷା-ଶିକ୍ଷକ ଓ ଶିକ୍ଷାୟତନର କେତେକ ଅସୁବିଧା କଥା ତାଙ୍କୁ ଜଣାଇଲେ । ବ୍ରିଟିସ ରାଜତ୍ୱ ସମୟରେ ଏଭଳି ଚେୟାରମ୍ୟାନଙ୍କ ଅପେକ୍ଷା କଲେକ୍ଟରମାନଙ୍କ କ୍ଷମତା ବହୁତ ଥିଲା । ସେଠାକାର ଡେପୁଟି କଲେକ୍ଟର ବୀରେନ୍ଦ୍ର କୃଷ୍ଣ ଦାସଙ୍କୁ ବନମାଳୀ ବାବୁଙ୍କ ସଂସ୍କାରପ୍ରିୟ ବୈପ୍ଳବିକ ଭୂମିକା ଜଣେ ସଚ୍ଚୋଟ କର୍ମଚାରୀ ଭାବରେ ଭଲ ଲାଗିବାରୁ ସେ ଖଣ୍ଡିଏ ଚିଠି ଲେଖି ସମସ୍ତ ଶିକ୍ଷକଙ୍କୁ ଧମକ ଦେଲେ ଯେ, ଯେଉଁମାନଙ୍କୁ ଏଠାରେ ଦରମା ପୋଷାଉନାହିଁ, ସେମାନେ ଇସ୍ତଫା ଦେଇ ଚାଲିଯାଆନ୍ତୁ । ଏଚିଠି ବନ୍ଧୁବର୍ଗଙ୍କ ହୃଦୟରେ ଗଭୀର ଆଲୋଡ଼ନ ସୃଷ୍ଟିକଲା । ଶିକ୍ଷକ ଭାବରେ ଶିକ୍ଷା-ଶିକ୍ଷକ ଓ ଶିକ୍ଷାୟତନର ଅଭାବ ଅସୁବିଧା ଉପରିସ୍ଥ ହାକିମଙ୍କୁ ଜଣାଇବା କଣ ଅପରାଧ ? —ଏହି ପ୍ରଶ୍ନ ସର୍ବଦା ତାଙ୍କୁ ବିବ୍ରତ କଲା । ହାକିମଙ୍କ ବେଆଇନ୍ ଧମକରେ ସେ ଡରି ନଯାଇ ତାଙ୍କୁ ଉପଯୁକ୍ତ ଜବାବ ଦେବାପାଇଁ ଓ ଅପଦସ୍ଥ କରିବା ପାଇଁ ସେ ପ୍ରସ୍ତୁତ ହୋଇ ରହିଲେ ।

ସେତେବେଳର ଏକମାତ୍ର ପତ୍ରିକା "ଉତ୍କଳ-ଦୀପିକା"ରେ ସେଠାକାର ଅବ୍ୟବସ୍ଥା ବର୍ଣ୍ଣନା କରି ଓ ସେଥିଯୋଗୁ ବୀରେନ୍ଦ୍ର ବାବୁଙ୍କୁ ଦାୟୀ କରି ସେ ଗୋଟିଏ ଲେଖା ବାହାର କଲେ । ଏକଥା ଜାଣିପାରି ବୀରେନ୍ଦ୍ର ବାବୁ ତାଙ୍କୁ ଗୋଟିଏ ଅପନ୍ତରା ସ୍ଥାନକୁ ବଦଳି କଲେ । ବନମାଳୀ ବାବୁ ସେଠାରେ କାର୍ଯ୍ୟରେ ଯୋଗଦେବା ପରେ ପୁଣିଥରେ ଉତ୍କଳ ଦୀପିକାରେ "ବୀରେନ୍ଦ୍ର ବାବୁଙ୍କ ବିଚିତ୍ର ବିଗ୍ରହ" ଶୀର୍ଷକ ଅନ୍ୟ ଏକ ଲେଖା ବାହାର କଲେ । ଏହି ଲେଖାର ପ୍ରତ୍ୟେକ ଶବ୍ଦ ମୂଳରେ 'ବ' ଅକ୍ଷର ବ୍ୟବହାର କରିଥିବାରୁ ତାହା ପାଠକମାନଙ୍କ ମନରେ ଅତି ଚମତ୍କାର ପ୍ରଭାବ ପକାଇ ଥିଲା । ଏହାପରେ ତାଙ୍କର ହିତୈଷୀ ମାନେ ସେଠା ଛାଡ଼ି ପଳାଇ ଆସିବାକୁ ତାଙ୍କୁ ଲେଖିଲେ । କିନ୍ତୁ କାହା କଥା ନଶୁଣି ସେ ସେହିଠାରେ ରହିଲେ । ପରେ ବୀରେନ୍ଦ୍ର ବାବୁ ତାଙ୍କୁ ମାଡ଼ ମରାଇବାର ଷଡ଼ଯନ୍ତ୍ର କଲେ, କିନ୍ତୁ କୌଶଳକ୍ରମେ ବନମାଳୀ ବାବୁ ତାହାକୁ ଏଡ଼ାଇ ପାରିଥିଲେ । ସେଠୁ ସେ ସଙ୍କଳ୍ପ କଲେ ଯେ ବରଂ ବରଖାସ୍ତ ହେବେ, ଇସ୍ତଫା ଦେବେ ନାହିଁ । ଶେଷରେ ବୀରେନ୍ଦ୍ର ବାବୁ ତାଙ୍କୁ ସିଧା ସଳଖ ବରଖାସ୍ତ କଲେ । ଏହା ବିରୁଦ୍ଧରେ ବନମାଳୀବାବୁ ଅପିଲ କରି ନିଯୁକ୍ତ ହେବାରୁ ପୁନରାୟ ଚାକିରିରେ ଯୋଗ ଦେବାକୁ ସରକାରୀ ପତ୍ର ଆସିଲା । ମାତ୍ର ସେ ଆଉ ପ୍ରାଥମିକ ସ୍କୁଲରେ ଶିକ୍ଷକତା ନ କରିବାକୁ ମନସ୍ଥ କଲେ । ଏହାହିଁ ଥିଲା ଜଣେ ଶିକ୍ଷକ ଭାବରେ ତାଙ୍କର ପ୍ରଥମ ସଂଗ୍ରାମ । ଜଣେ ଅଷ୍ଟାଦଶ ବର୍ଷୀୟ ପ୍ରାଥମିକ ଶିକ୍ଷକ ବ୍ରିଟିସ୍ ସରକାର ଅଫିସରଙ୍କ ବିରୁଦ୍ଧରେ ଲେଖା ଲେଖି କରିବା ଏବଂ ନ୍ୟାୟ ଓ ସତ୍ୟ ପାଇଁ ଅହିଂସାତ୍ମକ ଭାବରେ ମୁହାଁମୁହିଁ ଲଢ଼େଇ କରି ନିଯୁକ୍ତ ହେବା କମ୍ ସାହସର କଥା ନଥିଲା ।

ବାଙ୍କିରୁ ବିଦାୟ ନେବା ପରେ ତାଙ୍କୁ ଉତ୍କଳମଣି ଗୋପବନ୍ଧୁ ଏବଂ ଉତ୍କଳସାହିତ୍ୟ ପ୍ରେସର ୰ ବିଶ୍ୱନାଥ କରଙ୍କ ଠାରୁ ନିଯୁକ୍ତିପତ୍ର ମିଳିଲା । ଉତ୍କଳମଣି ତାଙ୍କୁ ସ୍ପୃତାକର୍ଷା ଶିଖାଇବା ନିମିତ୍ତ ଡାକିଥିଲେ । ସେଥିରେ ତାଙ୍କର ଇଚ୍ଛା ଥିଲେ ମଧ୍ୟ ବିଶେଷ ଭାବରେ ଏହି କାର୍ଯ୍ୟ ନିଜେ ଶିକ୍ଷା ନ କରିଥିବାରୁ ତାଙ୍କୁ ଠକାଇ ଗୋଟାଏ ଚାକିରି କରିବାପାଇଁ ତାଙ୍କ ମନ ବଳିଲା ନାହିଁ । ଦ୍ୱିତୀୟ ନିଯୁକ୍ତି ପତ୍ରଟି ତାଙ୍କୁ କଟକରେ ରହି ପାଠ ପଢ଼ିବାରେ ଓ ସାହିତ୍ୟ ସାଧନା କରିବାରେ ସହାୟକ ହେବ ଭାବି ସେ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଯୋଗଦେଲେ । ସେ ଏହି ନିଯୁକ୍ତି ୧୯୨୬ରେ ଟ୧୫-୦୦ ଦରମାରେ ପାଇଥିଲେ । ତାଙ୍କର ଦକ୍ଷତା ଦେଖି ୬ ମାସ ପରେ ତାଙ୍କୁ ଆଉ ଟ୫-୦୦ ଦିଆଗଲା । କିନ୍ତୁ ବହୁତ ଏବଂ ଅନିୟମିତ ଖଟଣୀ ପଡୁଥିବାରୁ ସେ ଟିଉସନ କରି ପାରିଲେ ନାହିଁ । ବହୁ ଅସୁବିଧା ମଧ୍ୟରେ କେବଳ ଉଚ୍ଚ ଆଶା ପୋଷଣ କରି ସେଠାରେ କାମ କଲେ । ସେହିଠାରେ ରହି 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପ୍ରୁଫ୍ ସଂଶୋଧନ କଲା ବେଳେ ବହୁ ପୁସ୍ତକ ଅଧ୍ୟୟନ କରିଥିଲେ । ଫଳରେ ନିଜ ଜୀବନକୁ ଉପଯୁକ୍ତ କରି ଗଢ଼ି ତୋଳିବା ପାଇଁ ସେହିଠାରୁ ବହୁତ ପ୍ରେରଣା ପାଇଥିଲେ । ତାଙ୍କର କୃତିତ୍ୱ ଦେଖି ବିଶ୍ୱନାଥ ବାବୁ ପ୍ରୁଫ୍ ସଂଶୋଧନ ପାଇଁ ତାଙ୍କ ଉପରେ ସମ୍ପୂର୍ଣ୍ଣ ଭାର ନ୍ୟସ୍ତ କଲେ । ଏହିପରି ପ୍ରେସ୍‌ରେ ବର୍ଷେ ହେବ କାମ କଲାପରେ ତାଙ୍କର ଭାଗ୍ୟର ବିଡ଼ମ୍ବନା ପୁନର୍ବାର ଦେଖାଦେଲା । ଏହି ସମୟରେ ତାଙ୍କର ବିବାହର ଦାମ୍ପତ୍ୟ ଜୀବନ ଆରମ୍ଭ ହେଲା । ସେଥିପାଇଁ ପ୍ରେସରୁ ସାତ ଦିନ ଛୁଟି ନେଇ ପନ୍ଦର ଦିନ ଘରେ ରହିଗଲେ । ସେ ପ୍ରେସକୁ ଫେରିବା ପରେ ବିଶ୍ୱନାଥ ବାବୁ ତାଙ୍କୁ ଗୁଡ଼ାଏ ବକିଗଲେ । ଅଳ୍ପ ଦରମାକୁ ଗୁଡ଼ାଏ ଅନିୟମିତ ଖଟଣୀ, ଟିଉସନ ବନ୍ଦ, ପୁଣି ବିବାହ ଭଳି ଘଟଣା ଯୋଗୁ ହୋଇଥିବା ବିଳମ୍ବ କାରଣରୁ ତାଙ୍କ ପ୍ରତି ନିର୍ଦ୍ଦୟ ଗାଳି—ଏସବୁ ତାଙ୍କୁ ଭାରି ବାଧିଲାରୁ ସେ ସଫା ସଫା ବିଶ୍ୱନାଥ ବାବୁଙ୍କୁ ଏହାର ଜବାବ ଦେଲେ ଓ ସେଠାରୁ ବାହାରି ଆସିଲେ । ସେହି ଦିନ ଠାରୁ ପ୍ରେସ୍ ଚାକିରିରେ ଡୋରି ବନ୍ଧାଗଲା । ଏହି ସମୟ ମଧ୍ୟରେ ସେ 'ଦୟାନନ୍ଦ ସରସ୍ୱତୀ' ଓ 'ନେପୋଲିଅନ'ଙ୍କ ଜୀବନୀ ପୁସ୍ତକମାନ ରଚନା କରିଥିଲେ ।

୧୯୨୮ ମସିହାରୁ ତାଙ୍କ ସ୍ତ୍ରୀଙ୍କ ମୃତ୍ୟୁ ଅର୍ଥାତ୍ ୧୯୩୨ ମସିହା ପର୍ଯ୍ୟନ୍ତ ସେ ଜଣେ ନିଛାପର ଗୃହସ୍ଥ ଭାବରେ ଜୀବନ ଅତିବାହିତ କରିଥିଲେ । ଏହି ଅଳ୍ପ କେତେ ବର୍ଷର ଦାମ୍ପତ୍ୟ ଓ ଗାର୍ହସ୍ଥ୍ୟ ଜୀବନ ତାଙ୍କ ପକ୍ଷେ ଅତି ମୂଲ୍ୟବାନ୍ ଥିଲା । ଏହି ସମୟରେ ସେ ଗ୍ରାମ ଓ ସମାଜ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହେଲେ ଓ ଅନେକ ସାମାଜିକ ଜ୍ଞାନ ସଂଗ୍ରହ କଲେ । ଫଳରେ ଗ୍ରାମ୍ୟ ସମାଜରୁ ଅନେକ କୁସଂସ୍କାର ଦୂର କରିବା ନିମିତ୍ତ ସେ ନିଷ୍ଠାର ସହିତ କାର୍ଯ୍ୟ କରୁଥିଲେ । ସେ ସେହି ଅଞ୍ଚଳରେ ଅନେକ ଗୁଡ଼ିଏ ବିଧବା ବିବାହ କରାଇ ଗ୍ରାମ୍ୟ ସମାଜରେ ଏକ ହୈ ଚୈ ସୃଷ୍ଟି କରିଥିଲେ । ହରିଜନ ଆନ୍ଦୋଳନ ମଧ୍ୟ ସେ ଠିକ୍ ଏହି ସମୟରେ କରାଇଥିଲେ । ଗାନ୍ଧିଜୀଙ୍କ ପ୍ରେରଣାରେ ଅନେକ ହରିଜନ ସେବା କାର୍ଯ୍ୟ ବି କରିଥିଲେ । ଖାତକ ଓ ମହାଜନ ତଥା କୃଷକ ଓ ଜମିଦାର ମଧ୍ୟରେ ଯେତେବେଳେ ଯେଉଁ ଅତ୍ୟାଚାର ଚାଲିଥିଲା, ତା ବିରୁଦ୍ଧରେ ମଧ୍ୟ ସେ ଖଡ୍‌ଗ ଉତ୍ତୋଳନ କରିଥିଲେ । ଏହା ତାଙ୍କର ସମାଜବାଦୀ ମନୋବୃତ୍ତିର ଅଗ୍ରୀମାରମ୍ଭ ଥିଲା । ଏଥିପାଇଁ ସମାଜରେ ବହୁଥର ତାଙ୍କୁ ବାସନ୍ଦ ହେବାକୁ ପଡ଼ିଥିଲା, କେତେ ଥର ମୋକଦ୍ଦମାରେ ପଡ଼ିଥିଲେ ଓ ଜୀବନ ବିପଦାପନ୍ନ କରିଥିଲେ ମଧ୍ୟ କୁସଂସ୍କାର ଓ ଅସତ୍ୟ ତଥା ଅନ୍ୟାୟ ବୋଲି ଯାହାକୁ ଭାବୁଥିଲେ ତାର ବିରୁଦ୍ଧରେ ସେ ବ୍ୟୂହ ରଚନା ନକରି ଛାଡୁ ନଥିଲେ । ୧୯୩୧ ମସିହା ଲବଣ ଆନ୍ଦୋଳନରେ ମଧ୍ୟ ସେ ଯୋଗ ଦେଇଥିଲେ । ଏହା ପରେ ପରେ ଯେତେଗୁଡ଼ିଏ ଜାତୀୟ ଆନ୍ଦୋଳନ ହୋଇଛି, ସେ ସବୁଥିରେ ସେ ଭାଗ ନେଇଥିଲେ । ବୟାଳିଶି ମସିହା ଆନ୍ଦୋଳନରେ ତାଙ୍କ ନାମରେ ଓ୍ୱାରେଣ୍ଟ ବାହାରି ଥିଲା, କିନ୍ତୁ କେନ୍ଦ୍ରାପଡ଼ା ଏସ୍. ଡି. ଓ. ଙ୍କ ହସ୍ତକ୍ଷେପ ଫଳରେ ତାହା ରଦ୍ଦ ହୋଇଥିଲା । ଫଳରେ ସେ ଜେଲ ଯାଇ ନଥିଲେ ।

ଏହିପରି ସେ ଜାତି ଓ ସମାଜର ସେବାରେ ନିଜକୁ ନିୟୋଜିତ କରି ଅନେକ ଜ୍ଞାନ ଆହରଣ କରିଥିଲେ ।

୧୯୩୨ ମସିହାରେ ସ୍ତ୍ରୀ ବିୟୋଗ ପରେ ସେ ପଣ୍ଡା ନାମକୁ ବଦଳାଇ ବ୍ରହ୍ମଚାରୀ ବୋଲି ନିଜକୁ ଅଭିହିତ କରାଇଲେ । ତାଙ୍କର ଏକମାତ୍ର କନ୍ୟା ଓ ସେ ଦୁହେଁ ଏକ କ୍ଷୁଦ୍ର ପରିବାର ଗଠନ କରି ରହିଲେ । ସାବତ ମା'ଙ୍କର ଅତ୍ୟାଚାର କଥା ନିଜେ ଭୋଗିଥିବାରୁ ସେ ଆଉ ବିବାହ କଲେ ନାହିଁ । ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରିବାରୁ ସେ 'ବ୍ରହ୍ମଚାରୀ' ହେଲେ । ଏହାପରେ ସେ ଗାଁରେ ଏକ ମି: ଇ: ସ୍କୁଲ ପ୍ରତିଷ୍ଠା କରି ତାର ପରିଚାଳନା କଲେ । ସେତେବେଳେ କଟକର କୌଣସି କଲେକ୍ଟର କୁଆଡ଼େ ଲେଖି ଯାଇଥିଲେ ଯେ ଜିଲ୍ଲା ପାଇଁ ୩୦ଟି ମି. ଇ. ସ୍କୁଲ ଦରକାର । ତା ଠାରୁ ବେଶୀ ହେଲେ ଜିଲ୍ଲା ବୋର୍ଡ଼ର ବିନା ସାହାଯ୍ୟରେ ତାହା ଚାଲିବ । ଏବେ ଦୋହଲା ମି. ଇ. ସ୍କୁଲ କଟକ ଜିଲାର ସ୍କୁଲ ତାଲିକାର ୩୧ ନମ୍ବରରେ ରହିଲା । ତେଣୁ ବିନା ସରକାରୀ ସାହାଯ୍ୟରେ ତାକୁ ମଞ୍ଜୁରୀ ମିଳିଲା । ଏହି ଅସୁବିଧା ବାର ବର୍ଷ ପର୍ଯ୍ୟନ୍ତ ଲାଗି ରହିଥିଲେ ମଧ୍ୟ ଶିକ୍ଷକମାନଙ୍କ ଦରମା ଓ ପାଠ ପଢ଼ାପଢ଼ିରେ କୌଣସି ଅବହେଳା ପରିଲକ୍ଷିତ ହୋଇ ନଥିଲା । ପରେ ଏହାକୁ ହାଇସ୍କୁଲରେ ପରିଣତ କରି ଦୁଇଟିଯାକ ସ୍କୁଲକୁ ଏକତ୍ର ମିଶାଇ ସେଠାରୁ ସେ ଅବ୍ୟାହତି ନେଲେ । ଏହାପରେ ସେ କୋଠପଦା ମି. ଇ. ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଇଥିଲେ । ଏହିଠାରେ ଚାକିରି କରିବା ସମୟରେ ସରକାର ଗ୍ରାଣ୍ଟ-ଇନ-ଏଡ଼ର ନିୟମାବଳୀ ବଦଳାଇଲେ । ପୂର୍ବରୁ ପୂର୍ଣ୍ଣ ଅଭାବ ସରକାରଙ୍କ ଠାରୁ ମାସକୁ ମାସ ମିଳୁଥିଲା; କିନ୍ତୁ ୧୯୪୮ ମସିହା ଠାରୁ ଅଭାବର ½ ଅଂଶ ବର୍ଷକରେ ଥରେ ମିଳିବାର ବ୍ୟବସ୍ଥା ହେଲା । ଦେଶ ସ୍ୱାଧୀନ ହେବା ପରେ ପରେ ବେସରକାରୀ ଶିକ୍ଷାନୁଷ୍ଠାନ ଗୁଡ଼ିକ ଉପରେ ଏପରି ଏକ ବଜ୍ରପାତ ହେବା ବନମାଳୀ ବାବୁ ଆଶା କରୁ ନଥିଲେ । ଏଥିରେ ବିଶେଷତଃ ମି. ଇ. ସ୍କୁଲଗୁଡ଼ିକ ଅନ୍ତିମାସାରେ ନିର୍ଯ୍ୟାତିତ ହେବାକୁ ଲାଗିଲେ । ଅବଶ୍ୟ ସରକାର ଦରମା ହାରରେ କିଛି ପରିବର୍ତ୍ତନ କରିଥିବାରୁ ଶିକ୍ଷକମାନଙ୍କ ପାଟି ବନ୍ଦ କରି ଦିଆଯାଇ ଥିଲା । କିନ୍ତୁ ବନମାଳୀ ବାବୁ ସରକାରଙ୍କର ଏଭଳି ମତିକୁ କି ପସନ୍ଦ କରିବା ଲୋକ ? ସେ କୋଠପଦା ମି. ଇ. ସ୍କୁଲରେ ଥାଇ ଚାରିଆଡ଼ୁ ଅନ୍ତରଙ୍ଗ ବନ୍ଧୁ-ଶିକ୍ଷକ ମାନଙ୍କଠାରୁ ଅନେକ ଦୀର୍ଘ ପତ୍ର ପାଇଲେ । ଖାସ୍ କରି ନିଜ ଗ୍ରାମର ଓ ଦୂରରେ ଥିବା ନିଜ ସହକର୍ମୀଙ୍କର କରୁଣ ପତ୍ରମାନ ତାଙ୍କ ହୃଦୟବନକୁ ଦହନ କରିବାରେ ଲାଗିଲା । ସେ କ୍ରମେ କ୍ରମେ ଏହି ମି. ଇ. ସ୍କୁଲ ଶିକ୍ଷକ ମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ବ୍ୟାକୁଳ ହୋଇ ଉଠିଲେ । ସରକାରଙ୍କର ଶିକ୍ଷକ ଜୀବନ ପ୍ରତି ଏତେ ତାଚ୍ଛଲ୍ୟ ଓ ଏତେ ଅବହେଳା ବରଦାସ୍ତ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଯେପରି ଭାବରେ କ୍ରୌଞ୍ଚ ବଧ ଘଟଣାରୁ ରାମାୟଣର ସୃଷ୍ଟି ହେଲା, ଜରାଗ୍ରସ୍ତ, ବୃଦ୍ଧ, ଶବ ଓ ସନ୍ନ୍ୟାସୀ ଦେଖି ବୁଦ୍ଧଦେବଙ୍କ ଚୈତନ୍ୟୋଦୟ ଘଟିଲା—ସେହିପରି ଏସବୁ ଘଟଣାରୁ ଶିକ୍ଷକମାନଙ୍କୁ ଏକଜୁଟ କରାଇ, ଜାଗ୍ରତ କରାଇ ସରକାରଙ୍କ ଏତାଦୃଶ ବ୍ୟବସ୍ଥା ବିରୁଦ୍ଧରେ ଆନ୍ଦୋଳନ କରିବାକୁ ସେ ସଂକଳ୍ପବଦ୍ଧ ହେଲେ । ସେ କୋଠପଦା ମି. ଇ. ସ୍କୁଲରେ ଥାଇ ତା ୧ । ୧୧ । ୫୬ ତାରିଖରେ କଟକ ଜିଲାର ସମସ୍ତ ହାଇସ୍କୁଲ ଓ ମାଇନର ସ୍କୁଲ ମାନଙ୍କୁ ତତ୍କାଳୀନ ଶିକ୍ଷକ ସମସ୍ୟାର ଉତ୍କଟତା ଦର୍ଶାଇ ଏକ ଦାବୀ ପତ୍ରର ନକଲ ଯୋଗାଇ ଦେଲେ ଏବଂ ଶିକ୍ଷକମାନେ ଏଗୁଡ଼ିକୁ ଦସ୍ତଖତ କରି ଡି. ପି. ଆଇ. ଙ୍କ ନିକଟକୁ ପଠାଇ ଦେବାକୁ ଅନୁରୋଧ କଲେ । ତାହାହିଁ ହେଲା ତାଙ୍କ ଜୀବନର ଠିକ୍ ପଚାଶ ବର୍ଷ ବୟସରେ । ଏହିଠାରୁ ତାଙ୍କର ଏକ ସ୍ୱତନ୍ତ୍ର ନେତୃତ୍ୱ ସେ ଆରମ୍ଭ କଲେ । ଶିକ୍ଷକ ସଂଘ କାର୍ଯ୍ୟରେ କାର୍ଯ୍ୟତଃ ଏହିଠାରୁ ସେ ଶୁଭାରମ୍ଭ କଲେ ।

ଏତିକବେଳେ ଓଡ଼ିଶା ମାଧ୍ୟମିକ ଶିକ୍ଷକସଂଘ ନାମରେ ଯେଉଁ ସଂଘ ଗଠନ କରାଯାଇଥିଲା, ତାହା ନିର୍ଜୀବ ପ୍ରାୟ ପଡ଼ି ରହିଥିଲା । ୧୧-୧୧-୫୬ ତାରିଖରେ ସାଇଲୋ ଖାରପଡ଼ା ମି:ଇ: ସ୍କୁଲର ପ୍ରଧାନ

ଶିକ୍ଷକ ସୁରେନ୍ଦ୍ର ପ୍ରସାଦ ରାୟଙ୍କର ଉଦ୍ୟମରେ ପ୍ରଥମ ସଭା ଅନୁଷ୍ଠିତ ହେଲା । ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଂଘ ଦ୍ୱାରା ମି. ଇ. ସ୍କୁଲ ଗୁଡ଼ିକର ସ୍ୱତନ୍ତ୍ର ଦୁର୍ଦ୍ଦଶା-ମୋଚନ ଦିଗରେ କିଛି ହୋଇପାରିବ ନାହିଁ ଏବଂ ଏଥି ନିମିତ୍ତ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଢ଼ିବାକୁ ହେବ—ଏହିକଥା ସେହିଦିନ ଏହି ସ୍କୁଲରେ ହିଁ ସାବ୍ୟସ୍ତ କରାଗଲା । ଫଳରେ ଓଡ଼ିଶାର ସବୁ ନିମ୍ନ-ମାଧ୍ୟମିକ ସ୍କୁଲ ଶିକ୍ଷକଙ୍କୁ ୨୩-୧୨-୫୭ ତାରିଖ ଦିନ କଟକ ନିକଟସ୍ଥ ବିରବାଟୀ ମି:ଇ: ସ୍କୁଲ ଠାରେ ଏକତ୍ରିତ କରାଇ କଟକ ସର୍କଲ ଇନ୍‌ସ୍‌ପେକ୍ଟର ଶ୍ରୀଯୁକ୍ତ ରାମସ୍ୱାମୀ ସେନାପତିଙ୍କ ପୌରୋହିତ୍ୟରେ ନିମ୍ନ-ମାଧ୍ୟମିକ ଶିକ୍ଷକ ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ସଭାରେ ହିଁ ଆଜିର ନିଖିଳ ଉତ୍କଳ ନିମ୍ନ-ମାଧ୍ୟମିକ ଶିକ୍ଷକ ସଂଘ ଜନ୍ମଲାଭ ହେଲା । ବନମାଳୀ ବାବୁଙ୍କ ପ୍ରଗାଢ଼ ନିଷ୍ଠାଫଳରେ ଯେ ଏହା ସମ୍ଭବ ହେଲା, ତାହା କହିବା ବାହୁଲ୍ୟମାତ୍ର । ଏହି ସମ୍ମିଳନୀ ଠାରୁ ଏ ପର୍ଯ୍ୟନ୍ତ ସେ ସଂଗଠନ ସଂପାଦକ ରହି ଆସିଛନ୍ତି । ଦେଶର ଅନ୍ୟାନ୍ୟ ପ୍ରଦେଶରେ ନିମ୍ନ-ମାଧ୍ୟମିକ ଶିକ୍ଷକ ସଂଘ କୁଆପି ନ ଥିଲେ ମଧ୍ୟ ବନମାଳୀ ବାବୁଙ୍କ ଯୋଗୁଁ ଓଡ଼ିଶାରେ ତାହା ସମ୍ଭବ ହୋଇଛି । କୋଠପଦା ସ୍କୁଲରେ ରହି ଦୁଇବର୍ଷ ସଂଗଠନ ସଂପାଦକ କାର୍ଯ୍ୟ କରିବା ପରେ ସେ ୧୯୫୮ ମସିହାରେ ଚାକିରିରୁ ଇସ୍ତଫା ଦେଇ ପୂର୍ଣ୍ଣ ସମୟ ନିୟୋଜିତ କରି ସଂଘ କାର୍ଯ୍ୟ କରିବା ପାଇଁ କଟକ ଆସିଲେ । ତାଙ୍କର ଅସୀମ ଧୈର୍ଯ୍ୟ, କର୍ମପ୍ରବଣତା, ସ୍ପଷ୍ଟ-ବାଦିତା, ଦୟାଭାବ, ଦାନଶୀଳତା, ଅର୍ଥଶୌଚ ଓ ଦୃଢ଼ମନୋବଳ ଯୋଗୁ ସେ ତାଙ୍କର କାର୍ଯ୍ୟପରିସର କ୍ରମଶଃ ସମ୍ପ୍ରସାରିତ କରିବାରେ ଲାଗିଲେ ।

ତାଙ୍କର ସଂଘ ଜୀବନ ପୂର୍ବରୁ ଶିକ୍ଷକ ଜୀବନ ମଧ୍ୟରେ ଅନେକଗୁଡ଼ିଏ ପାଠ୍ୟ ପୁସ୍ତକ ଏବଂ ଅନ୍ୟାନ୍ୟ ପୁସ୍ତକ ରଚନା କରିଥିଲେ । ୧୯୬୨ ମସିହା ସୁଦ୍ଧା ତାଙ୍କର ଚଉଦଖଣ୍ଡି ପୁସ୍ତକ ଛାପା ସରିଥିଲା । ସେଗୁଡ଼ିକ ହେଲା —ଆଦର୍ଶ ଜୀବନ କାହାଣୀ-୧ମ ଓ ୨ୟ, ଭକ୍ତ ଓ ଭଗବାନ ୧ମ ଓ ୨ୟ, ଗୁରୁ ଚରିତ (ପଞ୍ଚମ ଶ୍ରେଣୀ), ଗୁଣ ଦର୍ପଣ ୧ମ ଓ ୨ୟ, ସରସ ବ୍ୟାକରଣ ଓ ରଚନା (୪ର୍ଥ, ୫ମ), ମାଧ୍ୟମିକ ବ୍ୟାକରଣ ଓ ରଚନା, (୬ଷ୍ଠ, ୭ମ, ୮ମ) ସହଜ ରଚନା ଓ ପ୍ରବନ୍ଧ (୪ର୍ଥ, ୫ମ), ମାଧ୍ୟମିକ ପ୍ରବନ୍ଧ ଲେଖନ ଶିକ୍ଷା, ନେପୋଲିଅନ୍, ଦୟାନନ୍ଦ ସରସ୍ୱତୀ, ବିବିଧ ଖେଳ ଶିକ୍ଷା । ୧୯୬୭ ମସିହା ମଧ୍ୟରେ ତାଙ୍କଦ୍ୱାରା ରଚିତ ତିନିଗୋଟି ଶିଶୁ ପୁସ୍ତକ ଉଚ୍ଚ ପ୍ରଶଂସିତ ହୋଇ ଅଛି । "ହୁରିକେ ହୋ" ପୁସ୍ତକଟି ରାଷ୍ଟ୍ରପତିଙ୍କ ପୁରସ୍କାର ଏବଂ 'ବଣର ମନକଥା' 'ରାଜ୍ୟ ସରକାରଙ୍କ ପୁରସ୍କାର ପାଇଛି । "କିଏ କେମିତି" ଉଚ୍ଚ କୋଟିର ଶିଶୁସାହିତ୍ୟ । ଏସବୁ ପୁସ୍ତକ ଲବ୍ଧ ଧନ ସଂଘ କାର୍ଯ୍ୟରେ ସେ ନିୟୋଜିତ କରି ଆସିଛନ୍ତି । ତାଙ୍କର ଏପରି ମହାନୁଭବତା ଆମ୍ଭମାନଙ୍କୁ ସଦାସର୍ବଦା ଉତ୍ସାହିତ କରିବାରେ ଲାଗିଅଛି । ଆଉ ମଧ ଏସବୁ ସାହିତ୍ୟ ସୃଷ୍ଟି ଲକ୍ଷ୍ୟକଲେ ଜଣାଯିବ ଯେ, ଏ ପ୍ରକାର ସାହିତ୍ୟର ଏକ ସ୍ୱତନ୍ତ୍ର ଶୈଳୀ ଅଛି । ଏହି ଶୈଳୀ ବର୍ତ୍ତମାନର "ଶିକ୍ଷକ ଦର୍ପଣ" ପତ୍ରିକାରେ ଏତେ ସ୍ପଷ୍ଟ ଯେ—ଏହାର ପାଠକ ପତ୍ରିକାର ଯେ କୌଣସି ବାକ୍ୟକୁ ପଢ଼ି ତାହା ବ୍ରହ୍ମଚାରୀଙ୍କ ଭାଷା କି ନାହିଁ ଜାଣି ପାରିବେ ।

ଏହା ପରେ ଦୀର୍ଘ ସତର ବର୍ଷର ସଂଘୀୟ ଜୀବନ ସଂପର୍କରେ ଉଣା ଅଧିକେ ପ୍ରାୟ ସମସ୍ତେ ଅବଗତ । ୧୯୭୮ ମସିହା ପର୍ଯ୍ୟନ୍ତ ବହି, ପ୍ରଶ୍ନ ଓ ପତ୍ରିକା ମାଇନର ସ୍କୁଲଗୁଡ଼ିକୁ ଯୋଗାଇ ସଂଘ ପାଇଁ ପାଣ୍ଠି ସଂଗ୍ରହ କରିବା, ସଂଘର ନିଜସ୍ୱ ଜମି ଓ କୋଠାଘର ନିର୍ମାଣ କରିବା ଦିଗରେ ପ୍ରାୟ ଏ ଅବଧି ଲକ୍ଷେ ଟଙ୍କାର ବିନିଯୋଗ କରିବା, ନିୟମିତ ଭାବରେ ଶିକ୍ଷକ ଦର୍ପଣ ପ୍ରକାଶ କରି ଶିକ୍ଷକମାନଙ୍କୁ ଏକତାବଦ୍ଧ, ଜାଗ୍ରତ ଓ ସଂଘ ପ୍ରେମୀ କରାଇବା, ବିଭାଗୀୟ ହାକିମମାନଙ୍କ ବିରୁଦ୍ଧରେ ନିୟମିତ ମସୀଯୁଦ୍ଧ ଚଳାଇ ସେମାନଙ୍କ ଔଦ୍ଧତ୍ୟ ଓ ଦାମ୍ଭିକତାକୁ ଖର୍ବ କରିବା ଇତ୍ୟାଦି କାର୍ଯ୍ୟରେ ତାଙ୍କର ସମୟ ଅତିବାହିତ ହେଉଛି । ଏତଦ୍‌ବ୍ୟତୀତ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘର ବାର୍ଷିକ ସମ୍ମିଳନୀ କରାଇ ସବୁ ଜିଲ୍ଲାର ଶିକ୍ଷକମାନଙ୍କ ମଧ୍ୟରେ ଏକ ସଂହତି ସ୍ଥାପନ କରିବା ମଧ୍ୟ ଏହି ସମୟର କାର୍ଯ୍ୟରେ ଅନ୍ତର୍ଭୁକ୍ତ । ଯେଉଁ କେତେକ ଦାବୀ ସଙ୍ଘ

ଦ୍ୱାରା ହାସଲ କରାଯାଇ ପାରଛି—ତାହା ବନମାଳୀ ବାବୁଙ୍କ ବଜ୍ର-କଠିନ ମନୋଭାବ ଯୋଗୁ ନିଶ୍ଚିତ ଭାବରେ ସମ୍ଭବ ହୋଇ ପାରଛି ।

ଏହା ପରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ ଓ ଅନ୍ୟାନ୍ୟ ବେସରକାରୀ କଲେଜ ଓ ସ୍କୁଲ ସଙ୍ଘଗୁଡ଼ିକୁ ଏକତ୍ରିତ କରାଇ ଶିକ୍ଷକ ମହାସଙ୍ଘ ଗଢ଼ାଯାଇ, ଶିକ୍ଷକମାନଙ୍କ ସାଧାରଣ ସମସ୍ୟା ପ୍ରତି ସରକାର ଓ ସମାଜର ଦୃଷ୍ଟି ଆକର୍ଷଣ ଦିଗରେ ତାଙ୍କର ନେତୃତ୍ୱରେ ୧୯୭୯ ମସିହାଠାରୁ ପ୍ରାୟ ପ୍ରତିବର୍ଷ କଷ୍ଟନା କରି ପ୍ରତ୍ୟକ୍ଷ ଆନ୍ଦୋଳନ ଚାଲି ଆସିଛି । ତାଙ୍କର ଡାକରା ପାଇଲା ମାତ୍ରେ ଓଡ଼ିଶାର ପୁରପଲ୍ଲୀରୁ ହଜାର ହଜାର ଶିକ୍ଷକ ଏକତ୍ର ହୋଇ ବିପ୍ଳବର ଧ୍ୱନି ଦେଉଛନ୍ତି ।

ସବୁଠୁଁ ଆଶ୍ଚର୍ଯ୍ୟ କଥା—ମହାତ୍ମା ଗାନ୍ଧୀ, ବିନୋବାଜୀ, ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ, ଉତ୍କଳମଣି ଗୋପବନ୍ଧୁ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ତଥା ଓଡ଼ିଶାର ଅନ୍ୟ ପ୍ରଖ୍ୟାତ ନେତାମାନଙ୍କର ଜୀବନୀ ଦ୍ୱାରା ଅନୁପ୍ରାଣିତ ହୋଇ, ନିଜ ଜୀବନକୁ ଠିକ୍ ତାଙ୍କର ଛାଞ୍ଚରେ ଗଢ଼ିଥିବା ଜଣେ ସାଧାରଣ ଶିକ୍ଷକ ଜୀବନର ସାୟଂକାଳ ପର୍ଯ୍ୟନ୍ତ ନିଜର ବ୍ରହ୍ମଚର୍ଯ୍ୟ ରକ୍ଷା କରିବା ସଙ୍କଳ୍ପ ନେଇ ଅଗାଧ ପରିଶ୍ରମ କରିବାରେ ଏବଂ ଶିଶୁ ଓ ଯୁବକ ସୁଲଭ ମାନସିକ ପ୍ରତିକ୍ରିୟା ପ୍ରକାଶ କରିବାରେ, ଅସହାୟ ଦରିଦ୍ର ମେଧାବୀ ଛାତ୍ରମାନଙ୍କୁ ଅମାୟିକ ଦାନ ପ୍ରବଣତାରେ, ହାକିମମାନଙ୍କ ନିଷ୍ଠୁରତାର ଉପଯୁକ୍ତ ଜବାବ ଦେବାରେ ଏବଂ ସର୍ବୋପରି କୌଣସି ସାଧାରଣ ପାଣ୍ଠି କାରବାର କ୍ଷେତ୍ରରେ ନିଜର ଅର୍ଥଶୌଚ ଅକ୍ଷୁଣ୍ଣ ରଖିବାରେ—ନିଜର ଏପରି ଯେଉଁ ପରିଚୟ ଦେଉଛନ୍ତି—ତାହା ଆଜିର କୌଣସି ନେତାଙ୍କଠାରେ ବିରଳ । ଜଣେ ମଣିଷପରି ମଣିଷ ସିଏ, ଯାହାକୁ ସାଧାରଣ ଶିକ୍ଷାଗତ ଯୋଗ୍ୟତା ମାପକାଠି ଦ୍ୱାରା ନ ମାପି ମାନବିକତାର ଓ ନେତୃତ୍ୱର ମାପକାଠିରେ ହିଁ ମପାଯାଇ ପାରେ । କର୍ମଦ୍ୱାରା ସେ ଭଗବାନଙ୍କୁ ପାଇପାରିବେ—ଏ ପ୍ରତ୍ୟୟ ତାଙ୍କୁ ଅଦ୍ୟାବଧି କର୍ମପ୍ରବଣ କରି ରଖିଅଛି । ଦେବଦେବୀଙ୍କ ପୂଜା, ଯଜ୍ଞ, ଅଷ୍ଟପ୍ରହରୀ, ଦୁର୍ଗାପୂଜା ଆଦିରେ ହେଉ-ଥିବା ବ୍ୟୟଭାରର ଦେଖି ସେ ସାକାର ପୂଜା ପ୍ରତି ବୀତସ୍ପୃହ ଏବଂ ଦରିଦ୍ରନାରାୟଣଙ୍କ ପୂଜାରେ ଆତ୍ମୋତ୍ସର୍ଗ କରିବାକୁ ନିଜର ବ୍ରତରୂପେ ବାଛି ନେଇଛନ୍ତି । ସେ ଆଜି ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ବ୍ୟୁତ୍ପତ୍ତିବାନ୍ ସାହିତ୍ୟିକ, ପ୍ରଭାବଶାଳୀ ନେତା, ପରାର୍ଥ ସେବକ, ସଂସ୍କାରକ ଓ ବିପ୍ଳବୀ-ସମାଜବାଦୀ ବ୍ୟକ୍ତି ହୋଇ ଆମ ଶିକ୍ଷକମାନଙ୍କ ମଧ୍ୟରେ ବିଦ୍ୟମାନ । ଜଣେ ଭଲ ମଣିଷର ପ୍ରତ୍ୟେକ ଗୁଣ ତାଙ୍କଠାରେ ଭରପୁର୍ । ଆସନ୍ତୁ ଆମେ ତାଙ୍କ ଆହ୍ୱାନର ଉପଯୁକ୍ତ ଜବାବ୍ ଦେବା—ତାଙ୍କର ଉପଯୁକ୍ତ ଦାୟାଦ ହେବା—ଏହାହିଁ ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ହେବ ।

ଓଡ଼ିଶାର ଶିକ୍ଷକ ସମାଜର ଆଶା ଓ ଭରସାର ସ୍ଥଳ, ଆଲୋକର ଦୀପ୍ତ ଶିଖା, ସାଂସ୍କୃତିକ ବିପ୍ଳବର ଅଗ୍ରଦୂତ ବନମାଳୀ ବ୍ରହ୍ମଚାରୀ ଦୀର୍ଘାୟୁ ଏବଂ ଯଶସ୍ୱୀ ହୁଅନ୍ତୁ ଏବଂ ଯୁଗେ ଯୁଗେ ଶିକ୍ଷକମାନଙ୍କୁ ଅନୁପ୍ରାଣିତ କରୁଥାନ୍ତୁ—ଭଗବାନଙ୍କ ନିକଟରେ ଏହାହିଁ ପ୍ରାର୍ଥନା ।

● ପ୍ରଧାନ ଶିକ୍ଷକ
ମଧୁବନ ମି: ଇ: ସ୍କୁଲ
ତୋଲପୁର



# କିଏ ସେହି ବିପ୍ଳବୀ ?

**ଶ୍ରୀ ଶଶିଭୂଷଣ ରଥ**

"ବିପ୍ଳବର ଲେଲିହାନ୍ ଶିଖାରେ ଆଜିର କଳଙ୍କିତ ଯାନ୍ତ୍ରିକ ଶିକ୍ଷା-ପଦ୍ଧତି ଓ ମୁଷ୍ଟିମେୟ ଶିକ୍ଷାଦ୍ରୋହୀ, ତଥାକଥିତ ଶିକ୍ଷାର କର୍ଣ୍ଣଧାରଙ୍କୁ ଆହୁତି ଦେବାକୁ ହେବ । ଶିକ୍ଷାର ପବିତ୍ର ଯଜ୍ଞ-ବେଦୀରେ ଏମାନେ ଅବାଞ୍ଛିତ । ଆଗେଇ ଆସ ଶିକ୍ଷକ ବନ୍ଧୁଗଣ : ଆମର ପ୍ରାଚୀନ ଗୌରବମୟ ଐତିହ୍ୟକୁ ସଭ୍ୟତାର ପରିମାର୍ଜିତ ଗ୍ରନ୍ଥରେ ଢାଳି ଆମେ ହିଁ କରିବା ଶିକ୍ଷାର ନବୀକରଣ । ସମାଜରେ ପ୍ରତିଷ୍ଠା କରିବା ଶିକ୍ଷକର ସମୁଚିତ ପଦମର୍ଯ୍ୟାଦା । ଆଜିର ଏ ଆଳଙ୍କାରିକ ଶିକ୍ଷାର ସମାଧି ଉପରେ ପ୍ରତିଷ୍ଠା କରିବା ବ୍ୟାବହାରିକ ଓ ସ୍ୱାବଲମ୍ବନଶୀଳ ଶିକ୍ଷାର ଗୌରବମୟ ପବିତ୍ର ମନ୍ଦିର ।"

ଏ ଆହ୍ୱାନ, ଏ ବିପ୍ଳବର ବାଣୀ ଜଣେ ବାକ୍ୟବୀର କର୍ମକୁଣ୍ଠର ବାଣୀ ନୁହେଁ ତ ?—ନା—ଆଜି ଓଡ଼ିଶାର ଶିକ୍ଷକ ସମାଜ ଅନୁଭବ କରୁଛି—ଏ ଆହ୍ୱାନର ଅଗ୍ନି-ସ୍ଫୁଲିଙ୍ଗ-ମନ୍ତ୍ରବାଣୀ ଶିକ୍ଷାଯନ୍ତ୍ରକୁ ବିଷମୁକ୍ତ କରିବ । ଏହି ବିଶ୍ୱାସରେ ଆଜିର ଶିକ୍ଷକ-ସମାଜ କେବଳ ଆସ୍ଥାବାନ୍ ନୁହନ୍ତି, ଏକତାବଦ୍ଧ ଭାବରେ ଏହାକୁ କାର୍ଯ୍ୟକାରୀ କରିବାପାଇଁ ଦୃଢ଼ ଓ ସଂକଳ୍ପବଦ୍ଧ ।

ନିରୀହ, ଲାଞ୍ଛିତ, ଅବହେଳିତ ଶିକ୍ଷକ ସମାଜର ସୁପ୍ତ ପ୍ରାଣରେ ଏ ବିପ୍ଳବର ବହ୍ନି ଯିଏ ଜଳାଇ ଦେଇଛନ୍ତି, ଯିଏ ଚାହାଁନ୍ତି ଶିକ୍ଷାର ବକ୍ର ପିଚ୍ଛିଳ ମାର୍ଗରୁ ଛାତ୍ରସମାଜକୁ ସରଳ, ସୁନ୍ଦର ମାର୍ଗର ସନ୍ଧାନ ଦେଇ ପୂର୍ଣ୍ଣାଙ୍ଗ ମାନବିକତାରୂପୀ କଳ୍ପଦ୍ରୁମର ଅଭୟ ଛାୟା-ତଳେ ଏ ଦେଶର ଭବିଷ୍ୟତ ଗୌରବକୁ ନିରାପଦ ରଖିବା ପାଇଁ, ସେ କେବଳ ଜଣେ ଶିକ୍ଷକ ନୁହଁନ୍ତି, ସେ ଜଣେ ପୂର୍ଣ୍ଣାଙ୍ଗ ଆଦର୍ଶ ଶିକ୍ଷକ, ସାହିତ୍ୟିକ ଓ ଦକ୍ଷ ବକ୍ତା ।

ନିରଳସ କର୍ମ ସଂଗ୍ରାମରେ ଜଣେ ନିଷ୍ଠାପର ସୈନିକ ପରି ଅଳୀକ ଜିନ୍ଦାବାଦକୁ ଭ୍ରୂକ୍ଷେପ ନ କରି ସେ କେବଳ ଆଗେଇ ଚାଲିଛନ୍ତି ଛାତ୍ର, ଶିକ୍ଷକ ଓ ଶିକ୍ଷାୟତନର ସମୁଚିତ ସ୍ଥାନ ନିର୍ଦ୍ଦେଶ କରିବାପାଇଁ । କାରଣ ସେ ଅନୁଭବ କରନ୍ତି ମାର୍ଗ ଭ୍ରମ-ପ୍ରମାଦ-ପୂର୍ଣ୍ଣ ହେଲେ ଦେଶର ସର୍ବାଙ୍ଗୀନ ଉନ୍ନତି ବ୍ୟାହତ ହେବ ।

ଉପେକ୍ଷିତ ଶିକ୍ଷକ ଜୀବନର ପୁଞ୍ଜୀଭୂତ-ଅଭିଜ୍ଞତା-ପ୍ରସୂତ ଏହି ବିପ୍ଳବ ବହ୍ନିର ଶୁଭ ସଂଯୋଗ ହେଲା ଓଡ଼ିଶା ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘର ଯଜ୍ଞକୁଣ୍ଡରେ । କର୍ତ୍ତବ୍ୟ ସ୍ରୁବରେ ତ୍ୟାଗର ଘୃତାହୁତି ଢାଳି ସେହି ମହାଶାନ୍ତି ଯଜ୍ଞର ପୂତ ସୁଗନ୍ଧ ଶିକ୍ଷକ ସମାଜରେ ସୃଷ୍ଟି କଲା ନବଜାଗରଣ, ନବ ଉଦ୍ଦୀପନା, ଆଶା ଓ ଆକାଂକ୍ଷା । ଭାଗ୍ୟ ରବିଙ୍କର ସଫଳ ଦର୍ଶନପାଇଁ ଆଶାୟୀ ହୋଇ ଉଠିଲା ଶିକ୍ଷକର ପ୍ରାଣ ।

ତଥାପି ଅନ୍ୟାୟ ଦମନ ନୀତିର ଭାବୀ ଭୟରେ ଶିକ୍ଷକର ମନ ସଙ୍କୁଚିତ ହୋଇ ଆସିଲା, ଏ ମହାଯଜ୍ଞରେ ଆହୁତି ଢାଳିବାକୁ । କିନ୍ତୁ ପ୍ରଧାନ ପୁରୋଧା, ଏହି କର୍ମବୀରଙ୍କର ବିପ୍ଳବର ଆହ୍ୱାନରେ ନୀରବ ରହି ପାରିଲା ନି ଶିକ୍ଷକ-ସମାଜ । ସେ ଜବାବ ଦେଲା । ବେଦ ଧ୍ୱନିର ଶାଶ୍ୱତ ଝଙ୍କାରରେ ଶୁଷ୍କତରୁ ପଲ୍ଲବିତ ହେଲା ।

ବିପ୍ଳବର ସେହି ସୁପ୍ତ ବୀଜ ଅଙ୍କୁରିତ ହୋଇ ନବପଲ୍ଲବରେ ପଲ୍ଲବିତ ହେଲା । ଶାଖା ପ୍ରଶାଖା ବିସ୍ତାର ଲାଭ କଲା । କ୍ଷୁଦ୍ର ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ ଶିକ୍ଷକ ମହାସଙ୍ଘରେ ପରିଣତ ହେଲା ।

ତଥାପି ବିପ୍ଳବୀର ବିପ୍ଳବ ଅବସାନ ହୋଇନି— ଲକ୍ଷ୍ୟ ତାର ଆହୁରି ଊର୍ଦ୍ଧ୍ୱରେ । ଆର୍ଯ୍ୟ ସଂସ୍କୃତିର ବାନପ୍ରସ୍ଥର ଦ୍ୱାରଦେଶରେ ରହି ମଧ୍ୟ ଯୌବନର ଉଦ୍ଦାମ କର୍ମଚଞ୍ଚଳ ଗତି ତା'ର କ୍ରମେ ଅଧିକତର ଚଞ୍ଚଳ ହୋଇ ଉଠୁଛି ବାର୍ଦ୍ଧକ୍ୟର ଶିଥିଳତାକୁ ଉପହାସ କରି ।

ସେ କିଏ ? କିଏ ସେହି ବିପ୍ଳବୀ ? ସେ ମୋର ପରମ ପୂଜନୀୟ ଗୁରୁଦେବ ବିପ୍ଳବୀ ବ୍ରହ୍ମଋଷି ।

ହେ ପରମେଶ୍ୱର ! "ଧର୍ମଂ ରକ୍ଷତୁ ଧାର୍ମିକଂ" ଏହା ଯଦି ସତ୍ୟ ଓ ସନାତନ—ମୋର ପୂଜ୍ୟ ଗୁରୁଦେବଙ୍କର କର୍ମ-ନାଦଘୋଷ ଆଗେଇଚାଲୁ ସେହି-ଦିନ ପର୍ଯ୍ୟନ୍ତ, ଯେଉଁଦିନ ତାଙ୍କ ମୁଖରେ ଫୁଟି ଉଠିବ 'ଲକ୍ଷ୍ୟ ସିଦ୍ଧି'ର ପରମ ତୃପ୍ତି । ଜୟନ୍ତୀ ବାସରରେ ଏତିକି ହିଁ ମୋର ମାଗୁଣି

● ସମ୍ପାଦକ, 'ବାଘମାମୁଁ'
ହଜାରୀଲେନ୍, କଟକ-୯



# ସମୁଦ୍ରର ବେଳାଭୂମିରୁ···

ଶ୍ରୀମତୀ ବୀଣାପାଣି ମହାନ୍ତ

ପଣ୍ଡିତଜୀଙ୍କ ସମ୍ବନ୍ଧରେ କିଛି ଲେଖିବାକୁ ଗଲାବେଳେ, ସମୁଦ୍ର ପରି ଗମ୍ଭୀର, ଆକାଶ ପରି ଉନ୍ନତ ଓ ପୃଥିବୀ ପରି ସର୍ବଂସହା ଯାହାଙ୍କର ଜୀବନ, ତାଙ୍କ ଉପରେ ମୋ ପରି ଜଣେ ନଗଣ୍ୟ ବ୍ୟକ୍ତି କଣ ଯେ ଲେଖିବ, କେଉଁଠୁ ଆରମ୍ଭ କରି କେଉଁଠୁ ଶେଷ କରିବ ଏବଂ କଅଣ ଲେଖିବ, ଯାହା ତାଙ୍କର ଅଗଣିତ ଗୁଣଗ୍ରାହୀ, ଶୁଭେଚ୍ଛୁ, ବନ୍ଧୁ ଓ ଦେଶର ଶିକ୍ଷକ ସମାଜଙ୍କୁ ତାଙ୍କ ସମ୍ବନ୍ଧରେ ସମ୍ୟକ୍ ଧାରଣା ଦେଇ ପାରିବ, ତାହା ମୋ ସମ୍ମୁଖରେ ଏକ ବିରାଟ ପ୍ରଶ୍ନବାଚୀ ହୋଇ ଛିଡ଼ା ହୋଇଗଲା । ମୁଁ ଆତଙ୍କିତ ହୋଇ ଉଠିଲି······ମୁଁ ମୋ ଭିତରେ କ୍ରମଶଃ ବିଚଳିତ ହେବାକୁ ଆରମ୍ଭ କଲି······ଯେମିତି ଗୋଟାଏ କେଉଁଠି ବଡ଼ ଭୁଲ ମୁଁ କରି ପକାଇବି କମ୍ପା କରିବାକୁ ଯାଉଛି······ଅଥଚ ନ କଲେ ରହି ହେଉନି···! ତାଙ୍କର କର୍ମମୟ ଜୀବନ, ସାହିତ୍ୟ ରଚନା, ଶିକ୍ଷକ ଓ ଶିକ୍ଷାର ମାନ ପାଇଁ ଆଜୀବନ ସଂଘର୍ଷରତ କର୍ମର ସମୀକ୍ଷା କରିବା ମୋ ପକ୍ଷରେ ଦୁଃସାଧ୍ୟ ।

ସେହି ବିରାଟ ବ୍ୟକ୍ତିତ୍ୱ ପାଖରେ ଆମେ ସବୁ ମୂକ ହୋଇ ଯାଇଥିଲୁ, ଜାଣିଥିବା ପାଠ, ଶୁଣିଥିବା କଥା ଭୁଲି ଯାଇଥିଲୁ । ସତେ କି ସେ ତାଙ୍କର ଦିବ୍ୟ ଚକ୍ଷୁ ଦେଇ ଆମ ଭିତରଟା ସବୁ ତନଖି ନେଉଛନ୍ତି, ଜାଣି ନେଉଛନ୍ତି, ସେଇ ବ୍ୟକ୍ତିତ୍ୱକୁ ଆଜି ମଧ୍ୟ ପରିଣତ ବୟସରେ ଭରିସି ସିଧା ସଳଖ ଚାହିଁବାକୁ ଶକ୍ତି ପାଉନାହିଁ, କହିବାକୁ ମୋର ସଙ୍କୋଚ ନାହିଁ ।

ହେଇ ମତେ ଦିଶି ଯାଉଛି ସତେ ବା କାଲିର ଘଟଣା, ଆଉ କାଲିର ଦୃଶ୍ୟ । କଟକ ଜିଲ୍ଲାର କେନ୍ଦ୍ରାପଡ଼ା ସବ୍‌ଡିଭିଜନ ଅନ୍ତର୍ଗତ ଦୋହଲ ଆଦର୍ଶ ଉଚ୍ଚ ଇଂରାଜୀ ବିଦ୍ୟାଳୟ । ଏବେ ଅନୁଷ୍ଠାନଟି କେତେ ବଡ଼ ହୋଇଗଲାଣି—ଆୟତନ ଓ ଗୁଣ ସଂଖ୍ୟା ଉଭୟେ ଆଶାତୀତ ଭାବରେ ବୃଦ୍ଧି ପାଇଛନ୍ତି । କିନ୍ତୁ ମୁଁ ୧୯୫୦ରୁ ୧୯୫୩ ମସିହା କଥା କହୁଛି । ସେତେବେଳେ ପାଖକେ ଗୃହଘର, ଆଉ ପାଖକେ ନୂଆ ହୋଇ ଉଠିଥାଏ କୋଠାଘର । ମଝିରେ ବଗିଚା । ବିଦ୍ୟାଳୟ ପାଖକୁ ଲାଗି ଝଙ୍କାଳିଆ ଆମ୍ବ ତୋଟାଟିଏ । ତା ସେପଟକୁ ଅଣଓସାରି କଅଁଳ ଗୋହିରି । ତାକୁ ଟପିଲେ ଯାଇଁ ସଡ଼କ ରାସ୍ତା । ଦୁଇପଟେ ସବୁଜ ଧାନ କ୍ଷେତ ।

ମୁଁ ୧୯୫୧ ମସିହାରେ ନବମ ଶ୍ରେଣୀରେ ଯାଇ ନୂଆ କରି ନାମ ଲେଖାଇ ଥାଏ । ପ୍ରଥମ କରି ସହର ଛାଡ଼ି ମଫସଲରେ ପ୍ରାୟ ୪ମାଇଲ୍ ରାସ୍ତା ଯିବା ଆସିବା କରି ପଢ଼ିବାକୁ ପଡୁଥାଏ । ସେତେବେଳେ ପ୍ରାୟ ସେଇ ଅଞ୍ଚଳରେ ଝିଅମାନେ ଇଂରାଜୀ ସ୍କୁଲକୁ ଯାଇ ପାଠ ପଢ଼ିବା ସାଧାରଣ ଚଳଣି ଅନ୍ତର୍ଭୁକ୍ତ ନ ଥିଲା । ବିଶେଷତଃ ଆମ ଗାଁ "ଗୃହୋଳ"ରେ ସେ କଥାଟାକୁ

କେହି ପସନ୍ଦ କରୁ ନଥିଲେ । କିନ୍ତୁ ମୋର ବାପା ବହୁ ଦିନ ଧରି ଶିକ୍ଷା ବିଭାଗରେ ଶିକ୍ଷକତା ଏବଂ ପରେ ପରିଦର୍ଶକ ହିସାବରେ କାର୍ଯ୍ୟ କରିଥିବାରୁ ଏବଂ ତାଙ୍କ ଦ୍ୱାରା ପରିବାରର ଅନେକେ ଅନୁପ୍ରାଣିତ ହୋଇଥିବାରୁ ମୋର ଉଚ୍ଚଶିକ୍ଷା ପାଇବାରେ ବିଶେଷ ଅସୁବିଧା ହୋଇ ନଥିଲା । ସେଥିରେ ଫେର ଆମକୁ ଗୃହୋଳ ବଜାର ଦେଇ ସଡ଼କ ରାସ୍ତାରେ ସ୍କୁଲ ଯିବା କଥାଟାକୁ ବିଶେଷ କେହି ପସନ୍ଦ କରୁ ନଥିଲେ । କିଏ କଣ କହିଦେବ—ଏତେ ବଡ଼ ଝିଅଗୁଡ଼ାକ ଏତେ ବାଟ ସ୍କୁଲକୁ ଯାଇ ପୁଅପିଲାଙ୍କ ସଙ୍ଗରେ ପଢ଼ିବେ କଣ ? ଯେତେହେଲେ ଝିଅ ଜନମ ତ ପର ଘରକୁ······ ହାଣ୍ଡି ଶାଳକୁ ।

ଏ ସବୁ କଥାରେ ମନଟା ଯେ ଦବିଯାଉ ନ ଥିଲା, ଏମିତି ନୁହେଁ । ତଥାପି ସବୁ ବାଧାବିଘ୍ନ ଅତିକ୍ରମ କରି ଆମେ ମନରେ ବଳ ସଞ୍ଚୟ କରି ଯାଉଥାଉ ପ୍ରତିଦିନ ଗୃହମାଇଲ ରାସ୍ତା । ଆଖ ପାଖ ଦଶଖଣ୍ଡି ଗାଁରୁ ପିଲାଏ ଆସୁଥାନ୍ତି ଦୋହଳ ମଡ଼େଲ ସ୍କୁଲକୁ । ମାତ୍ର ଛାତ୍ରୀ ବୋଇଲେ ଆମେ ତିନିଜଣ—ମୁଁ, ମୋର ଝିଅଂଶୀ ଶାନ୍ତି ଓ କମଳାମଣି । କମଳାମଣି ଅର୍ଥାତ୍ କମଳ କୁମାରୀ ଥିଲେ ପଣ୍ଡିତ ମହାଶୟଙ୍କର ଏକମାତ୍ର କନ୍ୟା । ସେ ଆମ ଉପର ଶ୍ରେଣୀରେ ପଢ଼ୁଥିବାରୁ ଆମେ ତାଙ୍କୁ ସବୁ କଥାରେ ପରାମର୍ଶ କରୁଥିଲୁ ଏବଂ ଅବସର ସମୟରେ ତାଙ୍କ ଘରେ ଅଧିକାଂଶ ସମୟରେ ଗପସପ ଓ ଖିଆପିଆରେ କଟାଉଥିଲୁ । କମଳାମଣି ଜନ୍ମ ହେବାର ସାତଦିନ ପରେ ମାଙ୍କୁ ହରାଇଥିଲେ ଏବଂ ସେଥିଯୋଗୁଁ ସେ ପଣ୍ଡିତ ମହାଶୟଙ୍କର ଅତି ଆଦରଣୀୟା ଥିଲେ । ତାଙ୍କ ପାଖରେ ବସିଥିଲାବେଳେ ପଣ୍ଡିତ ମହାଶୟ ଅନେକ ସମୟରେ ଆସି ପହଞ୍ଚିଯାନ୍ତି ଓ ଆମକୁ କଥାଚ୍ଛଳରେ ଅନେକ ଉପଦେଶ ଓ ଆଗେଇଯିବା ପାଇଁ ପରାମର୍ଶ ଦେଇଥାନ୍ତି । ନାରୀଶିକ୍ଷା ଓ ତାହାର ଆବଶ୍ୟକତା ସମ୍ବନ୍ଧରେ ସେ ଆମ ମନରେ ଯେତେବେଳେ ଦୃଢ଼ ରେଖାପାତ କରିଥିଲେ ଏବଂ ଘରେ ଘରେ ବୁଲି ସେ ନାରୀ ଶିକ୍ଷା ପାଇଁ ଲୋକମାନଙ୍କୁ ଅନୁପ୍ରାଣିତ କରୁଥିଲେ । ଆମେ ଶୁଣୁଥାଉ ଅନ୍ୟମାନଙ୍କ ମୁହଁରୁ ଦୋହଳ ସ୍କୁଲକୁ ପ୍ରତିଷ୍ଠିତ ଆଦର୍ଶ ସ୍କୁଲ କରି ସେ କିପରି ତାଙ୍କର ସୁଖଶାନ୍ତି ସମ୍ଭୋଗ ସବୁ ପରିତ୍ୟାଗ କରି ଏକନିଷ୍ଠ ହୋଇ ପରିଶ୍ରମ କରୁଛନ୍ତି । ଆହୁରି ମଧ୍ୟ ଶୁଣୁଥାଉ ଯେ ସେଥିପାଇଁ ସେ ଦ୍ୱିତୀୟ ବିବାହ କରିନାହାନ୍ତି । କିମ୍ବା ଏକମାତ୍ର କନ୍ୟାର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ କୌଣସି ଚାକିରି ଅନୁସନ୍ଧାନରେ ମଧ୍ୟ ବାହାରକୁ ଯାଇନାହାନ୍ତି । ଆହୁରି ତାଙ୍କ ଅକ୍ଳାନ୍ତ ପରିଶ୍ରମ, ତ୍ୟାଗ ଓ କଷ୍ଟସହିଷ୍ଣୁତାର ଅନେକ କାହାଣୀ ଆମ କାନରେ ବାଜୁଥାଏ । ମାତ୍ର କୌଣସି ଦିନ ଆମେ ତାଙ୍କୁ ବିଦ୍ୟାଳୟ ପ୍ରାଙ୍ଗଣରେ କ୍ଳାନ୍ତ, ଅବସନ୍ନ କିମ୍ବା ବିରକ୍ତ ହେବାର ଦେଖିନାହୁଁ । ଅଥବା ତାଙ୍କ ତୁଣ୍ଡରୁ ତାଙ୍କ ତ୍ୟାଗ ଓ ପରିଶ୍ରମର କାହାଣୀ ଶୁଣିନାହୁଁ । କେହି ଛାତ୍ର ଯଦି କେବେ ତାଙ୍କୁ ସେ ବିଷୟରେ ପ୍ରଶ୍ନ କରିଥାଏ, ତେବେ ସେ ପଢ଼ିବା ଛଡ଼ା ଛାତ୍ରର ଅନ୍ୟ ଚିନ୍ତା କରିବା ଉଚିତ ନୁହେଁ ବୋଲି ବୁଝାଇଥାନ୍ତି । କିନ୍ତୁ ଦିନରାତି ସେ ସ୍କୁଲର ଉନ୍ନତି ପାଇଁ ଲହୁ ଲୁହ ଢାଳି କାମ କରିବାର ଆମ ଆଖିରେ ଦେଖୁଥାଉ ।

ଖରା, ବର୍ଷା, ଶୀତ କିଛି ତାଙ୍କର ତଫାତ୍ ନାହିଁ । ମୁଣ୍ଡ ଫଟା ଖରାରେ ସିଝି ସିଝି ଆମେ ଦେଖୁ ସେ ଚାଲିଛନ୍ତି । ଝଡ଼ ବର୍ଷାରେ ଛତା ଖଣ୍ଡେ ହାତରେ ଧରି କାଦୁଅରେ ନିସର ପସର ହୋଇ ସେ ଗୃହଆଡ଼େ ଧାଇଁଥାନ୍ତି ସ୍କୁଲପାଇଁ । ଶୀତଋତୁ ତାଙ୍କପାଇଁ କେବେ ଆସି କେବେ ଯାଏ ସେ ବୋଧେ ଜାଣନ୍ତି ନାହିଁ । ସବୁଦିନେ ବିଦ୍ୟାଳୟ ପ୍ରାଙ୍ଗଣରେ ହସ ହସ ମୁହଁରେ ଛ'ହାତର ଖଦଡ଼ ଲୁଗା, ଆଉ ଦି'ହାତର ଚାଦର ଖଣ୍ଡେ ଦେହରେ ପକେଇ ସେ କାମ କରୁଥାନ୍ତି । କେଉଁ ଛାତ୍ର ସ୍କୁଲ କମେଇ ଆଳସ୍ୟପରାୟଣ ହୋଇ ଅନୁପସ୍ଥିତ ରହୁଛି, ସେ କଥା ସେ ମୁହଁ ଦେଖିଲେ ଜାଣି ନିଅନ୍ତି । ସ୍କୁଲ ନ ଯାଇ ଅନୁପସ୍ଥିତ ରହିବା କଥାଟା ଏବଂ ଠିକ୍ ସମୟରେ ଶ୍ରେଣୀରେ ଉପସ୍ଥିତ ନ ହୋଇପାରିବାଟା ପଣ୍ଡିତ ମହାଶୟଙ୍କ ଆଖିରେ ଗୁରୁତର ଅପରାଧ ବୋଲି ପରିଗଣିତ ହେଉଥିଲା । ଏଥିପାଇଁ ପ୍ରତ୍ୟେକ ଛାତ୍ର ଯେତେ ଯାହା ଅସୁବିଧା

ହେଉ ପଛକେ କପରି ସ୍କୁଲକୁ ନିୟମିତ ଆସିପାରିବେ ଠିକ୍ ସମୟରେ, ସେଥିପ୍ରତି ସଜାଗ ରହୁଥିଲେ। ମଫସଲ ସ୍କୁଲମାନଙ୍କ ବିଲରାସ୍ତା ଦେଇ ବର୍ଷା ଦିନରେ ଯିବା ଆସିବା କରିବାକୁ ଛାତ୍ରମାନଙ୍କ ବେଶୀ କଷ୍ଟ ହୁଏ। ମାତ୍ର ପଣ୍ଡିତଙ୍କ ଉପରେ ବର୍ଷା ଝଡ଼ ସାମାନ୍ୟ ମନେ ହେଉଥିଲା। ମୋର ମନେଅଛି ବଡ ବଡ ଗଛ ସବୁ ଭାଙ୍ଗି ଦିନେ ଦିନେ ତଳେ ପଡ଼ଯାଏ, ପାଣି ପବନ ଏମିତି ଅମାନିଆ ହୋଇ ଝଡ଼ ଆଡ଼କୁ ଗତିକରେ ଯେ ଛତା ଧରି ବାଟ ଚାଲିବା ଅସମ୍ଭବ ହୁଏ। ତହିଁରେ ଖଜୁରି ପୋଲ ଉପରି ଦେଇ କେନାଲ ପାରି ସାତ ଆଠଖଣ୍ଡ ବିଲ ପାରି ହୋଇ ଦିନେ ଦିନେ ସ୍କୁଲ ଯିବାକୁ ଇଚ୍ଛା ହୁଏନା। ଶିକ୍ଷକମାନେ ମଧ୍ୟ ଅତ୍ୟଧିକ ବର୍ଷାଦିନରେ ସ୍କୁଲ କରିବାକୁ ଚାହାନ୍ତି ନାହିଁ। ମାତ୍ର ଠିକ୍ ସମୟକୁ କି ଶିକ୍ଷକ, କି ଛାତ୍ର ସମସ୍ତେ ଯାଇ ହାଜର। ସେଇ ଗୋଟିଏ କଥା ସମସ୍ତଙ୍କ ମନରେ— ପଣ୍ଡିତେ କଣ ଭାବିବେ ? ଅଥଚ କୌଣସି ଦିନ ସେ କାହାକୁ ଦଣ୍ଡ ବା ଭର୍ତ୍ସନା କରିବାର ଆମେ ଜାଣିନାହୁଁ। ତାଙ୍କର ଉପସ୍ଥିତି ଯେ ସମସ୍ତଙ୍କୁ କର୍ମରତ ହେବାପାଇଁ ପ୍ରେରଣା ଓ ଉତ୍ସାହ ଉଦ୍ଦୀପନା ଦେଉଥିଲା, ଏଥିରେ ସନ୍ଦେହ ନାହିଁ।

ଥରେ ମୋର ମନେ ଅଛି, ସ୍କୁଲରେ ପହଞ୍ଚିବାକୁ ଆମର ଦଶମିନିଟ୍ ଖଣ୍ଡେ ଡେରି ହୋଇ ଯାଇଥାଏ। ପଣ୍ଡିତେ କେଉଁଠି ଦେଖି ନେବେ ବୋଲି ଆମେ ତର ତର ହୋଇ ପଛପଟ ରାସ୍ତା ଦେଇ ସ୍କୁଲ ଭିତରକୁ ପଶି ଯାଉଁ ଯାଉଁ, ସେ କେଉଁଠି ଥିଲେ କେଜାଣି ସାମନା ସାମନି ଆସି ଠିଆ ହୋଇ ଗଲେ। ଆମେ ଯେତେଜଣ ଥିଲୁ ସେତେବେଳରେ ତାଙ୍କ ମୁହଁକୁ ଅନେଇବାର ସାହସ ନଥାଏ। ଆମେ ମୁହଁ ପୋତି ଠିଆ-ହୋଇଗଲୁ ଏବଂ ମନକୁ ମନ କହିଲୁ ବାପାଙ୍କ ଘଣ୍ଟା ଖରାପ ହୋଇଯାଇଥିବାରୁ ସମୟ ଜାଣିପାରିଲୁ ନାହିଁ। ସେ ହସିଦେଲେ ଏବଂ ପାଖକୁ ଆସି ଆମ ସମସ୍ତଙ୍କ ମୁଣ୍ଡରେ ହାତ ବୁଲେଇ କହିଲେ—ତମେ ସବୁ ଏଇ ମାଟି ପାଣିର ପିଲା ନାଁରେ। ବିଦ୍ୟାସାଗର ଦେଶର ପିଲା। ଘଣ୍ଟା ନ ହେଲେ ସମୟ ଜାଣି ପାରୁନ କହିବାଟା କଣ ଉଚିତ୍ ?" ତାପରେ ଘର ଚାଳର ଛାଇ ଦେଇ ଏବଂ ଖରା ତେଜକୁ ଅନେଇ କେମିତି ସମୟ ଜାଣିବାକୁ ହେବ ସେ ଆମକୁ ସେଦିନ ବୁଝାଇଥିଲେ। କାଲିପରି ଲାଗୁଛି ସେ ସବୁକଥା।

ସେତେବେଳେ ଛୁଆଁ ଅଛୁଆଁ ଭେଦଭାବଟା କାଗଜ କଲମରୁ ଉଠି ଯାଇଥିଲେବି ମନରୁ ଆଉ ସମାଜର ସାଧାରଣ ଜୀବନରୁ ଆଦୌ ଉଠି ନଥିଲା। ଆଖପାଖରେ ଥିବା ଅନେକ ହରିଜନ ପିଲା ସ୍କୁଲରେ ଅଲଗା ହୋଇ ବସୁଥିଲେ। ବଡ଼ ଘରର ଏବଂ ବ୍ରାହ୍ମଣ ଘରର ପିଲାମାନେ ହରିଜନ ପିଲାଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ। ଅଧିକାଂଶ ପିଲାଙ୍କୁ ସ୍କୁଲରୁ ଘରକୁ ଯାଇ ଲୁଗା ବଦଳି ଗାଧୋଇବାକୁ ହେଉଥିଲା। ଆମ ଗାଁ ଚନ୍ଦୋଳରୁ ଆମେ ଧୋବା, ପାଣ, କଣ୍ଡରା କରଣ ଓ ଚଷା ସବୁ ମିଶି ଏକ ସଙ୍ଗରେ ଡକାଡକି ହୋଇ ସ୍କୁଲକୁ ଯିବାର ମନେଅଛି। ଗାଁ ମୁଣ୍ଡରେ ପାଣ ବସ୍ତିରୁ ଗୁରୁଚରଣ ଜେନାର ଝିଅ ଚମ୍ପା ଆମ ସଙ୍ଗରେ ପ୍ରତିଦିନ ସ୍କୁଲକୁ ଯିବା ଆରମ୍ଭ କଲା। ସେ ତଳ କ୍ଲାସରେ ପଢୁଥାଏ। ଆମ ଗାଁ ନିମ୍ନ-ପ୍ରାଥମିକ ସ୍କୁଲରେ ପଢ଼ିଲାବେଳେ ସେ ସବୁ ଛାତ୍ରଙ୍କ ଠାରୁ ଅଲଗା ହୋଇ ବସୁଥିଲା। ଏ କଥାର ସମ୍ମୁଖାସମ୍ମୁଖୀ ପ୍ରତିବାଦ କରିବାକୁ ଆମର ସାହସ କୁଳଉ ନ ଥିଲା। ମାତ୍ର ଆମେ ତାକୁ ଲୁଚି ଲୁଚି ଛୁଉଁଥାଉ ଏବଂ ତା ପଛକୁ ପଛ ଠାକୁର ଘର ଆଉ ଗୋଷେଇ ଘରକୁ ପଶୁଥାଉଁ। ମନେ ମନେ ଭାବୁଥାଉ, ଦେଖିବା କଣ ଅନିଷ୍ଟ ହେଉଛି। କ୍ରମଶଃ କଥାଟା ଜଣା ପଡ଼ିଲା ଏବଂ ସେଥିପାଇଁ ଅନେକ ଭର୍ତ୍ସନା ସହିବାକୁ ହେଲା ମଧ୍ୟ। ସେ ଯା' ହେଉ ହାଇସ୍କୁଲରେ ଚମ୍ପା ଓ ଓ ଅନ୍ୟ ହରିଜନ ପିଲା ଯେଉଁଠି ବସିଲେ ବି ଦେହକୁ ଦେହ ଛୁଆଁଉ ନ ଥିଲେ। କଥାଟା ଆମକୁ ବଡ଼ ଅପସନ୍ଦ ଅଡୁଆ ଲାଗିଲେ ବି କିଛି କରିବାର ଶକ୍ତି ନ ଥିଲା। ବୁଦ୍ଧି ବି ଦିଶୁ ନ ଥିଲା।

ଥରେ ସରସ୍ୱତୀ ପୂଜାକୁ ସ୍କୁଲରେ ଫିଷ୍ଟ ହେଉଥାଏ, ପଣ୍ଡିତେ ବୁଲି ବୁଲି ଦେଖୁଥାନ୍ତି। ପତର ପଡ଼ିଲା ସାରି ସାରି। ପଣ୍ଡିତେ ନିର୍ଦ୍ଦେଶ ଦେଉଥାନ୍ତି

କେମିତି କଏ ବସିବେ ଆଉ କାହା ସାଙ୍ଗକୁ କଏ । କଳରୋଳ ଆନନ୍ଦ ଖୁସିରେ ସମସ୍ତେ ଫାଟି ପଡ଼ୁଥାନ୍ତି । ଖିରି ହାପୁଡ଼ା ହାପୁଡ଼ିରେ ପ୍ରତି ପିଲାର ହାତ ଆଖପାଖ ପତରକୁ ଚାଲି ଯାଉଥାଏ—ଛଡ଼ାଛଡ଼ି ଖିଆରେ ହୃଦୟକୁ ହୃଦୟ ଛୁଇଁ ଯାଉଥାଏ—ମନଗଢ଼ା ମିଛ ସଂସ୍କାର ଗଡ଼ଗଡ଼େଇ ଯାଉଥାଏ ତଳକୁ ତଳ । ମୋର ମନେ ଅଛି ଚମ୍ପା ଓ ମୁଁ ଏକା ପତ୍ରରେ ଖାଇ ବସିଥିଲୁ । ପଣ୍ଡିତଜୀ ଠିଆ ହୋଇ ଅନେଇଥାନ୍ତି—ଗଭୀର ଆନନ୍ଦ ପ୍ରଶାନ୍ତିରେ ତାଙ୍କ ଆଖି ଛଳଛଳେଇ ଉଠୁଥାଏ । ମୁହଁ ଖୋଲି କଥା କଥାକେ ସେ ଅନ୍ୟ ପଣ୍ଡିତମାନଙ୍କ ପରି ଶ୍ଳୋକ ବୋଲି ଆଶୀର୍ବାଦ କରନ୍ତି ନାହିଁ —କି ଈଶ୍ୱରଙ୍କୁ କଥା କଥାକେ ଡାକ ପକାନ୍ତି ନାହିଁ । ତାଙ୍କ ମୁହଁଟି ଯେମିତି ଆମର ଦର୍ପଣ ଥିଲା । ସାମାନ୍ୟ ହସି ଦେଇ ହେଡ଼ମାଷ୍ଟ୍ରଙ୍କୁ ଅନେଇ ସେ କହିଥିଲେ—'ବୁଝିଲ ସୁରବାବୁ ! ଏହାକୁଇ କହନ୍ତି ସ୍ୱର୍ଗ । ଏତେଦିନେ ସ୍ୱର୍ଗ ଏଠାକୁ ଓହ୍ଲାଇ ଆସିଲା ।'

ସତ କଥା । ଈଶ୍ୱର କଣ ଖାଲି ସ୍ୱର୍ଗରେ ଥାନ୍ତି, ନା, ସ୍ୱର୍ଗ କଣ ଖାଲି ଆକାଶରେ ଝୁଲୁଥାଏ ?

ଏତେସବୁ କଥା ସତ୍ତ୍ୱେ କେହି ପଣ୍ଡିତଜୀଙ୍କ ସାମନା ହେବାକୁ, ବିଶେଷତଃ ଛାତ୍ର ଛାତ୍ରୀମାନେ ଚାହୁଁ ନ ଥିଲେ । ତାଙ୍କର ସବୁବେଳେ ଖାଲି ପାଠ କଥା । କାହାକୁ କେତେବେଳେ କେଉଁ ପାଠ ପଚାରି ଦେବେ, ତାର ଠିକଣା ନାହିଁ । ଆଉ ନ କହି ପାରିଲେ ? ଚାରିଆଡ଼େ ଖବରଟା ବ୍ୟାପିଯିବ—ସମସ୍ତଙ୍କ ଘର ଆଉ ବାପମାନଙ୍କ ପର୍ଯ୍ୟନ୍ତ ଖବର ଯିବ । ପଣ୍ଡିତଙ୍କ ତୁଣ୍ଡରୁ କଥାଟା ବାହାରିଛି ମାନେ ଆଉ ଅବିଶ୍ୱାସର କିଛି କାରଣ ନାହିଁ । ଏଥିପାଇଁ ସମୟେ ସମୟେ ଅନେକ ଛାତ୍ର ଏକାଠି ହୋଇ, ମେଳ କରି କଡ଼ା କଡ଼ା ପ୍ରଶ୍ନ ସବୁ ଠିକ୍ କରି ରଖିଥାନ୍ତି, ଯେମିତି ପଣ୍ଡିତଜୀ ସେମାନଙ୍କ ଓଲଟା ପ୍ରଶ୍ନ ବାଣରେ କାବୁ ହୋଇଯିବେ । ତାଙ୍କୁ କାବୁ କରିବା ତ ଦୂରର କଥା, ତାଙ୍କୁ ଦେଖୁ ଦେଖୁ ପିଲାଏ କାବୁ ହୋଇ ଯାଉଥିଲେ—ସତେକି କଏ କାଉଁରି କାଠି ଛୁଆଁଇ ଦେଇଯାଏ ସେମାନଙ୍କୁ । ଥରେ ଅଧେ ଆମେ ସବୁ କଥାବାର୍ତ୍ତା ହେଉଥାଉ, ଯେତେବେଳେ ଟ୍ରେଣ୍ଡ୍ ବି. ଏ. ଆଉ ଏମ୍. ଏ. ପାଶ୍ ବାଲା ହେଡ଼ମାଷ୍ଟ୍ର ସ୍କୁଲକୁ ଆସିବେ ସେତେବେଳେ ତ ପଣ୍ଡିତେ ବଡ଼ ହଇରାଣରେ ପଡ଼ିବେ । ଆମକୁ ଆଉ ପାଠ ପଚାରି ହଇରାଣ କରିବାକୁ ସାହସ କରିବେ ନି । ମାତ୍ର ସେ କଳ୍ପନା କଳ୍ପନାରେ ରହିଗଲା । ପନ୍ଦରରୁ ପଚିଶ ପିଲା ସଂଖ୍ୟା, ସରକାରୀ ସାହାଯ୍ୟ, କୋଠାର ଆୟତନ ଓ ଡିଗ୍ରୀଧାରୀ ଶିକ୍ଷକଙ୍କ ସଂଖ୍ୟା ବଢ଼ିବାରେ ଲାଗିଥିଲା ସତ, କିନ୍ତୁ ପଣ୍ଡିତଜୀଙ୍କ ପାଠ ପଚାରିବା କମିଲା ନାହିଁ ବରଂ ବୃଦ୍ଧି ପାଇଥିଲା । ସବୁ ପାଠ ପଢ଼ୁଆ ବି. ଏ. ଆଉ ଏମ୍. ଏ. ଶିକ୍ଷକମାନେ ତାଙ୍କୁ ଦେଖିଲେ ମୁଣ୍ଡ ନୁଆଁଇ ବାଟ ଚାଲୁଥିଲେ ।

ଏମିତି ଅନେକ ଶ୍ରେଷ୍ଠ ଶ୍ରେଷ୍ଠ କଥା ଓ ସ୍ମୃତି ପଣ୍ଡିତଜୀଙ୍କୁ ନେଇ ମନରେ ଏବେ ବି ଅମ୍ଳାନ ରହିଛି । ଲେଖି ବସିଲେ ପୋଥିଟିଏ ହେବ । ତାଙ୍କର ବହୁ ଛାତ୍ର ଆଜି ଓଡ଼ିଶା ଓ ଓଡ଼ିଶା ବାହାରେ ରହିଛନ୍ତି । କେବେ କେମିତି ଏକାଠି ହେଲେ ଅତୀତର ସ୍ମୃତି ଆସି ଠୁଳ ହୋଇଯାଏ । ଆଉ ତା' ଭିତରେ ଭାସିଉଠେ ପଣ୍ଡିତଜୀଙ୍କର ସଦା ହସହସ ପ୍ରଶାନ୍ତ ମୁଖମଣ୍ଡଳ । ସ୍କୁଲ ଛାଡ଼ି ଦେଲେଣି ୧୯୫୩ରୁ, ପଣ୍ଡିତ ମହାଶୟ ଏବେ ଅଧିକାଂଶ ସମୟରେ କଟକରେ ରହୁଛନ୍ତି—ଶିକ୍ଷା, ଶିକ୍ଷକ ଓ ଛାତ୍ର ସମ୍ପର୍କୀୟ ଅନୁଷ୍ଠାନ ଓ ଉନ୍ନତି ମୂଳକ କାର୍ଯ୍ୟ ସହ ଜଡ଼ିତ ହୋଇ । କେତେ ଝଡ଼ ଝଞ୍ଜା ସେ ଜୀବନ ଦେଇ ଅତିବାହିତ କରି ସାରିଲେଣି । କିନ୍ତୁ ମାତ୍ର ତାର ଆଭାସ ମିଳେ ଆମକୁ ସମ୍ବାଦ ପତ୍ର ଜରିଆରେ । ନିମ୍ନ ମାଧ୍ୟମିକ ସ୍କୁଲ ଶିକ୍ଷକ ଓ ଶିକ୍ଷାର ମାନ ପାଇଁ ତାଙ୍କର ଅକ୍ଳାନ୍ତ ପରିଶ୍ରମ, ବିଭିନ୍ନ ଅନୁଷ୍ଠାନ ଜରିଆରେ ତାଙ୍କର ଆନ୍ଦୋଳନ ଆମକୁ ପରୋକ୍ଷରେ ତାଙ୍କ ଅବିରତ ସଂଗ୍ରାମର ସମ୍ବାଦ ଦେଇଥାଏ । ସେଇ କର୍ମମୟ ଜୀବନ ଭିତରେ ସେ ପୁଣି ଶିଶୁମାନଙ୍କ ପାଇଁ ଉପାଦେୟ ପୁସ୍ତକ ଲେଖିଛନ୍ତି ଅନେକ । ଦେଶର ଗଣ୍ୟମାନ୍ୟ ଶିଶୁ ସାହିତ୍ୟିକ ମାନଙ୍କ ମଧ୍ୟରେ ସେ ଅନ୍ୟତମ । ସେ ସବୁ ଉପରେ ମତ ବ୍ୟକ୍ତ କରିବାର ସ୍ପର୍ଦ୍ଧା ମୁଁ କରୁନାହିଁ ।

ଖାଲି ନିଜଗାଁରେ ସ୍କୁଲଟିଏ ବସାଇ ଦେବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ସମଗ୍ର ଦେଶରେ ଶିକ୍ଷା ପ୍ରସାର ପାଇଁ, ବିଶେଷତଃ ନିମ୍ନ-ମାଧ୍ୟମିକ ଶିକ୍ଷା ପାଇଁ ତାଙ୍କର ଉଦ୍ୟମ ଏ ଜାତି ଭୁଲି ପାରିବ ନାହିଁ । ବ୍ୟବସାୟ ପାଇଁ ବା ଜୀବିକା ନିର୍ବାହ ପାଇଁ ସେ ଶିକ୍ଷକ ହୋଇ ନ ଥିଲେ କିମ୍ବା ନାମ ଅର୍ଜନ ପାଇଁ ସ୍କୁଲ ପ୍ରତିଷ୍ଠା କରି ନ ଥିଲେ । ଶିକ୍ଷା ତାଙ୍କର ପ୍ରାଣ, ଶିକ୍ଷକତା ଯେପରି ତାଙ୍କର ଧର୍ମ । ଶିକ୍ଷକର ସମ୍ମାନରକ୍ଷା ତାଙ୍କର ବଞ୍ଚିବାର ଲକ୍ଷ୍ୟ ବୋଲି ସେ ମୁହଁରେ କେବଳ କହି ନାହାନ୍ତି, ଜୀବନ ଦେଇ ସେ ତାର ପ୍ରମାଣ କରିଯାଇଛନ୍ତି ।

ମୁଁ ଏକଥା ଲେଖିବାର ଉଦ୍ଦେଶ୍ୟ ନୁହେଁ ଯେ, ମୁଁ ତାଙ୍କର ଜୀବନ ଇତିହାସ ସହିତ ଜଡ଼ିତ ରହିଛି । ମୁଁ ଯେଉଁ କ୍ଷୁଦ୍ର ଝରଣାଟି ଦେଖିଥିଲି, ସେ ତ ଆଜି ଏକ ବିରାଟ ସମୁଦ୍ର । ମାତ୍ର ତିନିବର୍ଷର ସମ୍ପର୍କ ଭିତରେ ମୁଁ ଯେତିକି ଜାଣିଥିଲି—ସେଥିରୁ କିଞ୍ଚିତ୍ ମାତ୍ର କହିଛି । ମୋର ଦୁଃଖ, ମୁଁ ତାଙ୍କର ଛାତ୍ରୀ ହିସାବରେ ଯେତେ ଗର୍ବ କରିଛି, ତାଙ୍କ କଥା ସ୍ମରଣ କରି ଯେତେ ଉତ୍ସାହ ପାଇଛି, ସେଥିରୁ କାଣିଚାଏ ଖର୍ଚ୍ଚ କରି ତାଙ୍କର କୁଶଳ ଜିଜ୍ଞାସା କରିବାକୁ ଯାଇନାହିଁ । ମୋ ପରି ତାଙ୍କର ଅନେକ ଛାତ୍ରଙ୍କର ସେଇ ଅନୁଭୂତି ଆଉ ସେଇ ବେଦନା । ସେ ସବୁ କହି ଲାଭ ନାହିଁ । ଆଜି ତାଙ୍କର ଜୟନ୍ତୀ ପାଇଁ ଉତ୍ସବ ସମାରୋହ ହେବାକୁ ଯାଉଛି । ଏହାଠାରୁ ବଳି ସୌଭାଗ୍ୟ ବା ଗର୍ବର ବିଷୟ, ତାଙ୍କର ଛାତ୍ରଛାତ୍ରୀମାନଙ୍କ ପକ୍ଷେ ଆଉ କଣ ଥାଇପାରେ ? ଦୋହଲି ହାଇସ୍କୁଲ ଗୁଡ଼ି ଏବେ ସେ ସମଗ୍ର ଓଡ଼ିଶା ସାରା ବ୍ୟାପ୍ତ ହୋଇ ଯାଇଛନ୍ତି । ଆମର ପ୍ରିୟ ପଣ୍ଡିତେ ଆଜି ସମସ୍ତଙ୍କର ସମ୍ମାନାସ୍ପଦ "ପଣ୍ଡିତଜୀ" । ଭଗବାନ ତାଙ୍କୁ ନୀରୋଗ ଓ ଦୀର୍ଘାୟୁ କରନ୍ତୁ—ଏହା ହିଁ ଆଜିର ପ୍ରାର୍ଥନା ।

● ରିଡର-ଇନ୍-ଏକନମିକସ୍
ରମାଦେବୀ ମହିଳା କଲେଜ
ଭୁବନେଶ୍ବର, ପୁରୀ



# "କଣ ଏତିକିରେ ରହିଗଲ ?"

**ଶ୍ରୀ ଉମାନାଥ ମହାନ୍ତ**

୧୯୫୩ ମସିହା କଥା, ନୂଆ କରି ଆମ ଗାଁ ଖଣ୍ଡସାହିରେ ହାଇସ୍କୁଲ ଗଢ଼ା ହେଉଥାଏ । ଆମେ ସେଠାରେ ଦଶମ ଶ୍ରେଣୀରେ ଛ' ମାସ ପର୍ଯ୍ୟନ୍ତ ପଢ଼ି ସାରିଲାବେଳକୁ କର୍ମକର୍ତ୍ତା ଆଉ ସ୍କୁଲ ଚଳେଇ ପାରିଲେ ନ । ଦଶମ ଶ୍ରେଣୀକୁ ଭାଙ୍ଗି ଦେଇ କେବଳ ଅଷ୍ଟମ ଓ ନବମ ଶ୍ରେଣୀ ଦୁଇଟି ରଖିବା ସ୍ଥିର ହେଲା । ଫଳରେ ଦଶମ ଶ୍ରେଣୀର ଆମେ ଦଶ, ବାର ଜଣ ପିଲାଙ୍କର କପାଳ ଫାଟିଲା । ଅନ୍ୟ ଜାଗାରେ ଯାଇ ପଢ଼ାପଢ଼ି କରିବା ଲାଗି ଅବଶ୍ୟ ଅନ୍ୟମାନଙ୍କ ତୁଳନାରେ ମୋର ଅଧିକ ସୁବିଧା ଥିଲା । କାରଣ ମୋ ବଡ଼ଭାଇ ସେତେବେଳକୁ ବି. ଏସ. ସି. ପାଶ୍ କରି ଦୋହଲା ହାଇସ୍କୁଲରେ ଶିକ୍ଷକ । ତେଣୁ ଗାଁ ମଜା ଛାଡ଼ି ମୋତେ ଦୋହଲା ଯାଇ ହଷ୍ଟେଲରେ ରହିବା ସଙ୍ଗେ ସଙ୍ଗେ ସେଠାରେ ଘରୋଇ ଭାବରେ ଦଶମ ଶ୍ରେଣୀରେ ପଢ଼ାପଢ଼ି କରିବାକୁ ହେଲା । ସେତେବେଳେ ସୁଶୀଲ ଚନ୍ଦ୍ର ସରକାର ଆମର ହେଡ଼ମାଷ୍ଟର । ଏଲାହାବାଦରୁ ଗଣିତରେ ଫାଷ୍ଟ କ୍ଲାସ ଏମ୍. ଏ. । ମୋର ଗଣିତ ଶାସ୍ତ୍ରରେ ଆଦୌ ପାରଦର୍ଶିତା ନ ଥିବା ସତ୍ତ୍ୱେ, କେଜାଣି କାହିଁକି ସୁଶୀଲ୍ ବାବୁ ମୋତେ ବେଶ୍ ସ୍ନେହ କରୁଥିଲେ । ଯଦିଓ ଅଙ୍କ ଆସୁ ନଥିବାରୁ ମୋତେ ଅଙ୍କ କ୍ଲାସରେ 'ଗଜ' ବୋଲି କହୁଥିଲେ, ଏକାଦଶ ଶ୍ରେଣୀରେ ଫାଷ୍ଟ ଆଡମିସନ୍‌ର ନିୟମ ନ ଥିଲେ ସୁଦ୍ଧା ତାଙ୍କର ଓ ମୋ ଭାଇଙ୍କର ଉଦ୍ୟମ ଫଳରେ ଇନ୍‌ସ୍‌ପେକ୍ଟରଙ୍କ ଠାରୁ ଏଥିଲାଗି ବିଶେଷ ଅନୁମତି ମିଳିଲା ଏବଂ ମୁଁ ଏକାଦଶ ଶ୍ରେଣୀରେ ନାମ ଲେଖାଇ ଦୋହଲା ମଡ଼େଲ ହାଇସ୍କୁଲରେ ବିଧିବଦ୍ଧ ଛାତ୍ର ରହିଲି ।

କେବେ, ଠିକ୍ ମନେ ପଡ଼ୁନି । ଏଇ ଦଶମ, ଏକାଦଶ ଶ୍ରେଣୀର ପାଠ ପଢ଼ା ଭିତରେ କେବେ ପଣ୍ଡିତଙ୍କ ସହିତ ସାକ୍ଷାତ ହୋଇଥିଲି । ଏ 'ପଣ୍ଡିତେ' ଅନ୍ୟ କେହି ନୁହଁନ୍ତି—ଦୋହଲା ମାଇନର ସ୍କୁଲ ଓ ହାଇସ୍କୁଲର ଅନ୍ୟତମ ପ୍ରାଣ-ପ୍ରତିଷ୍ଠାତା ଶ୍ରୀ ବନମାଳୀ ବ୍ରହ୍ମଚାରୀ । ଛୁଆଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଡାକନ୍ତି 'ପଣ୍ଡିତେ' । ପଣ୍ଡିତଙ୍କ ସଙ୍ଗେ କେଉଁ ଦିନ ବା କେଉଁ ପରିସ୍ଥିତିରେ ପ୍ରଥମ ଆଳାପ ହୋଇଥିଲି— ଏବେ ଆଉ ମନେ ନାହିଁ । କିନ୍ତୁ ଆମେ ସ୍କୁଲ ହଷ୍ଟେଲରେ ଥିଲାବେଳେ କେତେଥର ପଣ୍ଡିତଙ୍କୁ ଭେଟିଛୁଁ ଓ ତାଙ୍କ ସହିତ ଏଣୁ ତେଣୁ ବିଶେଷ କରି ଆମ ପଢ଼ାପଢ଼ି ସମ୍ବନ୍ଧରେ କଥାବାର୍ତ୍ତା କରିଛୁଁ । ସେତେବେଳକୁ ପଣ୍ଡିତେ ଦୋହଲା ହାଇସ୍କୁଲ ଛାଡ଼ି ଦେଲେଣି । ସେ କେଉଁଠି କଣ କରୁଥାନ୍ତି । ମଝିରେ ମଝିରେ ନିଜ ଘରକୁ ଆସନ୍ତି । ଘରକୁ ଆସିଲେ ଆମକୁ ଭେଟନ୍ତି ।

ହାଇସ୍କୁଲ ଖେଳ ପଡ଼ିଆକୁ ଲାଗି ତାଙ୍କ ଘର । ଘରେ ଏକମାତ୍ର ଝିଅ ଓ ଅନ୍ୟ ଜଣେ ସମ୍ପର୍କୀୟା ବୁଢ଼ୀ । ବାସ୍ —ଏତିକି ହେଲେ ପଣ୍ଡିତଙ୍କ ପରିବାର । ସ୍ତ୍ରୀ କେଉଁ କାଳରୁ ସେପାରିକି ଚାଲିଗଲେଣି । ହେଲେ ପଣ୍ଡିତେ ଆଉ ନୂଆ ସଂସାର କରି ନାହାନ୍ତି । ଆମର

ଏକାଦଶ ଶ୍ରେଣୀ ବେଳକୁ ପଣ୍ଡିତଙ୍କ ଝିଅର ମଧ୍ୟ ବା'ଘର ସରିଗଲାଣି । ପଣ୍ଡିତେ ତ ଘରେ ନଥାନ୍ତି । ଆମ ସ୍କୁଲ ପିଲାଏ ବେଶ୍ ଆରାମରେ ତାଙ୍କ ଘରେ ମେସ୍ କରି ରହି ଥାଆନ୍ତି ।

ଡୋହଲ ସ୍କୁଲରେ ପଢ଼ିଲାବେଳେ ଆମ ପିଲାଙ୍କ ଭିତରେ, ବିଶେଷ କରି ହଷ୍ଟେଲ ପିଲାଙ୍କ ଭିତରେ ଅନେକ ସମୟରେ ପଣ୍ଡିତଙ୍କ ବିଷୟରେ ବହୁତ ଚର୍ଚ୍ଚା ହୁଏ । ମୁଁ ତ ନୂଆ କରି ସେଠାକୁ ଯାଇଥାଏ । ତେଣୁ ମୁଁ କେବଳ ଶ୍ରୋତା । ପୁରୁଣା ଶ୍ରେଣୀବର୍ଷିଆ ପିଲାସବୁ ବକ୍ତା । କିଏ କେତେ ପ୍ରକାରେ ପଣ୍ଡିତଙ୍କୁ ଶବ୍ଦ କରନ୍ତି । ଆଜି ସେସବୁ କଥା ମନେ ପଡ଼ିଲେ ହସ ମାଡ଼େ । ତଥାପି ସେକାଳ ସ୍ମୃତିର ରୋମନ୍ଥନ କରିବାକୁ ବେଶ୍ ସୁଖ ଲାଗେ । ଥରେ ଗୋଟାଏ ଭାରି ମଜା ହେଲା । ଆମ 'ଷ୍ଟଡ଼ି ଆଓ୍ୱାର' ଭିତରେ କିଏ ଗୋଟିଏ ପିଲା କହିଲା—"ଶୁଣିଲଣି, ପଣ୍ଡିତେ କୁକୁଡ଼ା ଅଣ୍ଡା ଖାଆନ୍ତି ।" ଆମେ ଆଉ ପଢ଼ିବୁ କଣ ? ବେଶ୍ ଗୋଟାଏ ହସ ହେଲା । ଏକଥା ଶୁଣି ଆମେ ସବୁ ଅବାକ୍ । ପଣ୍ଡିତେ ପୁଣି ବ୍ରହ୍ମଚାରୀ ବୋଲେଇ କୁକୁଡ଼ା ଅଣ୍ଡା ଖାଆନ୍ତି ! ଯେଉଁ ପିଲା ଆମକୁ ଏକଥା କହିଥିଲା, ସିଏ ବୁଝେଇ ଦେଲା । ପଣ୍ଡିତଙ୍କର ବ୍ରହ୍ମଚାରୀ ଟାଇଟଲ ଥିଲେ ସୁଦ୍ଧା ଏବଂ ସିଏ ବ୍ରାହ୍ମଣ କୁଳରେ ଜନ୍ମ ନେଇଥିଲେ ମଧ୍ୟ ସେ କୁଆଡ଼େ ପ୍ରବଳ କୁସଂସ୍କାର ବିରୋଧୀ । ନିଜର ସ୍ୱାସ୍ଥ୍ୟ ଭଲ ରଖିବାକୁ ନିଜେ ତ ଅଣ୍ଡା ଖାଆନ୍ତି—ପୁଣି ଝିଅଟିକୁ ମଧ୍ୟ ଖୁଆନ୍ତି । ଆମେ କେହି ଏକଥା ବିଶ୍ୱାସ କଲୁନି । କେହି ବା କହିଲେ ଏସବୁ ଗୁଲ ଖଟି ଗପ । ପରେ ପଣ୍ଡିତଙ୍କ ସଙ୍ଗରେ ବହୁଥର ଦେଖା ସାକ୍ଷାତ ହୋଇଥିଲେ ମଧ୍ୟ ମୁଁ ଭରସି କରି କେବେ ଏକଥା ତାଙ୍କୁ ପଚାରିନି ।

ସେଇ ଡୋହଲ ସ୍କୁଲରେ ପଢ଼ୁଥିବା ସମୟରେ ପଣ୍ଡିତଙ୍କ ବିଷୟରେ ଏମିତି ବହୁତ କଥା ଶୁଣିଥିଲି । ଡୋହଲ ମାଇନର ଓ ହାଇସ୍କୁଲ ଗଢ଼ିବାରେ ସେ ବହୁତ ଶ୍ରମ ସ୍ୱୀକାର କରିଥିଲେ । ଘର ଘର ବୁଲି କାଠ, ବାଉଁଶ, ନଡ଼ା ମାଗିବା ଠାରୁ ଦରକାର ବେଳେ ଲୋକଙ୍କର ହାତ, ଓଠ ଏପରି କି ପାଦ ଧରିବା ପର୍ଯ୍ୟନ୍ତ ସବୁ କାମ ସେ କରି ଯାଉଥିଲେ । ନିନ୍ଦା ଅପବାଦକୁ ସେ ଦେହର ଚନ୍ଦନ କରିଥିଲେ । ସ୍କୁଲ ତିଆରି ଠାରୁ ସର୍ବସାଧାରଣ ରାସ୍ତା ତିଆରି ସବୁଥିରେ ସେ ଥିଲେ ଅଗ୍ରଣୀ । ଡୋହଲରେ ପାଠ ପଢ଼ିଲାବେଳେ ସେ ଏହିପରି ବହୁ ଉନ୍ନୟନ କାର୍ଯ୍ୟରେ ସଂପୃକ୍ତ ଥିବା ମୁଁ ଆଖିରେ ଦେଖିଛି ।

ମାଟ୍ରିକ୍ ପରୀକ୍ଷା ଦେଇସାରି ଡୋହଲ ଛାଡ଼ିଲି । ଆମ ଘରୁ ସେଠାକୁ ପ୍ରାୟ ସାତ ମାଇଲ ବାଟ । ତେଣୁ ଡୋହଲ ଛାଡ଼ିବା ସଙ୍ଗେ ସଙ୍ଗେ ତାର ସ୍ମୃତି ମଧ୍ୟ ସମୟ କ୍ରମେ କ୍ଷୀଣରୁ କ୍ଷୀଣତର ହୋଇ ଆସିଲା । ରେଭେନ୍ସା କଲେଜରେ ନାଁ ଲେଖେଇବା ପାଇଁ ସିଟ୍‌ଟିଏ ପାଇ ଥିଲେ ବି ପାରିବାରିକ ଅସୁବିଧା ଓ ପରିସ୍ଥିତି ଚାପରେ କଲେଜ ସ୍ୱପ୍ନକୁ ସେଇ ସ୍ୱପ୍ନ ଭିତରେ ରଖି ଗାଁ ମାଇନର ସ୍କୁଲରେ ଶିକ୍ଷକତା ଆରମ୍ଭ କଲି । ଏହି ଶିକ୍ଷକତା କରିବା ସମୟରେ ସ୍କୁଲର କୌଣସି କାର୍ଯ୍ୟ ନେଇ ବିଶେଷ କରି ପରୀକ୍ଷା ଲାଗି ପ୍ରଶ୍ନ ଆଣିବାକୁ ଯେତେବେଳେ କଟକ ଯାଏ, ସେତେବେଳେ ପଣ୍ଡିତେ ବରାବର ଭେଟ ପଡ଼ନ୍ତି । ସେତେବେଳକୁ ପଣ୍ଡିତେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଠନ କରି ତାର ସର୍ବୋଚ୍ଚ କର୍ମକର୍ତ୍ତା ଥାଆନ୍ତି । ସଂଘ ତରଫରୁ ବିଭିନ୍ନ ସ୍କୁଲକୁ ପ୍ରଶ୍ନ ମଧ୍ୟ ଯୋଗାଉଥାଆନ୍ତି । ତାପରେ, ପଣ୍ଡିତଙ୍କ ସହିତ ଭେଟ ହେବାର ସେତେବେଳେ ଆଉ ଗୋଟିଏ ସୁବିଧା ଥିଲା । ଆମ ଗାଁର ଉଦୟନାଥ ରଥ କଟକ ନିମଚୌଡ଼ି ଛକ ଉପରେ ଯେଉଁ ବହି ଦୋକାନ କରି ଥାଆନ୍ତି, ତା ନାଁ 'ସିଟି ବୁକ୍ ଡିପୋ' । ପଣ୍ଡିତେ ଓରଫ ଶ୍ରୀ ବନମାଳୀ ବ୍ରହ୍ମଚାରୀ ସେଇଠି ବେଶୀ ଉଠାବସା କରନ୍ତି । ମୁଁ କଟକ ଗଲେ ବରାବର ସେଇ ଦୋକାନରେ ତାଙ୍କ ସାଙ୍ଗରେ ଦେଖା ସାକ୍ଷାତ ହୁଏ । ଯେବେ ଦେଖାହୁଏ, ଅନ୍ୟାନ୍ୟ ଭଲ ମନ୍ଦ କଥାବାର୍ତ୍ତା ଭିତରେ ସେ ସବୁଥର ମୋତେ ଗୋଟିଏ କଥା ପଚାରନ୍ତି—"କଣ ଏଇ ମାଟ୍ରିକ୍‌ରେ ରହିଗଲ ।" ସେ କଥାଟି ପଡ଼ିଲେ ମୁଁ ଟିକିଏ ଲାଜେଇ ଯାଏ । କହେ, "ଆଉ କଣ କରିବି, କିଛି ତ ସୁବିଧା ହେଲାନି ।" ମୋର ଏ ଉତ୍ତର ମୋତେ ବି କେମିତି ଖାପ ଛଡ଼ା

ଲାଗେ । ସେ ପ୍ରସଙ୍ଗ ବଦଳେଇ କେମିତି ଅନ୍ୟ କଥା ପକେଇବ, ତାର ଉପାୟ ଖୋଜୁଥାଏ । ହେଲେ ଠିକ୍ କଥା ଶେଷ ବେଳକୁ ପୁଣି ମୋତେ ମନେ ପକେଇ ଦେଇଭଳି ପଣ୍ଡିତେ କହନ୍ତି, "ଦେଖ, ଆଉ ଟିକେ ଯୋଗ୍ୟତା ବଢ଼େଇବାକୁ ଚେଷ୍ଟା କର ।" ମୁଁ ମନେ ମନେ ବିରକ୍ତ ହୁଏ । 'ପଣ୍ଡିତେ ବରାବର ମୋର ଦୁର୍ବଳ ସ୍ଥାନରେ ଆଘାତ କରି କଣ ଲାଭ ପାଉଛନ୍ତି ?' —ମନେ ମନେ ଭାବେ । ଏମିତି ଅନେକ ଥର ହୋଇଛି । ତାଙ୍କୁ ରାସ୍ତା ଘାଟରେ କେଉଁଠି ଦେଖିଦେଲେ ନ ଦେଖିବାର ଅଭିନୟ କରି ବାଟ କାଟି ପଳେଇ ଯାଏ । ହେଲେ କଟକ ଗଲେ 'ସିଟି ବୁକ୍ ଡିପୋ'କୁ ମୋତେ ତ ନିଶ୍ଚୟ ଯିବାକୁ ହେବ । ଆଉ ସେଇଠି ବସିଥିବି, ପଣ୍ଡିତେ କୁଆଡ଼େ ଥିବେ, କାହୁଁ ବୁଲି ବୁଲି ଆସି ଅଚାନକ ସେଇଠି ପହଞ୍ଚିଯିବେ । ଆଉ ଖସି ଯିବାର ଉପାୟ ନ ଥାଏ ।

ଏମିତି ପଣ୍ଡିତଙ୍କୁ ଲୁଚାଛପା, ଲୁଚକାଳି ଓ ତାଙ୍କ ସାଙ୍ଗରେ ଛକା ପଞ୍ଜା ଭିତରେ ପାଞ୍ଚ ସାତବର୍ଷ କଟିଗଲା । ଯା' ଭିତରେ କେତେଥର ଯେ ପଣ୍ଡିତଙ୍କ-ଠାରୁ ସେଇ କଡ଼ାମିଠା ବୋଲଣା—"କଣ ଏତିକିରେ ରହିଗଲ"—ଶୁଣିବାକୁ ପଡ଼ିଛି ତାର ଠିକଣା ନାହିଁ ।

ମାଟ୍ରିକ୍ ପାଶ୍ କରିବାର ସାତବର୍ଷ ପରେ ମୋ ଜୀବନରେ ଗୋଟିଏ ନୂଆ ମୋଡ଼ ଫିଟିଲା । କଟକର ତତ୍କାଳୀନ ଖ୍ୟାତନାମା ପ୍ରଫେସର୍ କୋରଏନ୍ ଜ୍ୟାକବ୍ ଓ ତାଙ୍କର ସହଧର୍ମିଣୀ ଏଲିଜାବେଥ୍ ଜ୍ୟାକବ୍‌ଙ୍କ ସହାୟତା ଫଳରେ ମୋର ଶିକ୍ଷକତା ଭିତରେ ଘରୋଇ ଭାବରେ ପରୀକ୍ଷା ଦେଇ ଆଇ. ଏ. ପାଶ୍ କଲି ଦ୍ୱିତୀୟ ଶ୍ରେଣୀରେ । ମନରେ ଟିକେ ଗର୍ବ ଆସିଲା । ଭାବିଲି, ଏଥର ପଣ୍ଡିତେ ଦେଖା-ହେଲେ ମୋ ବାହାଦୁରି, ଆଉ ପାରିଲାପଣିଆ ଜଣେଇ ତାଙ୍କଠାରୁ ଖୁବ୍ ବାହାବା ନେବି । ସେଥର ପଣ୍ଡିତେ ଦେଖା ହେଲା ପରେ ଯେମିତି ତାଙ୍କ ଚିରାଚରିତ ଢଙ୍ଗରେ କହିବାକୁ ଆରମ୍ଭ କରିଛନ୍ତି—'କ'ଣ ଏତିକିରେ ରହିଗଲ ?' ମୁଁ ଚଟାପଟ କହି ପକାଇଲି,—"ନାହିଁ ଆଜ୍ଞା, ଆପଣଙ୍କ ଆଶୀର୍ବାଦରୁ ଘରୋଇ ଭାବରେ ଦ୍ୱିତୀୟ ଶ୍ରେଣୀରେ ଆଇ. ଏ. ପାଶ୍ କରିଗଲିଣି ।" ଭାବିଥିଲି, ପଣ୍ଡିତେ ଏକଥା ଶୁଣି ମୋର ଖୁବ୍ ତାରିଫ୍ କରିବେ । ମାତ୍ର ତା ବଦଳରେ ପଣ୍ଡିତେ ଟିକେ ଗମ୍ଭୀର ହୋଇ କହିଲେ—"ହଉ, ଆହୁରି ଚେଷ୍ଟା କର । ଇଏତ ଆରମ୍ଭ ମାତ୍ର । କ'ଣ ଏତିକିରେ ରହିଯିବ ?" ପଣ୍ଡିତଙ୍କ ମୁହଁରୁ ଉଚ୍ଛ୍ୱସିତ ପ୍ରଶଂସା ନ ଶୁଣି ସେଦିନ ମୋର ମନଟା ଫିକା ପଡ଼ି ଯାଇଥିଲା । ହେଲେ ସେ ଦିନୁ ଆଉ କେବେ ମୋ ଚେଷ୍ଟାର ଅଭାବ ରହିନି । ବହୁ ବାଧା ବିଘ୍ନ ଆସିଛି । ତଥାପି ସେଇ ବାଧା ବିଘ୍ନ ଓ ଦୁଃଖ କଷ୍ଟର ଦହନ ମଧ୍ୟରେ ମୁଁ ବି. ଏ. ପାଶ୍ କରିଛି—କୃତିତ୍ୱର ସହିତ ବି. ଇଡ଼. ପାଶ କରିଛି । ନିଜେ ହାଇସ୍କୁଲର ହେଡ଼ମାଷ୍ଟର ବି ହୋଇଛି । କିନ୍ତୁ ଯେବେ ପଣ୍ଡିତଙ୍କ ସହିତ ଦେଖାହୁଏ, ତାଙ୍କର ସେଇ ଏକା କଥା । "ଆଉ ଟିକେ ଚେଷ୍ଟା କର ଉପରକୁ ଉଠ । କଣ ଏତିକିରେ ରହିଯିବ ?"

ଯା'ଭିତରେ କଟକ ସିଟିବୁକ୍ ଡ଼ିପୋର ମାଲିକ ଉଦୟନାଥ ରଥଙ୍କର ଅକାଳ ବିୟୋଗ ଘଟିଲା । ତାଙ୍କ ସାନଭାଇ ବିଶ୍ୱନାଥ ରଥ ସିଟି ବୁକ୍ ଡ଼ିପୋକୁ କିଛିକାଳ ଚଳେଇବା ପରେ ତାଙ୍କର ମଧ୍ୟ କାଳ ହୋଇଗଲା । କ୍ରମେ ସିଟି ବୁକ୍ ଡ଼ିପୋ ଭାଙ୍ଗିଗଲା ଏବଂ ତା'ସହିତ କଟକରେ ପଣ୍ଡିତଙ୍କ ସହିତ ନିଶ୍ଚିତ ସାକ୍ଷାତର ସମ୍ଭାବନା ମଧ୍ୟ ଊଣା ହୋଇଗଲା । ଏଥି ମଧ୍ୟରେ ମୁଁ ହାଇସ୍କୁଲ ଶିକ୍ଷକତା ଛାଡ଼ି ପୁଣି ଘରୋଇ ଭାବରେ ଏମ୍. ଏ. ପାଶ୍ କରିବା ପରେ କଲେଜରେ ଚାରିବର୍ଷ ହେଲା ଅଧ୍ୟାପକ ହେଲିଣି । କିନ୍ତୁ ଏ ପାଞ୍ଚ,ଛ'ବର୍ଷ ଭିତରେ ଆଉ କେବେ ପଣ୍ଡିତଙ୍କୁ ଭେଟିନି । କେଜାଣି ପୁଣି ଦେଖା ହେଲେ ହୁଏତ କହିବେ,—"ଆଉ ଟିକେ ଚେଷ୍ଟା କର ପି. ଏଚ୍. ଡି. କରିନିଅ । କ'ଣ ଏତିକିରେ ରହିଗଲ ?"

● ଅଧ୍ୟାପକ
ଓଡ଼ିଆ ବିଭାଗ
ସାଲେପୁର କଲେଜ, କଟକ

# ଭାରତରେ ଗୁରୁବାଦର ପରମ୍ପରା

**ଶ୍ରୀ ସୁରେନ୍ଦ୍ର ମହାନ୍ତି**

ଭାରତରେ ଗୁରୁବାଦର ପରମ୍ପରା ଅତି ପ୍ରାଚୀନ। ଉପନିଷଦ ଯୁଗରୁ ଊନବିଂଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ଭାରତୀୟ ସଂସ୍କୃତି ଓ ଚଳଣିରେ ଏହା ଅତ୍ୟନ୍ତ ଗଭୀର ଓ ପ୍ରଭାବଶାଳୀ ଥିଲା। ସାମ୍ପ୍ରତିକ କାଳରେ ଗୁରୁଦେବସ ଅନୁଷ୍ଠାନ ମଧ୍ୟରେ ଏହି ପରମ୍ପରା ପରିହାସ ପରିଲକ୍ଷିତ ହେଲେ ହେଁ, ଏଥିରେ ସେହି ଭାବଧାରାର ସ୍ୱାକ୍ଷର ମଧ୍ୟ ସୁସ୍ପଷ୍ଟ।

ବୌଦ୍ଧ ସଂଘମାନ ଏକଦା ବୌଦ୍ଧଧର୍ମଚର୍ଯ୍ୟା ତଥା ବୌଦ୍ଧ ସଂସ୍କୃତିର ଗୋଟିଏ ଗୋଟିଏ ଶିକ୍ଷାପୀଠ ଥିଲା। ଭିକ୍ଷୁମାନେ ଏହି ସଂଘାଶ୍ରମମାନଙ୍କରେ ପ୍ରବେଶ କାଳରେ ବୟୋଜ୍ୟେଷ୍ଠ ଥେରା ବା ବୃଦ୍ଧ ଭିକ୍ଷୁମାନଙ୍କ ଦ୍ୱାରା ପ୍ରଥମେ ପରୀକ୍ଷିତ ହେଉଥିଲେ। ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ସେ ଜିଜ୍ଞାସା କରୁଥିଲେ—ପ୍ରବେଶାର୍ଥୀ ଭିକ୍ଷୁକର ଭିକ୍ଷା ପାତ୍ର ଅଛି କି ନାହିଁ, ଚୀବର ଅଛି କି ନାହିଁ, ଅର୍ଥାତ୍ ଭିକ୍ଷୁ ହେବାପାଇଁ ଯେଉଁ ସବୁ ଉପକରଣ ଆବଶ୍ୟକ ତାହା ତାଙ୍କଠାରେ ଅଛି କି ନାହିଁ। ଏ ସବୁ ପଦାର୍ଥ ତାଙ୍କଠାରେ ଅଛି ବୋଲି ଜାଣିଲେ, ସ୍ଥବିର ଅନ୍ୟ ପାଞ୍ଚଜଣ ଭିକ୍ଷୁକଙ୍କୁ ପ୍ରଶ୍ନ କରୁଥିଲେ—"ଆପଣମାନେ କୁହନ୍ତୁ, ଏହାଙ୍କୁ ସଂଘରେ ଗ୍ରହଣ କରାଯାଇ ପାରେ କି ନାହିଁ। ଆପଣମାନଙ୍କର କୌଣସି ଆପତ୍ତି ଥିଲେ ସ୍ପଷ୍ଟ କରି କହନ୍ତୁ। ନୋହିଲେ ନୀରବ ରହନ୍ତୁ।" ଏହିପରି ତିନିଥର ପ୍ରଶ୍ନ କରିବା ପରେ ଯଦି କୌଣସି ଆପତ୍ତି ଉଠି ନ ଥିଲା, ତାହା ହେଲେ ସ୍ଥବିର ଜିଜ୍ଞାସା କରୁଥିଲେ, ତୁମର ଉପାଧ୍ୟାୟ କିଏ ? ପ୍ରବେଶାର୍ଥୀ ଭିକ୍ଷୁ ଯେଉଁ ଉପାଧ୍ୟାୟଙ୍କ ନାମ ଉଲ୍ଲେଖ କରୁଥିଲେ, ତାଙ୍କର ହସ୍ତରେ ସ୍ଥବିର ସେହି ଭିକ୍ଷୁକଙ୍କୁ ସମର୍ପଣ କରୁଥିଲେ। ଏହି ଉପାଧ୍ୟାୟ ଥିଲେ ସଂଘାଶ୍ରମର 'ଗୁରୁ'। ଶିକ୍ଷାର୍ଥୀ ବା ଶ୍ରମଣ କ୍ରମେ ବୌଦ୍ଧ ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ କରିବା ପରେ, ଉପାଧ୍ୟାୟ ଓ ଶ୍ରମଣଙ୍କ ମଧ୍ୟରେ କୌଣସି ପ୍ରଭେଦ ରହୁ ନଥିଲା। ସଂଘର ଅଧିବେଶନରେ ଦୁଇ ଜଣଙ୍କର ସମାନ ଅଧିକାର ରହୁଥିଲା।

ମହାଯାନ ବୌଦ୍ଧମାନେ ଉପାଧ୍ୟାୟମାନଙ୍କୁ କହୁଥିଲେ, "କଲ୍ୟାଣ ମିତ୍ର"! ଅର୍ଥାତ୍ ଉପାଧ୍ୟାୟ ବୃତ୍ତିଗତଭାବରେ କେବଳ ଶିକ୍ଷାଦାତା ଗୁରୁ ନଥିଲେ, ସେ ମଧ୍ୟ ଥିଲେ ଇହଲୋକ ତଥା ପରଲୋକରେ ଶିଷ୍ୟଙ୍କ କଲ୍ୟାଣ କାମନାରେ ମିତ୍ର ସଦୃଶ। ବୌଦ୍ଧ ମହାଯାନ କ୍ରମେ ମନ୍ତ୍ର, ତନ୍ତ୍ର ଓ ଯୋଗାଚାର ଭିତ୍ତିକ ମନ୍ତ୍ରଯାନରେ ପର୍ଯ୍ୟବସିତ ହୋଇଥିଲା। ଏହାପରେ ଗୁରୁ ଶିଷ୍ୟ ସମ୍ପର୍କ ଖୁବ୍ କଡ଼ାକଡ଼ ହୋଇ ଉଠିଲା। ସେତେବେଳେ ତିନିଗୋଟି କଥା ଉଠିଲା— 'ଗୁରୁ-ପ୍ରସାଦ', 'ଶିଷ୍ୟ-ପ୍ରସାଦ' ଓ 'ମନ୍ତ୍ର-ପ୍ରସାଦ' ଅର୍ଥାତ୍ ଗୁରୁଙ୍କୁ ଭକ୍ତି କରିବାପାଇଁ ପଢ଼ିବ, ଶିଷ୍ୟଙ୍କୁ ସ୍ନେହ କରିବା ପାଇଁ ପଢ଼ିବ ଓ ମନ୍ତ୍ର ପ୍ରତି ଆସ୍ଥା ରଖିବା ପାଇଁ ପଢ଼ିବ। ମହାଯାନରେ ଉପାଧ୍ୟାୟ ଓ ଶ୍ରମଣଙ୍କ ମଧ୍ୟରେ ମିତ୍ର ସମ୍ପର୍କ କ୍ରମେ ବ୍ରାହ୍ମଣ୍ୟ ସଂସ୍କୃତିର ଆଚାର୍ଯ୍ୟ ଓ ଶିଷ୍ୟଙ୍କ ସମ୍ବନ୍ଧରେ ପର୍ଯ୍ୟବସିତ ହେଲା।

ବଜ୍ର ଯାନରେ ଗୁରୁ ହୋଇ ଉଠିଲେ ଆହୁରି ଗୁରୁତର । ଏହି ମତବାଦର ଗୁରୁମାନେ 'ବଜ୍ରାଚାର୍ଯ୍ୟ' ନାମରେ କଥିତ ହେଉଥିଲେ । 'ବଜ୍ରାଚାର୍ଯ୍ୟମାନଙ୍କର ପାଞ୍ଚଗୋଟି ଅଭିଷେକ ହେଉଥିଲା, ଯଥା—ମୁକୁଟାଭିଷେକ, ଘଣ୍ଟାଭିଷେକ, ମନ୍ତ୍ରାଭିଷେକ, ସୁରାଭିଷେକ ଓ ପଞ୍ଚାଭିଷେକ । ବଜ୍ରାଚାର୍ଯ୍ୟଙ୍କର ଅନ୍ୟ ନାମ ଥିଲା 'ଗୁଭଜ' । ଅର୍ଥାତ୍ ଗୁରୁ ଥିଲେ ଶିଷ୍ୟମାନଙ୍କର ଉପକାର ପାଇଁ । ଗୁରୁଙ୍କୁ ସମସ୍ତେ ଭଜନା କରିବେ ।

ବଜ୍ରଯାନର ପରବର୍ତ୍ତୀ ସହଜ-ଯାନରେ ଗୁରୁ ହୋଇ ଉଠିଲେ ଶିଷ୍ୟର ସର୍ବସ୍ୱ । ଗୁରୁଙ୍କ ଉପଦେଶ ନେଇ ମହାପାପ କଲେ ସୁଦ୍ଧା ତାହା ମହାପୁଣ୍ୟ ରୂପେ ବିବେଚିତ ହେଉଥିଲା । ସହଜଯାନର ଜଣେ ଗ୍ରନ୍ଥକାର କହିଛନ୍ତି, "ପଞ୍ଚକାମ ଉପଭୋଗ ଦ୍ୱାରା ମୂର୍ଖମାନେ ବଦ୍ଧ ହୋଇଯାଆନ୍ତି, କିନ୍ତୁ ଗୁରୁଙ୍କ ଉପଦେଶ ନେଇ ସେହି ପଞ୍ଚକାମ ଉପଭୋଗ ଦ୍ୱାରା ସେ ମୁକ୍ତି ପାଇ ଥାଆନ୍ତି । ଗୁରୁଙ୍କ ଉପଦେଶ ହିଁ ଅମୃତ ରସ । ଯେଉଁମାନେ ତାହା ପାନ କରି ନ ଥାଆନ୍ତି, ସେମାନେ ବହୁ ଶାସ୍ତ୍ରାର୍ଥରୂପ ମରୁଭୂମିରେ ତୃଷ୍ଣାରେ ପ୍ରାଣ ହରାଇ ଥାଆନ୍ତି ।" ଗୁରୁଙ୍କ ଉପଦେଶ ବିନା ସହଜ ପନ୍ଥୀମାନଙ୍କର କୌଣସି ଜ୍ଞାନୋଦୟ ହୁଏ ନାହିଁ । ଆଗମ, ତନ୍ତ୍ର, ମନ୍ତ୍ର, ବେଦ, ପୁରାଣ ସବୁ ବୃଥା—ଗୁରୁଙ୍କ ଉପଦେଶ ହିଁ ଏକମାତ୍ର ସତ୍ୟ ।

ବୌଦ୍ଧଧର୍ମର ଏହି ଦୃଷ୍ଟାନ୍ତ କ୍ରମେ ହିନ୍ଦୁ ସଂସ୍କୃତିକୁ ମଧ୍ୟ ପ୍ରଭାବିତ କରିଥିଲା । ତନ୍ତ୍ର ମତରେ 'ଗୁରୁ' ହିଁ ପରମେଶ୍ୱର, ଗୁରୁଙ୍କ ପାଦ ପୂଜା କରିବା ବିଧେୟ, ଗୁରୁଙ୍କ ଉଚ୍ଛିଷ୍ଟ ପ୍ରସାଦ ଜ୍ଞାନରେ ଭକ୍ଷଣ କର୍ତ୍ତବ୍ୟ, ଗୁରୁ ଶିଷ୍ୟର ସର୍ବସ୍ୱର ଅଧିକାରୀ । ଯିଏ ଗୁରୁସେବାରେ ନିଜର ସର୍ବସ୍ୱ ନିୟୋଜିତ କରିପାରେ, ସେହି ପରମ ଭକ୍ତ । ବୈଷ୍ଣବ ମାନଙ୍କ ମତରେ ଗୁରୁ ସତ୍ୟ, ଜଗନ୍ମିଥ୍ୟା, ।"

ଏହିପରି ଭାବରେ ଗୁରୁ ଓ ଶିଷ୍ୟଙ୍କ ମଧ୍ୟରେ ସମ୍ପର୍କ, ଶ୍ରମଣ ଓ ଉପାଧ୍ୟାୟଙ୍କ ମଧ୍ୟରେ ସମ୍ବନ୍ଧ ପୁଣି କଲ୍ୟାଣ ମିତ୍ରତ୍ୱର ଉଦାରତା ପରିହାର କରି, ଅଭିବ୍ୟକ୍ତିର ବିଭିନ୍ନ ପର୍ଯ୍ୟାୟ ମଧ୍ୟରେ ଏକ କଠିନ ଶୃଙ୍ଖଳାରେ ପରିଣତ ହୋଇ ପଡ଼ିଲା । ଗୁରୁବାଦର ଏ କଠୋର ଶୃଙ୍ଖଳା କ୍ରମେ ଏକ ବୌଦ୍ଧିକ ଶୃଙ୍ଖଳାରେ ରୂପାନ୍ତରିତ ହୋଇ ଭାରତରେ ବୌଦ୍ଧିକ ବିକାଶକୁ କେବଳ ବାଧାଗ୍ରସ୍ତ କରି ନ ଥିଲା, ସେହି ପଥରେ ମଧ୍ୟ ସୃଷ୍ଟି କରିଥିଲା ଏକ ପ୍ରତିବନ୍ଧକ ।

ଭାରତୀୟ ମଧ୍ୟ-ଯୁଗରେ ଗୁରୁ ଶିଷ୍ୟ ସମ୍ପର୍କ ଥିଲା ଯଦି ଶୃଙ୍ଖଳାବଦ୍ଧ, ଆଜିର ଶିକ୍ଷା ବ୍ୟବସ୍ଥାରେ ତାହା ଶୃଙ୍ଖଳାହୀନ । ଶିକ୍ଷାୟତନର ପରିସର ମଧ୍ୟରେ ଗୁରୁ ଓ ଶିଷ୍ୟଙ୍କ ସମ୍ପର୍କରେ ଆଜି ବୌଦ୍ଧ ଯୁଗର ଏକ ମମତା ଫେରି ଆସିଛି ସତ୍ୟ, ମାତ୍ର ସେଥିରେ "କଲ୍ୟାଣ ମିତ୍ରତ୍ୱ"ର ସେହି ଉଦାର ଭାବନା ଆଉ ନାହିଁ । ଏହା ଆଜି ଏକ ନିଛକ ବ୍ୟବସାୟିକ ବା ବୃତ୍ତିଗତ ସମ୍ପର୍କରେ ପରିଣତ ହୋଇଅଛି । ଶିକ୍ଷାର ଗୁଣାତ୍ମକ ଉତ୍କର୍ଷକୁ ଏହା କେବଳ ବାଧାପ୍ରାପ୍ତ କରି ନାହିଁ, ଶିକ୍ଷାୟତନମାନଙ୍କର ପୁଣ୍ୟତ୍ୱକୁ ମଧ୍ୟ ବହୁ ପରିମାଣରେ ଖର୍ବ କରିଅଛି । ଯେଉଁଠାରେ ଶିକ୍ଷକମାନଙ୍କର ବ୍ୟକ୍ତିଗତ ଆଚରଣ ଓ ଆଦର୍ଶ ଛାତ୍ରମାନଙ୍କୁ ପ୍ରଭାବିତ ଓ ଅନୁପ୍ରେରିତ କରିପାରିଛି ବା ପାରୁଛି, ସେଠାରେ ଛାତ୍ରମାନେ ଯଥାର୍ଥ ଭାବରେ ଶିକ୍ଷା ପ୍ରାପ୍ତ ହୋଇ ସେମାନଙ୍କ ମଧ୍ୟରେ ମାନବିକତା ଉନ୍ମେଷିତ ହୋଇ ପାରୁଅଛି । ମାତ୍ର ଯେଉଁଠାରେ ତାର ଅଭାବ ରହୁଛି, ସେଠାରେ ଶିକ୍ଷାୟତନ ଗୁଡ଼ିକ ଅଶିକ୍ଷା ଓ କୁଶିକ୍ଷାର ଗୋଟିଏ ଗୋଟିଏ ଦୁଷ୍ଟ ବ୍ରଣରେ ପରିଣତ ହେଉଅଛି । ଶିକ୍ଷା ସଂସ୍କାର ବ୍ରତୀ ମାନବର ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହେବା ଆବଶ୍ୟକ ।

● ଏମ୍. ପି.
ଷ୍ଟିଓ୍ୱାର୍ଟ ପାଠନା
କଟକ



# ଅଧ୍ୟୟନ, ଶିକ୍ଷା ଓ ବୃତ୍ତି

ଶ୍ରୀ ଅଚ୍ୟୁତାନନ୍ଦ କର

ପ୍ରଚଳିତ ଶିକ୍ଷା ପଦ୍ଧତି ଦ୍ୱାରା ଭାରତୀୟ ଜନସାଧାରଣଙ୍କର ଜୀବିକା ବହୁଭାବରେ ବିପର୍ଯ୍ୟସ୍ତ ହେଉଥିବାର ଲକ୍ଷ୍ୟକରି ଏ ଦେଶର ଶିକ୍ଷାବିତ୍, ବୁଦ୍ଧିଜୀବୀ ତଥା ରାଜନୈତିକ ନେତୃବୃନ୍ଦ ବିଚଳିତ; କିନ୍ତୁ ଦୀର୍ଘ ଦିନ ଧରି ଏ ଦେଶ ସ୍ୱାଧୀନତା ଲାଭ କରିଥିଲେ ମଧ୍ୟ ଗୋଟିଏ ସ୍ୱାଧୀନ ରାଷ୍ଟ୍ରର ଶିକ୍ଷା ପଦ୍ଧତି ଯାହା ହେବାର କଥା ଓ ଯେପରି ହେବାର କଥା ତାହା ହୋଇପାରି ନାହିଁ । ଅଧ୍ୟୟନ, ଶିକ୍ଷା ଓ ବୃତ୍ତିକୁ ଆମେ ବର୍ତ୍ତମାନ ଗୋଟିଏ ମାନଦଣ୍ଡରେ ତଉଲୁ ଥିବାରୁ ଏପରି ବିଭ୍ରାଟ ହେଉଛି ବୋଲି ମନେହୁଏ ।

ପୂର୍ବକାଳରେ ଏ ଦେଶର ଲୋକଙ୍କ ପାଇଁ ଛଅଟି ମୁଖ୍ୟକର୍ମର ନିର୍ଦ୍ଦେଶ ରହିଥିଲା । ସେ ଛଅଟି ହେଉଛି ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ ଓ ପ୍ରତିଗ୍ରହ । ଏ ଛଅ କର୍ମର ଅର୍ଥ ହେଉଛି—ଯଜ୍ଞ କରିବ ଓ କରାଇବ, ପଢ଼ିବ ଓ ପଢ଼ାଇବ, ତ୍ୟାଗ କରିବ ଓ ପ୍ରତିଦାନ ଗ୍ରହଣ କରିବ । କର୍ମରୁ ଯଜ୍ଞର ଉତ୍ପତ୍ତି ବା ଯଜ୍ଞରୁ କର୍ମର ଉତ୍ପତ୍ତି ବୋଲି ଶ୍ରୀମଦ୍‌ଭଗବତ୍ ଗୀତାର ତୃତୀୟ ଅଧ୍ୟାୟରେ ଉଲ୍ଲେଖ ଅଛି ଯେ 'ଯଜ୍ଞଃ କର୍ମ ସମୁଦ୍ଭବଃ' । ଯଜ୍ଞରୁ ମଧ୍ୟ ଅନ୍ନର ଉତ୍ପତ୍ତି ହୁଏ ବୋଲି ସେହି ଶ୍ଲୋକରେ କୁହାଯାଇଛି । ଅତଏବ ମଣିଷ ପ୍ରଥମେ କର୍ମ ମାଧ୍ୟମରେ ନିଜର ଦୈନିକ ସତ୍ତାକୁ ଦୃଢ଼ୀଭୂତ କରିବାର ଚେଷ୍ଟା କରିଥିଲା । ସେହି କର୍ମ ଥିଲା ବ୍ୟକ୍ତି ବିଶେଷର ନିଜସ୍ୱ । ଯେତେବେଳେ ମଣିଷ ସମାଜ କଥା ଚିନ୍ତାକଲା, ସେତେବେଳେ ସେ ନିଜସ୍ୱ ଗଣ୍ଡି ମଧ୍ୟରୁ ଆହୁରି ଆଗକୁ ଆଗେଇ ଯାଇ ସମାଜକୁ କର୍ମମୟ କରିବାକୁ ଚାହିଁଲା । ଏଠାରେ 'କର୍ମ' ବ୍ୟକ୍ତି ସତ୍ତା ମଧ୍ୟରେ ଯେତେ ଆସକ୍ତ ଥିଲା, ବ୍ୟକ୍ତିସତ୍ତା ଯେତେବେଳେ ସମାଜ ସତ୍ତାସହ ସାମିଲ ହେଲା ସେତେବେଳେ କର୍ମ ସେହି ଅବସ୍ଥାରେ ବ୍ୟକ୍ତିର ଆସକ୍ତ ଗଣ୍ଡିରୁ ମୁକ୍ତ ହୋଇ ଅନାସକ୍ତ ହୋଇଉଠିଲା । ତେଣୁ ଏହି ଅନାସକ୍ତ କର୍ମ ଏଠାରେ ଯଜ୍ଞର ନାମ ଧାରଣ କଲା । ମଣିଷ ନିଜ ପାଇଁ ଏ ଯଜ୍ଞ କଲା ଓ ସମାଜ ପାଇଁ କରାଗଲା ।

ବ୍ୟକ୍ତି ସତ୍ତା ଓ ସମାଜ ସତ୍ତା ନିଜ ଦୈନିକ ଭିତ୍ତି ଦୃଢ଼ୀକରଣ କରିବା ପରେ ବ୍ୟକ୍ତିର ମନ ଓ ସମାଜର ଚିନ୍ତା ଆଉ କିଛି ଆବଶ୍ୟକତା ଥିବାର ମଣିଲେ । ଏଇଠି ମଣିଷ ଅଧ୍ୟୟନ ଓ ଅଧ୍ୟାପନା କଥା ବିଚାରକୁ ନେଇ ନିଜ ଚିନ୍ତାକୁ ଉନ୍ନତ କରିବା ସଙ୍ଗେ ସଙ୍ଗେ ସମାଜର ଚିନ୍ତାକୁ ମଧ୍ୟ ସେହି ସ୍ତରକୁ ନେବାର ଚେଷ୍ଟାକଲା । ଏପରି ସ୍ଥଳେ ଛାତ୍ର ଗୁରୁ ହୋଇ ପାରେ ଓ ଗୁରୁ ମଧ୍ୟ ଛାତ୍ର ହୋଇପାରେ । ତେଣୁ ଗୁରୁ ଶିଷ୍ୟର ସମ୍ପର୍କ ଏ କ୍ଷେତ୍ରରେ ବ୍ୟବସାୟାତ୍ମିକା ନୁହେଁ ବା ଶାସକ ଶାସିତର ସମ୍ପର୍କ ନୁହେଁ କିମ୍ବା ନିଜ ଉଦର ପୋଷଣ ମାର୍ଗର ନିୟାମକ ନୁହେଁ ।

ଅଧ୍ୟୟନ, ଅଧ୍ୟାପନା ବଳରେ ମଣିଷ ନିଜର ପ୍ରଜ୍ଞାକୁ ବାରମ୍ବାର ମନ୍ଥନ କରିବା ଫଳରେ ଯେଉଁ ଅତି ମୂଲ୍ୟବାନ୍ ନିର୍ଯ୍ୟାସର ସନ୍ଧାନ ପାଏ, ତାହାପାଇଁ ଓ ସମାଜ ପାଇଁ କିଛି ନୂତନ, ସରଳ ଓ ସହଜ ପନ୍ଥା ଦିଏ, ଜୀବନର ବିକାଶ ପାଇଁ ଓ ସମାଜର ଅଭିବୃଦ୍ଧି ପାଇଁ । ଅଧ୍ୟାପନା ଦ୍ୱାରା ବା ଅପରକୁ ପଢ଼ିବାର ପ୍ରେରଣା ଦେବା ଦ୍ୱାରା ମଣିଷ ନିଜ ଚିନ୍ତାର ମୂଲ୍ୟବାନ ତଥ୍ୟକୁ ଅନାସକ୍ତ ଭାବେ ଅପରକୁ ଦେଇ ଦାନ କରିବାର ଆନନ୍ଦ ଲାଭକରେ । ଦାନ ପରେ ପ୍ରତିଦାନ ବା ପ୍ରତିଗ୍ରହର ପ୍ରଶ୍ନ ଉଠେ । ଏତେ ଗୁଡ଼ିଏ କର୍ମର ସମଷ୍ଟିଗତ ନାମ ହେଉଛି ବୃତ୍ତି ।

ବୃତ୍ତି ପାଇଁ ଅଧ୍ୟୟନ କିମ୍ବା ଶିକ୍ଷା ଦାୟୀ ରହି ନପାରେ । କେବଳ ବୈଦେଶିକ ଗୋଲାମୀ ଶିକ୍ଷା ପଦ୍ଧତି ଏ ଦେଶକୁ ଆସିବା ଫଳରେ ଏ ଦେଶର ଉନ୍ନତ, ଅନାସକ୍ତ ଶିକ୍ଷା ପଦ୍ଧତିକୁ ନଷ୍ଟକରି 'ମଣିଷ ଗୋଲାମ ହେବ' ଓ 'ସେଥିପାଇଁ ପାଠ ପଢ଼ିବା' ଏ ଚେତନା ଦେଶବାସୀଙ୍କୁ ଦେବା ଫଳରେ ଆଜିର ଶିକ୍ଷା ସମସ୍ୟା ଓ ବେକାର ସମସ୍ୟା ସୃଷ୍ଟି ହୋଇଛି । ଶିକ୍ଷା କେନ୍ଦ୍ର ଧୀରେ ଧୀରେ ବ୍ୟବସାୟ କେନ୍ଦ୍ରରେ ପରିଣତ ହୋଇ ଯାଇଛି । ଫଳ ବେପାରୀ (ଶିକ୍ଷକ) ଓ କ୍ରେତା (ଛାତ୍ର) ଙ୍କ ମଧ୍ୟରେ ନାନା ପ୍ରକାର ଦର କଷାକଷି ହେଉଛି । ଦ୍ୱନ୍ଦ୍ୱ ବି ଉପୁଜୁଛି । ଗୁରୁବାଦର ପରମ୍ପରା ନଷ୍ଟ ହୋଇ ଯାଇଛି ।

ପୂର୍ବେ ଉକ୍ତ ଷଟ୍ କର୍ମଧାରୀ ଅନାସକ୍ତ ମଣିଷକୁ ଗୁରୁ କୁହାଯାଉଥିଲା । ଦୁଃଖର କଥା ଗୁରୁପୂଜାର ପରମ୍ପରା ଅନୁଯାୟୀ ଏ ଦେଶରେ ଆଜି ଜଣେ ଗୁରୁଙ୍କର ଜନ୍ମ ଜୟନ୍ତୀ ପାଳନ କରାଯାଉଛି । ସେ ଗୁରୁ ହେଉଛନ୍ତି ଶ୍ରୀ ବନମାଳୀ ବ୍ରହ୍ମଚାରୀ; ଯିଏକି ଅଧ୍ୟୟନ, ଶିକ୍ଷା ଓ ବୃତ୍ତିର ଏକ ସଚେତନ ସମୀକ୍ଷକ ଓ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା ଇତ୍ୟାଦି ଷଟ୍‌କର୍ମକୁ ନିଜ ଜୀବନରେ ପ୍ରତିଫଳିତ କରାଇ ମୁକ୍ତ ମଣିଷ ଭାବେ ସମାଜ ସ୍ତରରେ ତାଙ୍କ ଦୃଢ଼ତାର ପ୍ରମାଣ ଦେଇଛନ୍ତି । ତାଙ୍କ କର୍ମରୁ ଏ ଜାତି କିଛି ଶିଖୁ ଓ ସେ ଶତାୟୁ ହୋଇ ଏ ଜାତିକୁ କିଛି ଶିଖାନ୍ତୁ ।

● ସମ୍ପାଦକ, 'ଦୁର୍ମୁଖ'
ରଘୁନାଥଜୀଉ ଲେନ୍
କଟକ-୯



# ଶୁଭ ଇଚ୍ଛା

ଶ୍ରୀମତୀ ହରିପ୍ରିୟା ଦେବୀ

ବ୍ରହ୍ମଗୃହୀ ମହାଶୟ—
(ଆଜ) ଘେନ ମୋର ନମସ୍କାର ଆନ୍ତରିକ ଶୁଭଇଚ୍ଛା ସହ,
ଧନ୍ୟ ତୁମେ କର୍ମଯୋଗୀ କର୍ମ ତବ ଅବିରତ ସାଥି
ପର ପାଇଁ ଚିନ୍ତା ସଦା ଧର୍ମ ତବ ଅଭିନବ ଅତି,
ଦେଖି ନାହିଁ କେହି କେବେ ମନ୍ଦିର ପ୍ରାଙ୍ଗଣେ
ଧୂପ ଦୀପ ଶଙ୍ଖ ଘଣ୍ଟା ସ୍ୱନେ,
ମଗ୍ନ ହୋଇନାହଁ ତୁମେ ଧର୍ମ ଧ୍ୱଜା ଧରି
ପୂଜାଚ୍ଛଳେ ନାମ ସଂକୀର୍ତ୍ତନେ ।
ତଥାପି ତପସ୍ୱୀ ତୁମେ—
ତପଃ ପ୍ରଭା ଝଲସଇ ମୁଖେ,
ଅନ୍ତର କାନ୍ଦଇ ସଦା ଅଗଣିତ
ଜନତାର ଦୁଃଖେ ।
ପର ଉପକାର ବ୍ରତ ବରିନେଲ
ସଂସାରର ଭୋଗ ସୁଖ ତେଜି,
ମସୀଲିପ୍ତ ହସ୍ତେ ସଦା ଚଳାଇ ଲେଖନୀ
କେତେ ଦର୍ପୀ ଦର୍ପ ଦେଲ ଭାଜି
ନୀରବ ସାଧକ ତୁମେ ଉତ୍କଳର
ମାତୃପୂଜା ଫୁଲ-
ଦରିଦ୍ର ଶିକ୍ଷକ ସଙ୍ଘ ପାଇଁ ତୁମ ଦାନ
ଅଟଇ ଅତୁଳ ।
ଦୀର୍ଘଜୀବୀ ହୁଅ ମହାଶୟ—
(ଆଜ) ଘେନ ମୋର ନମସ୍କାର
ଅନ୍ତରର ଶୁଭ ଇଚ୍ଛା ସହ—

● ବାଖରାବାଦ
କଟକ

# ସଙ୍ଗଠକ ବ୍ରହ୍ମଚାରୀ ଓ ଆମ ଶିକ୍ଷକ ସଂଘ

**ଶ୍ରୀ ରଘୁନାଥ ଦାଶ**

---

ସ୍ୱାଧୀନତା ପ୍ରାପ୍ତି ପରେ ଶାସନର ପ୍ରତି ସ୍ତରରେ ଓ ପ୍ରତ୍ୟେକ ଅନୁଷ୍ଠାନରେ ଦୁର୍ନୀତି ପ୍ରବେଶ କରିଥିବା ବିଷୟ ସମସ୍ତେ ନିଶ୍ଚୟ ସ୍ୱୀକାର କରିବେ । ବର୍ତ୍ତମାନ ତ ସର୍ବତ୍ର ଦୁର୍ନୀତିପାଇଁ ଦ୍ୱାର ଉନ୍ମୁକ୍ତ । ନ୍ୟାୟ-ନୀତି ଏକାବେଳକେ ଲୋପ ପାଇଛି । ଏପରି କି ପବିତ୍ର ଶିକ୍ଷା କ୍ଷେତ୍ର ମଧ୍ୟ ଏହା କବଳରୁ ମୁକ୍ତ ହୋଇ ରହି ପାରି ନାହିଁ । ବ୍ରିଟିଶ ଅମଳ ଏହାଠାରୁ ବହୁଗୁଣରେ ଭଲ ଥିଲା । ସେତେବେଳେ ଶିକ୍ଷାବିଭାଗରେ ଦୁର୍ନୀତି ପ୍ରାୟ ନ ଥିଲା କହିଲେ ଚଳେ । ସେକାଳରେ ଶିକ୍ଷାନୁଷ୍ଠାନ ଗୁଡ଼ିକ ମଧୁମୟ ପରିବେଶ ମଧ୍ୟରେ କାର୍ଯ୍ୟ କରି ଚାଲିଥିଲା । ସ୍ୱାଧୀନତା ଆସିବା ପରେ ସାରା ଭାରତରେ ଏକ ଅପୂର୍ବ ଜାଗରଣ ଖେଳିଗଲା—ଅଭିନବ ଶୃଙ୍ଖଳା ଦେଖା ଦେଲା । ସ୍ତର ଶ୍ରେଣୀ ନିର୍ବିଶେଷରେ ଭାରତବାସୀ ସୁଖ-ସମ୍ପଦ ଓ ଶାନ୍ତି-ସନ୍ତୋଷ ଲାଭ ପାଇଁ କେତେ ଆଶା-ଆକାଂକ୍ଷା ପୋଷଣ କରିଥିଲେ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ସେମାନଙ୍କୁ ହତାଶ ହେବାକୁ ପଡ଼ିଲା । ସାଧାରଣ ଜୀବନଧାରଣ କ୍ଷେତ୍ରରେ ଯୁଦ୍ଧୋତ୍ତର କାଳୀନ ମୁଦ୍ରାସ୍ଫୀତି ଜନିତ ବ୍ୟୟ-ବାହୁଲ୍ୟର ପ୍ରତିକାର ସ୍ୱରୂପ ଜାତୀୟ ସରକାର ସରକାରୀ ଓ ଅର୍ଦ୍ଧ ସରକାରୀ କର୍ମଚାରୀମାନଙ୍କ ପାଇଁ ୧୯୪୮ ମସିହାରେ ଗୋଟିଏ ସଂଶୋଧିତ ଦରମାହାର ପ୍ରବର୍ତ୍ତନ କଲେ । କିନ୍ତୁ ଏଥିରେ ଚିର ଅବହେଳିତ ଶିକ୍ଷକ ସମ୍ପ୍ରଦାୟ ପ୍ରତି ଘୋର ଅବିଚାର କରାଯାଇଥିଲା । ତଥାପି ଶିକ୍ଷକ ସମାଜ ଏହା ବିରୁଦ୍ଧରେ କୌଣସି ବିପ୍ଳବାତ୍ମକ ଆନ୍ଦୋଳନ ସୃଷ୍ଟି ନ କରି ଧୈର୍ଯ୍ୟର ସହିତ ଅନାଗତ ଭବିଷ୍ୟତ ଉପରେ ଆଶା ରଖି ନୀରବ ରହିଲେ ।

ସମୟର ସୁଅ ଗଡ଼ି ଚାଲିଲା । ବର୍ଷପରେ ବର୍ଷ ବିତିଗଲା । ଶିକ୍ଷକମାନେ ସ୍ୱ ସ୍ୱ କର୍ତ୍ତବ୍ୟ ପାଳନରେ ବ୍ରତୀ ହୋଇ ଦେଶ ଓ ଦଶର ସେବାକରି ଚାଲିଲେ । ତଥାପି ଜାତିର ମେରୁଦଣ୍ଡ, ଶିକ୍ଷାର ବାହକ ତଥା ଜନକ ଶିକ୍ଷକ ସମ୍ପ୍ରଦାୟ ପ୍ରତି କାହାରି ଶୁଭ ଦୃଷ୍ଟି ପଡ଼ିଲା ନାହିଁ କି କାହାରି ଅନୁକମ୍ପା ଜାତ ହେଲା ନାହିଁ । ସେମାନଙ୍କର ଦୁଃଖଦୁର୍ଦ୍ଦଶା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ଅଭାବ-ଅନାଟନର ସୀମା ରହିଲା ନାହିଁ । ସରକାର କିମ୍ବା ଜନସାଧାରଣ କେହି ଏହାର ପ୍ରତିକାର ପାଇଁ ଆଗ୍ରହ ପ୍ରକାଶ କଲେ ନାହିଁ । ଏହାଛଡ଼ା ବିଭାଗୀୟ କର୍ମଚାରୀ, କିରାଣୀ ଓ ପରିଚାଳନା ସମିତି ଶିକ୍ଷକ ସମ୍ପ୍ରଦାୟ ପ୍ରତି ଏପରି ନିର୍ଦ୍ଦୟ ନିଷ୍ଠୁର ହୋଇ ଉଠିଲେ ଯେ, ତାହା ଏକ ପ୍ରକାର ବେଙ୍ଗ ଉପରେ କୋରଡ଼ା ମାଡ଼ ପରି ବୋଧ ହେଲା । ସେହି କିରାଣୀ କର୍ମଚାରୀମାନେ ଶିକ୍ଷକମାନଙ୍କୁ ସେମାନଙ୍କ ଅଫିସର ପିଅନ-ଚପରାଶିଙ୍କଠାରୁ ହୀନ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଏପରି ଶିକ୍ଷକମାନଙ୍କ ପ୍ରତି ସେମାନଙ୍କ ଦୁର୍ବ୍ୟବହାରର ସୀମା ରହିଲା ନାହିଁ । ଏଣେ ପରିଚାଳନା ସମିତିର ପ୍ରଭାବ-ପ୍ରକୋପ ଓ ଦୁର୍ନୀତି-ଅବିଚାର କହିଲେ ନ ସରେ । ସ୍ୱୟଂ ସମ୍ପାଦକ ଓ ସମିତିର

କେହି କେହି ସଭ୍ୟ ଟ୍ରାଷ୍ଟ-ଇନ୍-ଏଡ୍ ଆକାରରେ ମିଳୁଥିବା ଶିକ୍ଷକମାନଙ୍କ ଦରମା-ପଇସାକୁ ବ୍ୟକ୍ତିଗତ ବିଭିନ୍ନ ଲାଭଜନକ ବ୍ୟବସାୟରେ ମୂଳଧନ ରୂପେ ଖଟାଇବାକୁ କୁଣ୍ଠାବୋଧ କଲେ ନାହିଁ । ଭିକ୍ଷୁକକୁ ମୁଷ୍ଟିଭିକ୍ଷା ଦେଲାଭଳି ସମ୍ପାଦକ ମହୋଦୟ ଅଧିକାଂଶ କ୍ଷେତ୍ରରେ ଶିକ୍ଷକମାନଙ୍କୁ ସେମାନେ ପାଞ୍ଚ ସାତଥର ଦ୍ୱାରସ୍ଥ ହେବା ପରେ ଦୁ'ଟଙ୍କା, ପାଞ୍ଚଟଙ୍କା ଲେଖାଏଁ ଦେବାକୁ ଲାଗିଲେ । ଏଥିରେ କିଛି ପ୍ରତିବାଦ କଲେ ଶିକ୍ଷକମାନଙ୍କୁ ବହୁ ଗାଳି-ଭର୍ତ୍ସନା ଓ ଅକଥା-କୁକଥା ଶୁଣିବାକୁ ପଡ଼ୁଥିଲା । କୌଣସି ବିଷୟରେ ଅବାଧ ହେଲେ କିମ୍ବା କୌଣସି କଥା ଅମାନ୍ୟ କଲେ ସମ୍ପାଦକଙ୍କ ଏକା କଲମ ଗାରକେ ଚାକିରିରୁ ସେମାନଙ୍କୁ ଅବଲମ୍ବେ ବରଖାସ୍ତ କରିଯାଉଥିଲା । ଏଭଳି ପରିସ୍ଥିତିରେ ଶିକ୍ଷକ ନିଜ ପେଟରେ ଓଦାକନା ଦେଇ ପିଲାପିଲିଙ୍କୁ ଭୋକ ଉପାସରେ ଗଡ଼େଇ ହନ୍ତ ସନ୍ତ ହୋଇ ମରୁଥିଲେ । ସମ୍ପାଦକ ତଥା ପରିଚାଳନା ସମିତିର ସଭ୍ୟମାନଙ୍କ ନିକଟରେ ଶିକ୍ଷକ ବାଘ ପାଖରେ ଛେଳି ପରି ରହି ଚାଲୁଥିଲା । କେତେକ କ୍ଷେତ୍ରରେ ପୁଣି ସମ୍ପାଦକ ଶିକ୍ଷକକୁ ଘରେଇ ଚାକର ରୂପେ ବ୍ୟବହାର କରିବା ମଧ୍ୟ ଦେଖା ଯାଉଥିଲା । ଏହିପରି ସ୍ୱଳ୍ପ ବେତନ ଭୋଗୀ ବେସରକାରୀ ଶିକ୍ଷକଗଣ ସରକାର ଓ ବିଭାଗୀୟ କର୍ମକର୍ତ୍ତା ସମେତ ପରିଚାଳନା ସମିତିର ସଭ୍ୟ ସମ୍ପାଦକଙ୍କ ତ୍ରିକୋଣୀ ନିର୍ଯ୍ୟାତନ-ନିଷ୍ପେଷଣ ଫଳରେ ଦୁର୍ବିସହ ହୀନ ଜୀବନ ଯାପନ କରି ଦଳିତ ପତିତଭାବେ ରହିବାକୁ ବାଧ୍ୟ ହେଉଥିଲେ ।

ପ୍ରତ୍ୟେକ ଜିନିଷର ଗୋଟାଏ ସୀମା ଅଛି । ସୀମା ଲଙ୍ଘନରେ ଫଳ ବିପରୀତ ହୁଏ । ଶିକ୍ଷକ ସମାଜ ପ୍ରତି ଅତ୍ୟାଚାର-ନିର୍ଯ୍ୟାତନ, ଦୁର୍ନୀତି-ଅବିଚାରର ସୀମା ରହିଲା ନାହିଁ । ଫଳରେ ନିରୀହ ଶିକ୍ଷକ ପ୍ରାଣରେ ଉତ୍ତେଜନା ଆସିଲା । ତାର ଉଦାର ମନରେ ବିପ୍ଳବ ଦେଖା ଦେଲା । ସେ ଏହାର ପ୍ରତିକାର ବିଧାନ ପାଇଁ ବଦ୍ଧପରିକର ହେଲା । ସଙ୍କଳ୍ପ ଗ୍ରହଣ କଲା । ସଂଘବଦ୍ଧ ହେବାକୁ ଲାଗିଲା । କଲେଜ, ମାଧ୍ୟମିକ ଓ ପ୍ରାଥମିକ ସ୍ତରରେ ଶିକ୍ଷକମାନଙ୍କର ଭିନ୍ନ ଭିନ୍ନ ସଂଗଠନ ସବୁ ସୃଷ୍ଟି ହେଲା । କ୍ରମେ ଉଚ୍ଚ ଇଂରାଜୀ ଓ ମଧ୍ୟ-ଇଂରାଜୀ ସ୍କୁଲଗୁଡ଼ିକ ମଧ୍ୟରେ ଆର୍ଥିକ ଅବସ୍ଥା, ପରିଚାଳନା ଗତ ସମସ୍ୟା, ସରକାରୀ ଅନୁଦାନ ଓ ଆଇନ୍ କାନୁନ୍ ଇତ୍ୟାଦି କେତେକ ବିଷୟରେ ସାମଞ୍ଜସ୍ୟ ରହିଲା ନାହିଁ । ତେଣୁ ବେସରକାରୀ ମଧ୍ୟ ଇଂରାଜୀ ସ୍କୁଲଗୁଡ଼ିକ ସ୍ୱତନ୍ତ୍ର ଭାବରେ ସମ୍ମିଳିତ ହେବା ପାଇଁ ଆବଶ୍ୟକ ବୋଧ ହେଲା । ଫଳରେ ୧୯୫୭ ମସିହା ଜାନୁୟାରୀ ପହିଲାଠାରୁ "ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ" ନାମରେ ଏକ ସ୍ୱତନ୍ତ୍ର ସଂଗଠନର ସୃଷ୍ଟି ହେଲା । ସୁରେନ୍ଦ୍ର ବାବୁ ସମେତ କେତେ ଜଣ କୃତୀ ଓ ଆଦର୍ଶ ଶିକ୍ଷକଙ୍କ ସହଯୋଗରେ ଓ ତତ୍କାଳୀନ ପ୍ରବୀଣ ଭି. ଏମ୍ ଶିକ୍ଷକ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଚାରୀଙ୍କ ଉଦ୍ୟମ ଓ ନେତୃତ୍ୱରେ ଏହି ସଂଘ ଜନ୍ମଲାଭ କଲା । ନେତୃବୃନ୍ଦ ଓ ଉଦ୍ୟୋକ୍ତାଗଣଙ୍କ ସୁପରିଚାଳନା ଫଳରେ ଏବଂ ସମଗ୍ର ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କ ସମର୍ଥନ ବଳରେ ଏହା କ୍ରମଶଃ ଏକ ଶକ୍ତିଶାଳୀ ସଂଗଠନରେ ପରିଣତ ହେଲା ।

ସବୁଦିନ ସମାନ ଯାଏ ନାହିଁ । ଚକ ଘୂରେ । ଦୁର୍ଦ୍ଦିନ ପରେ ସୁଦିନ ଆସେ । ବାସ୍ତବରେ ମାଧ୍ୟମିକ ବିଶେଷତଃ ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କର ମା'ବାପ କେହି ନ ଥିଲେ । ଏମାନଙ୍କ ପାଇଁ ଆହା ପଦେ କେହି କହୁ ନ ଥିଲେ । ବ୍ରହ୍ମଚାରୀ ବାବୁଙ୍କ ଭାଷାରେ —"ଷଣ୍ଢ ମହାଦେବଙ୍କର, ଗାଈ ସହଦେବଙ୍କର, ବଳଦ ବାପୁଡ଼ା କାହାରି ନୁହେଁ ।" ଅର୍ଥାତ୍ ପ୍ରାଥମିକ ଓ ବେସରକାରୀ କଲେଜ ସ୍ତରରେ ଜାତୀୟ ଏପରିକି ଆନ୍ତର୍ଜାତିକ ସଂଗଠନମାନ ରହିଥିଲେ ହେଁ ନିମ୍ନ ମାଧ୍ୟମିକ ସ୍ତରରେ ସେ ଭଳି କୌଣସି ସଂଗଠନ ନାହିଁ କି ଏମାନଙ୍କ ପ୍ରତି କାହାରି ସମର୍ଥନ-ସହାନୁଭୂତି ନାହିଁ । ଯାହା ହେଉ, ଦାରୁଣ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଏଭଳି ଏକ ସଂଗଠନ ଗଢ଼ିବା ପାଇଁ ବନମାଳୀ ବାବୁଙ୍କ ଉଦ୍ୟମ ଓ ଅଭୂତପୂର୍ବ ସାଧନା ବାସ୍ତବରେ ପ୍ରଶଂସନୀୟ । ସେ ବର୍ତ୍ତମାନ ଏହି ସଂଘର କେବଳ ପ୍ରତିଷ୍ଠାତା ନୁହନ୍ତି—ଏହାର ପଥପ୍ରଦର୍ଶକ ଓ

କର୍ଣ୍ଣଧାର ମଧ୍ୟ । ଏହି ସଂଘର ପ୍ରଭାବରେ ଆଜି ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କ ଦୁର୍ଦ୍ଦିନର ସମ୍ପୂର୍ଣ୍ଣ ଅବସାନ ଘଟିବାକୁ ଯାଉଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କେବଳ ସଂଗଠନ-ଶକ୍ତି ନାହିଁକି, ବନମାଳୀ ବାବୁଙ୍କର ପରିଚାଳନା-ଦକ୍ଷତା ମଧ୍ୟ କିଛି କମ୍ ନୁହେଁ । ଏସବୁ ଦିଗରେ ତାଙ୍କ ଦୃଷ୍ଟିଭଙ୍ଗୀ ଅତି ଉଚ୍ଚକୋଟିର । ତାଙ୍କର ସୁପରିଚାଳନାରେ ଏହି ଶିକ୍ଷକ ସଂଘଟି ବର୍ତ୍ତମାନ ଏକ ଉନ୍ନତ, ଶକ୍ତିଶାଳୀ ଓ ଆଦର୍ଶ ସଂଗଠନରେ ପରିଣତ ହୋଇ ପାରିଛି । ଏହାକୁ ଦୃଢ଼ ଭାବେ ଧରି ରଖିବା ପାଇଁ ଜିଲ୍ଲା, ଅଞ୍ଚଳ ଓ ମଣ୍ଡଳ ସ୍ତରରେ କମିଟିମାନ ଗଠନ କରାଯାଇ ଅଛି । ସବୁରି ମୂଳରେ ଅର୍ଥର ଆବଶ୍ୟକତା ରହିଛି । ଏଥିପାଇଁ କହନ୍ତି—"ଆଲୋ ମଉସା ଜଡ଼ ପଇସା ।" ଅର୍ଥସଂଗ୍ରହ ପାଇଁ ସଭ୍ୟ ସ୍କୁଲମାନଙ୍କର ପ୍ରତ୍ୟେକ ଶିକ୍ଷକଙ୍କ ଦେୟ ବାର୍ଷିକ ଚାନ୍ଦା ବ୍ୟତୀତ ପରୀକ୍ଷା ସକାଶେ ପ୍ରଶ୍ନପତ୍ର ଯୋଗାଇବା ସଂଘର ଏକ ଲାଭ ଜନକ ବ୍ୟବସାୟ । ଏହାଛଡ଼ା ରବର ଷ୍ଟାମ୍ପ ତିଆରି ଠାରୁ ଆରମ୍ଭ କରି ଆଡ଼ମିସନ, ଆଟେଣ୍ଡାନସ୍, କ୍ୟାସ୍‌ବୁକ୍ ଭଳି ରେଜିଷ୍ଟର ସବୁ ବଜାରଦରରେ ଯୋଗାଇବା ଅର୍ଥୋପାର୍ଜ୍ଜନର ଆଉ ଗୋଟିଏ ପନ୍ଥା । ପୁନଶ୍ଚ ବ୍ରହ୍ମଗିରି ବାବୁଙ୍କ ପ୍ରଣୀତ ଓ ସଂଘ ପ୍ରକାଶିତ କେତେକ ଉପାଦେୟ ପୁସ୍ତକର ବିକ୍ରୟଲବ୍ଧ ଧନ ଏହି ସଂଘର ଅନ୍ୟ ଏକ ସମ୍ବଳ ।

ଶିକ୍ଷା ଓ ଶିକ୍ଷାୟତନ ମଧ୍ୟରୁ ଦୁର୍ନୀତି ଲୋପ କରି ଦେଶ ଓ ଜାତିର ଭବିଷ୍ୟତ ଛାତ୍ର ସମାଜକୁ ସୁନାଗରିକ ହିସାବରେ ଗଢ଼ିବା ସଙ୍ଗେ ସଙ୍ଗେ ଶିକ୍ଷକମାନଙ୍କ ଦୁଃଖ-ଦୁର୍ଦ୍ଦଶାରେ ସହାୟକ ହେବା ଏ ସଂଘର ଉଦ୍ଦେଶ୍ୟ । ମାତ୍ର ୧୬।୧୭ ବର୍ଷ ଭିତରେ ଏହି ସଂଘ ତା'ର ଉଦ୍ଦେଶ୍ୟ ପୂରଣ ଦିଗରେ ଅଶେଷ କୃତିତ୍ୱ ହାସଲ କରିପାରିଛି । ତାହା ଅତ୍ୟନ୍ତ ଗୌରବର ବିଷୟ । ଯୋଜନା-ପରିକଳ୍ପନା ଅନୁଯାୟୀ ଭିନ୍ନ ଭିନ୍ନ ସ୍ତରରେ ଏହାର ସଫଳ କାର୍ଯ୍ୟାନୁଷ୍ଠାନ ଅତୀବ ପ୍ରଶଂସନୀୟ । 'ଶିକ୍ଷାଶ୍ରମେ ଜୟିତାମ୍' ବିବୃତ୍ତିରେ-ପ୍ରସ୍ତୁତକାର ପାଇଁ ପରିଚାଳନା ସମିତି ଓ ବିଭାଗୀୟ କର୍ମକର୍ତ୍ତାଠାରୁ ଆରମ୍ଭ କରି ରାଜ୍ୟ ତଥା କେନ୍ଦ୍ର ସରକାର ପର୍ଯ୍ୟନ୍ତ ସମସ୍ତଙ୍କୁ ଦାବୀ ଜଣାଇ ଆବେଦନ, ନିବେଦନ କରିବା ଏବଂ ଚରମ ପତ୍ର ଓ ସ୍ମାରକ ପତ୍ର ପ୍ରଭୃତି ଦେବାରେ ବ୍ରହ୍ମଗିରିଙ୍କ କଲମ ମୁନ ସତତ ମୁଖର । ବାସ୍ତବରେ ତାଙ୍କର ସେ କଲମ ମୁନକୁ "ଅଗ୍ନିବାଣ" ଆଖ୍ୟା ଦିଆ ଯାଇପାରେ । ସେଥିରୁ ଅଗ୍ନି ସ୍ଫୁଲିଙ୍ଗ ଜାତ ହେବା ସହିତ ବୀଣାର ମଧୁର ସ୍ୱର ମଧ୍ୟ ବାହାରିଥାଏ । କଲମ ବଲମ ଠାରୁ ଶକ୍ତିଶାଳୀ । ଏହି କଲମ ମୁନ ବଳରେ "ଚପେ ବର ନ ହେଲେ କୋପେ ବର" ନୀତିରେ ବିଭିନ୍ନ ଦାବୀ ପୂରଣ ହେବାରେ ଲାଗିଛି । ବହୁ ସମସ୍ୟାର ସମାଧାନ ହେଉଛି । ଶିକ୍ଷକ ସମାଜର ଅଭାବ ଅନାଟନ ଓ ଦୁଃଖ ଦୁର୍ଦ୍ଦଶା କ୍ରମଶଃ ହ୍ରାସ ପାଉଛି । ଏଥିପାଇଁ ଶିକ୍ଷକ ମାନଙ୍କୁ ବ୍ରହ୍ମଗିରିଙ୍କ ଆହ୍ୱାନରେ ବହୁ ବିପ୍ଳବାତ୍ମକ ଆନ୍ଦୋଳନ କରିବାକୁ ପଡ଼ିଛି । ବିକ୍ଷୋଭ-ପ୍ରଦର୍ଶନ, ସମୂହ ଧାରଣା ପ୍ରଭୃତିର ଆଶ୍ରୟ ନେବାକୁ ହୋଇଛି । ସ୍ଲୋଗାନ-ଶୋଭାଯାତ୍ରା ମଧ୍ୟ ବାଦଯାଇନି । ଫଳରେ ସେମାନଙ୍କୁ କଠୋର ଦମନର ଶିକାର ହେବାକୁ ପଡ଼ିଛି । ଏସବୁ କ୍ଷେତ୍ରରେ ବ୍ରହ୍ମଗିରି ବାବୁଙ୍କର ମନୋବଳ ଓ ଦମ୍ଭୋକ୍ତି ନିରୀହ ଶିକ୍ଷକ ପ୍ରାଣରେ ଶକ୍ତି-ସଞ୍ଚାର କରିବା ସଙ୍ଗେ ସଙ୍ଗେ ଉତ୍ସାହ-ଉଦ୍ଦୀପନା ଖେଳାଇ ପାରିଛି ।

ବିପ୍ଳବ-ଆନ୍ଦୋଳନ ବିଫଳ ହୋଇନି । ସଂଘ ଗଠନର ଉଦ୍ଦେଶ୍ୟ ପୂରଣ ହୋଇଛି । ଶିକ୍ଷକ ସମାଜର ସୁଖ-ଶାନ୍ତି ଓ ସମ୍ମାନ-ଗୌରବ ବହୁ ପରିମାଣରେ ଫେରି ଆସିଛି । ଆଜିର ନିମ୍ନ ମାଧ୍ୟମିକ ଶିକ୍ଷକ ଆଉ ସେକ୍ରେଟାରୀଙ୍କର କ୍ରୀଡ଼ା ପୁତ୍ତଳିକା ନୁହେଁ । ତା'ର ଚାକିରୀରେ ନିରାପତ୍ତା ଆସିଛି କହିଲେ ଚଳେ । ପରିଚାଳନା ସମିତି ମେମ୍ବରଙ୍କ ମଜିରେ ବିନା କାରଣରେ ଯେ କୌଣସି ମୁହୂର୍ତ୍ତରେ ଶିକ୍ଷକକୁ ବାହାର କରିଦେବା ଆଉ ଏଣିକି ସହଜ ସାଧ୍ୟ ବ୍ୟାପାର ନୁହେଁ । ସଂଶୋଧିତ ହାରରେ ଶିକ୍ଷକର ଦରମା ବୃଦ୍ଧି ପାଇଛି । ଦରଦାମ ବୃଦ୍ଧି ପ୍ରତି ଲକ୍ଷ୍ୟ

ରଖି ତାକୁ ବର୍ଦ୍ଧିତ ହାରରେ ଭତ୍ତା ମିଳୁଛି । ସରକାରୀ ଓ ବେସରକାରୀ ସ୍କୁଲ ଶିକ୍ଷକମାନଙ୍କ ଦରମା ହାରରେ ଥିବା ପାର୍ଥକ୍ୟ ଦୂର କରାଯାଇ ଦରମା ସମୀକରଣ (equalisation of pay) କାର୍ଯ୍ୟକାରୀ ହୋଇଛି । ୪ର୍ଥ-୫ମ ଶ୍ରେଣୀର କ୍ଷତି ପୂରଣ ଅର୍ଥ (compensatory money) ସାଙ୍ଗକୁ ବାଳକା ହରିଜନ ପ୍ରଭୃତିଙ୍କ ଦରମା କ୍ଷତିପୂରଣ (loss of fee income) ମିଳୁଥିବା ଆନନ୍ଦର ବିଷୟ । ପୁରୀ ଶିକ୍ଷା ସର୍କଲରେ Direct payment ବ୍ୟବସ୍ଥା ଚାଲୁ ହେବା ପରେ ଏହାକୁ ସମଗ୍ର ରାଜ୍ୟରେ କାର୍ଯ୍ୟକାରୀ କରାଯିବା ପାଇଁ ଉଦ୍ୟମ ବାସ୍ତବରେ ଏକ ପ୍ରଶଂସନୀୟ ପଦକ୍ଷେପ । ଏହାପରେ full teacher's cost ମିଳିବା ସକାଶେ ମଧ୍ୟ ଦାବୀ କରାଯାଉଛି । ଏ ସଙ୍ଘର ଦାବୀ-ପ୍ରସ୍ତାବ ଅନୁଯାୟୀ ପ୍ରଚଳିତ ଶିକ୍ଷା ପଦ୍ଧତି ଓ ପରୀକ୍ଷା ପ୍ରଣାଳୀରେ ଯୁଗୋପଯୋଗୀ ପରିବର୍ତ୍ତନ ଅଣାଯିବାର ଉଦ୍ୟମ ଚାଲିଛି । କଟକସ୍ଥ ଝାଞ୍ଜିରୀମଙ୍ଗଳାଠାରେ "ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ" ନାମରେ ଏକ ବିରାଟ ଅଟ୍ଟାଳିକା ନିର୍ମାଣ ସଙ୍ଘ ପକ୍ଷରେ କମ୍ ଗୌରବର କଥା ନୁହେଁ । ଏସବୁ କୀର୍ତ୍ତି-କୃତିତ୍ୱକୁ ନେଇ ବିଚାର କଲେ ବ୍ରହ୍ମଗିରୀ ବାବୁଙ୍କ ଅସୀମ ସଂଗଠନ-ଦକ୍ଷତା ଓ ଅସାଧାରଣ କର୍ମକୁଶଳତାର ପରିଚୟ ମିଳେ ।

"ରାଜ୍ୟ ଶିକ୍ଷକ ସମନ୍ୱୟ ସମିତି" ଆହ୍ୱାନରେ ତା ୫ । ୯ । ୭୧ ରେ ଗୁରୁଦିବସ ଦିନ ଭୁବନେଶ୍ୱର କଳାମଣ୍ଡପ ଠାରେ ରାଜ୍ୟର ବିଭିନ୍ନ ସଂଗଠନମାନଙ୍କ ପ୍ରତିନିଧିମାନଙ୍କ ଉପସ୍ଥିତିରେ ଏକ ସମ୍ମିଳନୀ ବସିଥିଲା । ଏଥିରେ ସମ୍ପୃକ୍ତ ଶିକ୍ଷକ ସଂଗଠନମାନଙ୍କୁ ନେଇ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନର ବିକାଶ କଳ୍ପେ ଏକ ମହାସଙ୍ଘ ଗଠନ କରାଯିବା ପାଇଁ ସ୍ଥିର କରାଗଲା । ଫଳରେ ସମନ୍ୱୟ ସମିତିକୁ ଭାଙ୍ଗି "ନିଖିଳ ଉତ୍କଳ ଶିକ୍ଷକ ମହାସଙ୍ଘ" ବା All Orissa federation of the teachers' organisations" ଗଠିତ ହେଲା । ଆମ ସଂଗଠନ ସମ୍ପାଦକ ଶ୍ରୀଯୁକ୍ତ ବ୍ରହ୍ମଗିରୀ ବାବୁ ଏହି ମହାସଙ୍ଘର ସ୍ଥାୟୀ ସଭାପତି ରୂପେ ଅବସ୍ଥାପିତ ହେବା ନିମ୍ନ ମାଧ୍ୟମିକ ଶିକ୍ଷକ ସମାଜ ପକ୍ଷରେ ଅତୀବ ଗୌରବର ବିଷୟ ।

ଏହିପରି ଗୁରୁଙ୍କର ଗୁରୁ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗିରୀ ଅଶେଷ ଗୁଣର ଆଧାର ଓ ବିଶେଷ ସମ୍ମାନର ଅଧିକାରୀ ଅଟନ୍ତି । ସେ ଯେ କୌଣସି ଲୋକ ସହିତ ଅତି ସହଜରେ ମିଶି ପାରନ୍ତି ଓ ତାକୁ ଅଳ୍ପ ସମୟ ମଧ୍ୟରେ ଆପଣାର କରି ପାରନ୍ତି । "କାକସ୍ନାନ, ବକ ଧ୍ୟାନ, ଶ୍ୱାନ ନିଦ୍ରା" ଆଦି ନୀତି ତାଙ୍କ ଚରିତ୍ରର ବିଶିଷ୍ଟ ଗୁଣ । ଏସବୁ ସଦ୍‌ଗୁଣ କେବଳ ଛାତ୍ରର ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ହେଲେ ହେଁ ନେତୃତ୍ୱ ପାଇଁ ମଧ୍ୟ ଏସବୁର ଯଥେଷ୍ଟ ଆବଶ୍ୟକତା ରହିଛି । ସେ ଯେପରି ୭୮ ବର୍ଷର ଜଣେ ଯୁବକ । ତାଙ୍କର ହସ ହସ ମୁହଁ, ଟେକ୍ ଠୋକ୍ କଥା ଓ ସରଳ ସୁନ୍ଦର ବ୍ୟବହାର ବାସ୍ତବରେ ବଡ଼ ଆକର୍ଷଣୀୟ । ଅବଶ୍ୟ ମୁଁ ତାଙ୍କର ଜୀବନୀ ପଢ଼ିନି । ତାଙ୍କ ରୂପଗୁଣର ପୂର୍ଣ୍ଣ ବିବରଣୀ ସଂଗ୍ରହର ସୁଯୋଗ ପାଇନି । ବାହାର ପାଣି ପବନରୁ ଯେତିକ ଜାଣିଛି, ଶୁଣିଛି, ସେତିକ ଉପରେ ଆଲୋଚନା କରିବାକୁ ଯାଉଛି । ଏହି ଆଲୋଚନା ତାଙ୍କର ବହୁମୁଖୀ ପ୍ରତିଭା ତୁଳନାରେ ଯତ୍‌ସାମାନ୍ୟ ହୋଇପାରେ । ଆମ ସଙ୍ଘର ମୁଖପତ୍ର "ଶିକ୍ଷକ-ଦର୍ପଣ"ର ପ୍ରବର୍ତ୍ତନ ଓ ତା'ର ନିୟମିତ ପ୍ରକାଶନ, ପତ୍ରିକାର ମୁଖ୍ୟ ସମ୍ପାଦକ ବ୍ରହ୍ମଗିରୀ ବାବୁଙ୍କର ଅସୀମ ସାହସ ଓ ଅଲୌକିକ ଦୃଷ୍ଟି ଭଙ୍ଗୀର ପରିଚାୟକ ।

ବ୍ରହ୍ମଗିରୀବାବୁ କେବଳ ଅବସର ପ୍ରାପ୍ତ ଜଣେ ଆଦର୍ଶ ଓ ପ୍ରବୀଣ ଶିକ୍ଷକ ନୁହନ୍ତି; ସେ ଜଣେ ବିଶିଷ୍ଟ ଶିକ୍ଷା-ପ୍ରେମୀ ମଧ୍ୟ । ଦୋହଲି ମଡ଼େଲ ହାଇସ୍କୁଲର ପ୍ରତିଷ୍ଠାତା ହିସାବରେ ତାଙ୍କର ଯଥେଷ୍ଟ ଖ୍ୟାତି ରହିଛି । ଶିଶୁ ସାହିତ୍ୟ ଲେଖକ ଭାବରେ ସେ ଗୌରବ ପୂର୍ଣ୍ଣ ରାଜ୍ୟ ତଥା ରାଷ୍ଟ୍ରପତି ପୁରସ୍କାର ଲାଭ କରିଅଛନ୍ତି । ପାଠ୍ୟ-ପୁସ୍ତକ ପ୍ରଣେତା ହିସାବରେ ସେ ଛାତ୍ର ସମାଜରେ ସୁପରିଚିତ । ଦୁଃସ୍ଥ-ଦଳିତ ଓ ପତିତ-ନିର୍ଯ୍ୟାତିତ ଶିକ୍ଷକ ସମାଜର ମୁକ୍ତି-ଉନ୍ନତି ପାଇଁ ସେ ସତତ ସଙ୍କଳ୍ପବଦ୍ଧ ଓ ଉଦ୍ୟମଶୀଳ । ସକଳ କ୍ଷେତ୍ରରେ ତାଙ୍କ ନିର୍ଭୀକତାର ପରିଚୟ ମିଳିଥାଏ । ତାଙ୍କର ସଂଗ୍ରାମୀ ମନୋବୃତ୍ତି, କୃଚ୍ଛ୍ର, ସାଧନା-ପ୍ରୀତି ଓ କଠୋର ଅଧ୍ୟବସାୟ-ପ୍ରବୃତ୍ତି ତାଙ୍କୁ ଏକ ବିରାଟ

କର୍ମଶାଳ ରୂପେ ଗଢ଼ିପାରଛନ୍ତି । ସେ ବଡ଼ ନିଷ୍ଠାପର ଓ କର୍ତ୍ତବ୍ୟ ପରାୟଣ । ନିର୍ମଳ ଦେଶାତ୍ମବୋଧ, ନିଃସ୍ୱାର୍ଥ ଦାନଶୀଳତା ଓ ନିଷ୍ଠୁର ସ୍ପଷ୍ଟବାଦିତା ତାଙ୍କ ଚରିତ୍ରର ଗୋଟିଏ ଲେଖାଏଁ ମହାନ୍ ଗୁଣ । ଏ ସମସ୍ତ ସଦ୍‌ଗୁଣ ମଧ୍ୟରେ ତାଙ୍କର ସଂଗଠନ-ପ୍ରବୃତ୍ତି, ସଂଗଠନ-ଉଦ୍ୟମ ଓ ସଂଗଠନ-ଦକ୍ଷତାକୁ ଶ୍ରେଷ୍ଠ ଗୁଣ ବୋଲି କୁହାଯାଇପାରେ । କାରଣ ଏହି ଉଦ୍ୟମ ପ୍ରବୃତ୍ତି ଦ୍ୱାରା ସଂହତି ଓ ଏକତାର କ୍ଷେତ୍ର ପ୍ରସ୍ତୁତ ହୁଏ, —ଯାହାର ଶକ୍ତିମତ୍ତା ଓ ଗୌରବ ଗରିମା କିଛି କମ୍ ନୁହେଁ । ଏହି ସାଂଗଠନିକ ଶକ୍ତି-ପ୍ରବୃତ୍ତି ବଳରେ ହିଁ ଯେ କୌଣସି ସଂଘ-ସମ୍ମିଳନୀ ଗଢ଼ାଯାଇ ପାରେ । ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ ଆମର ନିମ୍ନ ମାଧ୍ୟମିକ ଶିକ୍ଷକ ସମ୍ମିଳନୀଟି ଗଢ଼ି ବନମାଳୀ ବାବୁ ନିଜକୁ ଜଣେ ବରିଷ୍ଠ ସଂଗଠକ ହିସାବରେ ପରିଚୟ ଦେଇ ପାରିଛନ୍ତି । ଆରମ୍ଭରୁ ଅଦ୍ୟାବଧି ସେ ଏହାର ସଂଗଠନ ସମ୍ପାଦକ ଦାୟିତ୍ୱରେ ରହି ଆସିଛନ୍ତି । ଏଣୁ ସେ ଅନ୍ୟ ଯେତେ ଯାହା ହୁଅନ୍ତୁ ନା କାହିଁକି, ମୋ ଦୃଷ୍ଟିରେ ସେ ହେଉଛନ୍ତି, "ସଂଗଠକ ବ୍ରହ୍ମଗୃହୀ" ।

ଯାହାହେଉ, ଏହି ମହାନ୍ ବ୍ୟକ୍ତି ୧୯୭୩ ମସିହା ନଭେମ୍ବର ୧୮ ତାରିଖରେ ୭୧ ତମ ବର୍ଷ ବୟସରେ ପଦାର୍ପଣ କରୁଛନ୍ତି । ରାଜ୍ୟର ବହୁ ଗଣ୍ୟମାନ୍ୟ ଓ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ଉକ୍ତ ଦିନ ତାଙ୍କର ଜୟନ୍ତୀ ପାଳନ କରିବାକୁ ଯାଉଥିବା ଏକ ଗୌରବାବହ ଘଟଣା ଓ ଅଭିନବ ପଦକ୍ଷେପ । ଏକ ବରିଷ୍ଠ ସାଧାରଣ ସଭାରେ ତାଙ୍କୁ "ମାନପତ୍ର" ଦିଆଯିବା ସଙ୍ଗେ ସଙ୍ଗେ ତାଙ୍କ ସମ୍ମାନାର୍ଥେ ଗୋଟିଏ "ସ୍ମରଣିକା" ପ୍ରକାଶ ପାଇବାକୁ ଯାଉଥିବା ଅଶେଷ ଗୌରବର ବିଷୟ । ଏହି ଜୟନ୍ତୀ-ଉତ୍ସବକୁ ସାଫଲ୍ୟ-ମଣ୍ଡିତ କରିବା ପାଇଁ ରାଜ୍ୟର ନେତୃସ୍ଥାନୀୟ ଉଦ୍ୟୋକ୍ତାମାନଙ୍କ ସହିତ ସମଗ୍ର ଶିକ୍ଷକ-ସମାଜ ପୂର୍ଣ୍ଣପ୍ରାଣରେ ସାହାଯ୍ୟ-ସହଯୋଗ କରିବା ସ୍ୱାଭାବିକ । କାରଣ ଏହା ଦ୍ୱାରା ବ୍ରହ୍ମଚାରୀ ବାବୁଙ୍କୁ ସମ୍ମାନିତ କରାଯିବା ସଙ୍ଗେ ସଙ୍ଗେ ସମଗ୍ର ଶିକ୍ଷକ ସମ୍ପ୍ରଦାୟର ମର୍ଯ୍ୟାଦା ବୃଦ୍ଧି ପାଇବାକୁ ଯାଉଛି । ବିଳମ୍ବରେ ହେଲେ ମଧ୍ୟ ଆଜି ଗୁଣର ଆଦର ଓ ଗୁଣୀର ପୂଜା ଆରମ୍ଭ ହୋଇଥିବା ସୌଭାଗ୍ୟର କଥା—"**Better late than never**" ଭବିଷ୍ୟତକୁ ଏହି ମହମୀୟ ପରମ୍ପରା ବଜାୟ ରହୁ ଏହାହିଁ କାମନା । ପରିଶେଷରେ ବ୍ରହ୍ମଗୃହୀ ବାବୁ, "ଶିକ୍ଷକ ମହାସଂଘ", "ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ" ଓ ତାହାର ମୁଖପତ୍ର "ଶିକ୍ଷକ-ଦର୍ପଣ"ର ଦୀର୍ଘାୟୁ ଓ ଶ୍ରୀବୃଦ୍ଧି ପାଇଁ ଚିରଞ୍ଜୀବୀ ହୁଅନ୍ତୁ—ଏହାହିଁ ପରମେଶ୍ୱରଙ୍କ ନିକଟରେ ମୋର ଐକାନ୍ତିକ ପ୍ରାର୍ଥନା ।

● ପ୍ରଧାନ ଶିକ୍ଷକ
ମଧୁସୂଦନ ମଧ୍ୟ ବିଦ୍ୟାଳୟ
କହ୍ଲାଇ ବିଦ୍ୟାଧରପୁର, ପୁରୀ



# ବନ୍ଦନୀୟ

ଶ୍ରୀ ସାଧୁ ଚରଣ ପଣ୍ଡା

ସମୟର ସ୍ରଷ୍ଟା ଶତ,
ମୋ ଆକାଶର ପ୍ରତ୍ୟେକ ମିଳମା
ଓ ସୌନ୍ଦର୍ଯ୍ୟର ପ୍ରଷ୍ଟକ ତାରମାନଙ୍କୁ ଦେଖିଲେ
ଆଜକୁ ଅନୁଶୀଳନ କଲେ
ବିପୁଳ ଭରସା ଓ ପ୍ରତ୍ୟୟର କଳ୍ପାସାରେ
ତୁମର କଲ୍ୟାଣ·····ଶୁଭଶିଷ ସୁଧା ଧାରାର ପୁଲକ
ଉଜ୍ଜ୍ୱଳ ହୋଇଉଠେ ।
ହେ ବନ୍ଦ୍ୟ·····ଅଭିନନ୍ଦମୟ···
ସ୍ୱୟଂପ୍ରଭ ତୁମର ଦ୍ୟୋତନା
ବିପୁଳ ଜୀବନ ସ୍ରୋତର ଶକ୍ତିଦାୟୀ ସ୍ଫୁର୍ତ୍ତି,
ତାହା ଚିରଜୀବୀ ରହୁ
ବିଭୁ ପଦେ ଏତିକ ମିନତି ।

● ଶିକ୍ଷକ
ପେରେଣ୍ଡାରୀ ବୋର୍ଡ ହାଇସ୍କୁଲ
କଟକ-୨

# ଶିକ୍ଷକ ଏକ ସଚେତନ ଶିଶୁ

ଶ୍ରୀ ପ୍ରସନ୍ନ କୁମାର ଦାଶ

ଶିକ୍ଷା ପୂର୍ଣ୍ଣାଙ୍ଗ ହେବା ପାଇଁ ୫ ଗୋଟି ପ୍ରଧାନ ବୃତ୍ତି ଆବଶ୍ୟକ ! ସେଗୁଡ଼ିକ ହେଲା—ଶରୀର ଧର୍ମୀ, ପ୍ରାଣ ଧର୍ମୀ, ମନ ଧର୍ମୀ, ଚେତନାଧର୍ମୀ ଓ ଆଧ୍ୟାତ୍ମ ଧର୍ମୀ । ଶିକ୍ଷାର ଏହି ବୃତ୍ତିଗୁଡ଼ିକ ଗୋଟିକ ପରେ ଗୋଟିଏ କ୍ରମାନ୍ୱୟରେ ଚାଲେ ବ୍ୟକ୍ତିର ଅଭିବୃଦ୍ଧି ଓ ପୁଷ୍ଟିର ସଙ୍ଗେ ସଙ୍ଗେ । ଏହାର ମାନେ ଏହା ନୁହେଁ ଯେ ଗୋଟିକର ସ୍ଥାନ ଆସି ଅନ୍ୟଟି ଅଧିକାର କରିବ ବା ଜୀବନର ଶେଷ ପର୍ଯ୍ୟନ୍ତ ଗୋଟିଏ ଅନ୍ୟଟିର ପରିପୂରକ ରୂପେ ଏକ ସଙ୍ଗେ ଚାଲିବ ।

ଯେଉଁ ଶିକ୍ଷକମାନଙ୍କର ଦାୟିତ୍ୱବୋଧ ଏବଂ ଆନ୍ତରିକତା ଅଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣନ୍ତି ଯେ ଛାତ୍ରମାନଙ୍କୁ ଶିକ୍ଷା ଦେବା ନିମିତ୍ତ ଯୋଗ୍ୟ ହେବାକୁ ହେଲେ ପ୍ରଥମରୁହିଁ ନିଜକୁ ଗଢ଼ିବାକୁ ପଡ଼େ, ନିଜ ସମ୍ପର୍କରେ ପୂର୍ଣ୍ଣ ମାତ୍ରାରେ ସଚେତନ ହେବାକୁ ହୁଏ, ମନ ଜୟୀ ହେବାକୁ ହୁଏ, ଯାହା ଦ୍ୱାରା ଛାତ୍ରମାନଙ୍କ ସମ୍ମୁଖରେ କୌଣସି ପ୍ରକାରର କୁଦୃଷ୍ଟାନ୍ତ ରହି ପାରିବ ନାହିଁ । କାରଣ ଦୃଷ୍ଟାନ୍ତ ଦ୍ୱାରା ଛାତ୍ରମାନଙ୍କୁ ଯେଉଁ ଶିକ୍ଷା ଦିଆହୁଏ ତାହା ବିଶେଷ ଫଳପ୍ରଦ ହୁଏ । ଯଦି ଶିକ୍ଷକ ଦୃଷ୍ଟାନ୍ତଗୁଡ଼ିକ କାର୍ଯ୍ୟରେ ପ୍ରଦର୍ଶନ କରି ନ ପାରନ୍ତି ତେବେ ଛାତ୍ରକୁ ଭଲ ଭଲ କଥା କହି ଜ୍ଞାନ-ପୂର୍ଣ୍ଣ ଉପଦେଶ ଦେଲେ ବି କିଛି ଫଳ ହୁଏ ନାହିଁ । ଆନ୍ତରିକତା, ସାଧୁତା, ସରଳତା, ସାହସିକତା, ନିଃସ୍ୱାର୍ଥପରତା, ଆସକ୍ତିହୀନତା, ସହନଶୀଳତା ଓ ଅଧ୍ୟବସାୟ ଆଦି ସମ୍ବନ୍ଧରେ ବକ୍ତୃତା ପରିବର୍ତ୍ତେ ଗୁରୁ ସ୍ୱୟଂ ଯଦି ଆଚରଣରେ ତାହା ଦେଖାନ୍ତେ, ତେବେ ଛାତ୍ରମାନଙ୍କ ପ୍ରତି ତାହାହିଁ ଉତ୍ତମ ଶିକ୍ଷା ବୋଲି ବୁଝିବାକୁ ହେବ । ସଦା ସର୍ବଦା ଉଚ୍ଚ ଆଦର୍ଶ ରକ୍ଷା କରି ସେହି ଆଦର୍ଶ ସବୁକୁ କାର୍ଯ୍ୟରେ ପରିଣତ କରି କୋମଳମତି ବାଳକ ବାଳିକାଙ୍କ ସମ୍ମୁଖରେ ଶିକ୍ଷାର ପ୍ରକୃତ ସ୍ୱରୂପ ଖୋଲିଦେବା ଉଚିତ ।

ଅତି ଅଳ୍ପ ସଂଖ୍ୟକ ଗୁରୁ ବା ଗୁର୍ବୀମାନଙ୍କୁ ବାଦ ଦେଲେ ଅଧିକାଂଶ ଜାଣନ୍ତି ନାହିଁ ଯେ ସେମାନଙ୍କ ତ୍ରୁଟି, ବିଚ୍ୟୁତି, ଚଞ୍ଚଳତା ଓ ଦୁର୍ବଳତା ଛାତ୍ରମାନଙ୍କ ଉପରେ କିପରି ମାରାତ୍ମକ ପ୍ରଭାବ ପକାଏ । ଯଦି ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଛାତ୍ରମାନଙ୍କ ଠାରୁ ସମ୍ମାନ ପାଇବାକୁ ଚାହାଁନ୍ତି, ତେବେ ସେମାନେ ତହିଁର ପାତ୍ର ହେବାର ଯୋଗ୍ୟତା ହାସଲ କରନ୍ତୁ ଏବଂ ନିଜର ଚିନ୍ତାକୁ ବଳିଷ୍ଠ କରନ୍ତୁ । କୌଣସି ସମୟରେ କର୍ତ୍ତୃତ୍ୱ ପ୍ରୟାସୀ, ସ୍ୱେଚ୍ଛାଚାରୀ, ଅଧୀର ଓ କ୍ରୋଧୀ ସ୍ୱଭାବ ହେବା ଉଚିତ ନୁହେଁ । ଯଦି କୌଣସି ଛାତ୍ର କିଛି ବୁଝି ନ ପାରି କୌଣସି ପ୍ରକାର ପ୍ରଶ୍ନ କରେ, ତେବେ ତାକୁ ନିର୍ବୋଧ ବୋଲି ଭାବିବା ଠିକ୍ ହେବ ନାହିଁ ବା ଅର୍ଥହୀନ ଉତ୍ତର ଦେବା ଉଚିତ ନୁହେଁ, ବରଂ ବା ଶ୍ରମ କଷ୍ଟ ସ୍ୱୀକାର କଲେ ସମସ୍ତ ପ୍ରକାରର ପ୍ରଶ୍ନର ଉତ୍ତର ଦେବାରେ କୌଣସି ବିଘ୍ନ ସୃଷ୍ଟି ହେବ ନାହିଁ । ସଦା ସର୍ବଦା ସତ୍ୟର ଉପାସକ ହେଲେ ଗୁରୁଙ୍କର ଅନ୍ତର ଶିଶୁର ଅନ୍ତର ପରି ସରଳ

ହୋଇ ଉଠେ । ସେଉଁମାନଙ୍କ ମନରେ ଚିର କାଳହିଁ ଶିଶୁ ସୁଲଭ ପ୍ରକୃତି ରହେ ସେମାନଙ୍କର ବର୍ଣ୍ଣନା, କଥିତ ଗଳ୍ପ ଓ କାହାଣୀ ଇତ୍ୟାଦି ଖୁବ୍ ସୁନ୍ଦର ହୁଏ ଓ ପରିବେଷଣର ପରିପାଟି ଆନନ୍ଦଦାୟକ ହୋଇଥାଏ।

ଛାତ୍ରମାନଙ୍କୁ ସବୁବେଳେ ତିରସ୍କାର କରିବା ଉଚିତ ନୁହେଁ । ଏହାଦ୍ୱାରା ସେମାନଙ୍କର କୋମଳ ହୃଦୟ କଠିନରୁ କଠିନତର ହୋଇଯାଏ ଏବଂ ଶେଷରେ ଯେତେ କଡ଼ା କଥା ଶୁଣିଲେ ମଧ୍ୟ ତା' ଉପରେ ସେ କୌଣସି ପ୍ରକାର ଗୁରୁତ୍ୱ ଦିଏ ନାହିଁ । ଯେଉଁ ଦୋଷ ସବୁ ବୟସ୍କମାନେ କରିଥାଆନ୍ତି ସେହି ଦୋଷ ପାଇଁ ଶିଶୁକୁ ଦୋଷୀ ସାବ୍ୟସ୍ତ କରାଯିବା ଉଚିତ ନୁହେଁ । କାରଣ ଶିଶୁମାନେ ଅତ୍ୟନ୍ତ ସତର୍କ, ସୂକ୍ଷ୍ମ ଓ ତୀକ୍ଷ୍ଣ ଦୃଷ୍ଟି ସମ୍ପନ୍ନ । ସେମାନେ ଶୀଘ୍ର ସମସ୍ତଙ୍କର ଦୋଷ ଦୁର୍ବଳତାକୁ ସହଜରେ ଜାଣିପାରନ୍ତି ।

ଛାତ୍ର ଯେବେ କୌଣସି ଭୁଲ କଲା ଓ ପରେ ତାହା ସ୍ୱୀକାର କଲା, ତେବେ ତାକୁ ସ୍ନେହର ସହିତ ଏପରି ଭାବେ ଗୁରୁ ବୁଝାଇ ଦେବା ଉଚିତ ଯେ, ଭବିଷ୍ୟତରେ ସେ ଯେପରି ତାହାର ପୁନରାବୃତ୍ତି ନ କରେ । ଯେ ଦୋଷ ସ୍ୱୀକାର କଲା ସେ ନିଶ୍ଚିତ ଭାବେ କ୍ଷମାର ଅଧିକାରୀ । ଆଉ ଗୋଟିଏ କଥା ଦେଖିବାକୁ ପଡ଼ିବ ଯେ ଗୁରୁ ଓ ଛାତ୍ର ମଧ୍ୟରେ ଯେପରି ଭୟର ଆବିର୍ଭାବ ନ ହୁଏ। କାରଣ ଭୟ ଶିକ୍ଷାକୁ ନିଃଶେଷ କରେ ଓ ତାହାର ସ୍ଥାନ ପୂରଣ କରେ କପଟ ଆଚରଣ ଓ ମିଥ୍ୟାଗିରି । ଗୁରୁମାନେ ଶିକ୍ଷାକୁ ଫଳପ୍ରଦ କରିବାକୁ ଚାହିଁଲେ ଗୁରୁ-ଛାତ୍ର ମଧ୍ୟରେ ପାରସ୍ପରିକ ଆସ୍ଥା ଓ ବିଶ୍ୱାସର ଏକ ନିବିଡ଼ ସମ୍ପର୍କ ରହିବା ଏକାନ୍ତ ବିଧେୟ ।

"ଶିକ୍ଷା" କହିଲେ କେତେକ ବୁଦ୍ଧିଜୀବୀ ଭାବନ୍ତି ଯେ କେବଳ ଗୁଡ଼ିଏ ପୁସ୍ତକ ରୋମନ୍ଥନ କରିବା । ବାସ୍ତବରେ ଶିକ୍ଷାର ଅର୍ଥ ଏହା ନୁହେଁ । ଶିକ୍ଷକଙ୍କର ଏପରି ଦକ୍ଷତା ରହିବା ଉଚିତ ଯେ ଯାହା ଫଳରେ ଶିଶୁ ଏକାଗ୍ର ହେବାରେ ଅଧିକ ସମର୍ଥ ହେବ । ଆବଶ୍ୟକତା ଓ ପରିସ୍ଥିତି ଅନୁସାରେ ବ୍ୟାୟାମ ଠାରୁ ଆରମ୍ଭ କରି ପୁରସ୍କାର ପର୍ଯ୍ୟନ୍ତ ସବୁ କିଛିର ଆଶ୍ରୟ ନେବାକୁ ପଡ଼ିବ । ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ଉପାୟ ହେଉଛି ଶିକ୍ଷକ ଯେଉଁ ଜିନିଷଟିକୁ ଶିକ୍ଷା ଦେବେ ସେଥିରେ ଶିଶୁର ରୁଚି ଜାଗ୍ରତ କରାଇବା । ଶିଶୁର ଆଗ୍ରହ ସୃଷ୍ଟି କରାଇବା ପାଇଁ ଯେଉଁ ଶ୍ରମଦାନ କରାଯାଏ, ତାହାଠାରୁ ଆଉ ଶ୍ରେଷ୍ଠ ଦାନ ପୃଥିବୀରେ କିଛି ନାହିଁ । ଶିଶୁମାନଙ୍କର ସ୍ମରଣ ଶକ୍ତି ଅପେକ୍ଷା ବୋଧ ଶକ୍ତି ଉପରେ ଅଧିକ ଗୁରୁତ୍ୱ ଦେବାକୁ ହେବ । ମାନବ କେବଳ ଯାହା ବୁଝିପାରେ ତାହାକୁ ହିଁ ସେ ଠିକ୍ ରୂପେ ହୃଦୟଙ୍ଗମ କରିପାରେ ଓ ଶୁକବତ୍ ମୁଖସ୍ଥ କରିଥିବା ବିଷୟ କ୍ରମେ କ୍ରମେ ଝାପ୍‌ସା ହୋଇ ଶେଷରେ ଉଭେଇ ଯାଏ । ତା'ଛଡ଼ା ଶିଶୁର କୌଣସି ଜିନିଷ ସମ୍ପର୍କରେ "କିପରି", "କାହିଁକି" ପ୍ରଶ୍ନର ଉତ୍ତର ଦେବାକୁ ଶିକ୍ଷକମାନେ କେବେ ବୀତସ୍ପୃହ ହେବା ଉଚିତ ନୁହେଁ । ତେବେ ଯାଇ ଶିଶୁମାନଙ୍କର ସୁପ୍ତ କୌତୂହଳ ଜାଗ୍ରତ ହେବ ଏବଂ ଶିଶୁ ଆକୃଷ୍ଟ ହୋଇ ବିଦ୍ୟାଳୟରୁ ବହୁତ ବେଶୀ ଶିଖିବ ।

ଶ୍ରୀ ବନମାଳୀ ବ୍ରହ୍ମଚାରୀ ଥିଲେ ଆଦର୍ଶ ଶିକ୍ଷକ । ସେ ଜଣେ ସମାଜ ସେବୀ, ସଂଗଠକ, ଶିଶୁଲେଖକ, ସମ୍ପାଦକ ଓ ବକ୍ତା । ଶିଶୁମାନଙ୍କ ପାଇଁ ସେ ୧୨ ଖଣ୍ଡ ଉପାଦେୟ ପୁସ୍ତକ ରଚନା କରିଛନ୍ତି । ନିଜ ଜୀବନର ଅନୁଭୂତିଗୁଡ଼ିକ ସେ "ବନର ମନକଥା" ପୁସ୍ତକରେ ଏକତ୍ରିତ କରିଛନ୍ତି । ସେ ଶହେ ବର୍ଷ ବଞ୍ଚନ୍ତୁ— ଏହାହିଁ ମୋର ତାଙ୍କର ୭୯ ତମ ଜନ୍ମ ଦିବସରେ ଜଗତର ନାଥ ଜଗନ୍ନାଥଙ୍କ ପାଖରେ ସବିନୟ ଅଳି ।

● ଝାଞ୍ଜିରିମଙ୍ଗଳା
କଟକ-୯



# ପୂଜ୍ୟ ପଣ୍ଡିତଜୀ ବ୍ରହ୍ମଚାରୀ

ଶ୍ରୀ ଶ୍ରୀକାନ୍ତ ନନ୍ଦ

ନାଁ ଟି ବହୁ ଆଗରୁ ଜାଣିଥିଲି, କିନ୍ତୁ ଏହି ମହାନ୍ ଆଦର୍ଶ ବ୍ୟକ୍ତିତ୍ୱ ସମ୍ପନ୍ନ ସାର୍ଥକ ପୁରୁଷର ପରିଚୟ ମୁଁ ପାଇ ନ ଥିଲି । ମଣିଷଟିକୁ ଯଦିଓ ବହୁବାର ଦେଖିଥିଲି ମାତ୍ର ଏମିତିଆ ସାଧାସିଧା, ସରଳ, ନିରାଡ଼ମ୍ବର ଚେହେରା ଭିତରେ ଏଡେ ବଡ଼ ମହାନ୍ ବ୍ୟକ୍ତିତ୍ୱଟା ଲୁଚି ରହିଥିବାର ଜାଣି ନ ଥିଲି । ସତରେ ଖାଣ୍ଟି ମଣିଷଟାଏ ଚିହ୍ନିବା ଏ ଯୁଗରେ ବହୁ କଷ୍ଟସାଧ୍ୟ ବ୍ୟାପାର ହୋଇ ପଡ଼ୁଛି । ଜଣେ ସାଧାରଣ ଲୋକ ମୋଜାଇକ୍ ଚଟାଣର ଏଡ଼େ ବଡ଼ କୋଠାଘର ଭିତରେ ଏମିତିଆ ସରଳ, ନିରାଡ଼ମ୍ବର ଲୋକଟିକୁ ଦେଖିଲେ ମୋ ଭଳି ବୋକାମୀ କରି ନିଶ୍ଚୟ ମନେ କରିବ ଯେ ଲୋକଟି ବୋଧେ ଘର ମାଲିକଙ୍କର କୌଣସି କର୍ମଚାରୀ ହେବ । ମୁଁ ମୋର ବୋକାମୀକୁ ଆବିଷ୍କାର କଲି, ଯେଉଁ ଦିନ ମୋର ତାହାଙ୍କ ସହିତ ପ୍ରଥମ ସାକ୍ଷାତ ଓ କଥାବାର୍ତ୍ତା ହେଲା ।

ତରୁଣ କବି ତଥା ସାହିତ୍ୟିକ ଚୈତନ୍ୟ ବାବୁ ମୋର ସହପାଠୀ, ତଥା ଅନ୍ତରଙ୍ଗ ବନ୍ଧୁ । 'ଜାଗର' ଦିନ ମହାଦେବ ମନ୍ଦିର ଖୁବ୍ ପାଖରେ ଥାଇ, ଦର୍ଶନ କରିବାକୁ ମନ ନ ପଡ଼ିଲେ ବି, ଚୈତନ୍ୟବାବୁଙ୍କ କବି କୁଟୀରକୁ କେଉଁ ଦିନ ମୁହଁ ମାରିବାରେ ମୁଁ ଭୁଲିଯାଏ ନି । ତେଣୁ ଚୈତନ୍ୟ ବାବୁଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ—ଏହି ନିରଳସ, କର୍ମବୀର ମହାନ୍ ପୁରୁଷଙ୍କ ସହିତ ପରିଚିତ କରାଇବାରେ ଯେ ବହୁ ସାହାଯ୍ୟ କରିଥିଲା, ଏଥିରେ ସନ୍ଦେହ ନାହିଁ । ସେ ଦିନ ଚୈତନ୍ୟବାବୁ ଓ ମୁଁ, ଦୁହେଁ ସନ୍ଧ୍ୟା ବେଳେ ଘରଟିରେ ବସି କଲେଜ, ଓଡ଼ିଆ, ସାହିତ୍ୟ, ରାଜନୀତି, ପେଟପାଟଣା, ଦେଶସେବା ପ୍ରଭୃତି କଥା ନେଇ ଆଲୋଚନା ରତ ଥାଉ । ଆସରଟା ଖୁବ୍ ସରଗରମ ହୋଇ ଉଠୁଥାଏ । ଏତିକି ବେଳେ ବ୍ରହ୍ମଚାରୀ ମହାଶୟ ହଠାତ୍ ଘର ଭିତରକୁ ପଶିଆସି ଚୌକିଟା ଉପରେ ବସିପଡ଼ି ଆମ ଗପରେ ଜଣେ ଭାଗୀଦାର ହେବାକୁ ଚାହିଁଲେ । ତେଣୁ ଆମ ଗପର ଦିଗଟା ହଠାତ୍ ପରିବର୍ତ୍ତନ ହେବାକୁ ଲାଗିଲା । କିଛି ସମୟ ପରେ ନୀରବତାକୁ ଭାଙ୍ଗି, ଗପର ଗୋଟିଏ ଖିଅ ବାହାର କରିବାକୁ ଯାଇ ପ୍ରଥମେ ସେ ମୋର ପରିଚୟ ପଚାରି ବସିଲେ, "ଏ ବାବୁ କ'ଣ କରୁଛନ୍ତି ?" ମୁଁ ଟିକେ ଇତସ୍ତତଃ ହୋଇ ଉତ୍ତର ଦେଲି—'ଲ' ପଢ଼ୁଛି ଓ ଏମ୍. ଏ. ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେଉଛି । ତା' ପରେ ମହାଶୟ ଆପଣେ ଟିକେ ମୁରୁକି ହସି ମୋ ଆଡ଼କୁ ଚାହିଁ କହିଲେ—"**M.A.** ପାଶ୍ କଲେ କ'ଣ ଚାକିରି ମିଳୁଛି ? ତା'ପରେ ଓକିଲ ମାନଙ୍କ ସଂଖ୍ୟା ତ ମକ୍କେଲମାନଙ୍କ ଅପେକ୍ଷା ବୋଧେ ବେଶୀ । ତେବେ ତମେ କ'ଣ କରିବ ?" ଏପ୍ରକାର ଅପ୍ରତ୍ୟାଶିତ, ଅଡ଼ୁଆ, ଜଟିଳ ପ୍ରଶ୍ନର ଉତ୍ତର ମୁଁ କି ଉପାୟରେ ଦେବି, ତାହା ଭାବୁଥିଲା ବେଳେ ସେ ମୋର ହାବ ଭାବ ଲକ୍ଷ୍ୟକରି ଓ ମୋର ଘାବଡ଼େଇ ଯିବାର ମର୍ମ ବୁଝିପାରି, ବେକାରି ଶିକ୍ଷିତ ଓ ବର୍ତ୍ତମାନର ସମସ୍ୟା ବହୁଳ ଦେଶ ବିଷୟରେ କେତେକ ଗୁରୁତ୍ୱ-

ପୂର୍ତ୍ତି କଥା କହିଗଲେ । ଏସବୁ ନିଜର ବାକ୍ ଚାତୁରୀ, ବଡ଼ାଣିଆ, କିମ୍ବା ସବ୍‌ଜାନତା ମାନ୍ତରେ ସେ କହି ନ ଥିଲେ । ପ୍ରକୃତରେ ତାହାଙ୍କ କଥାଗୁଡ଼ାକ ରେଡ଼ିଓରେ 'ଯୁବଜଗତ' କାର୍ଯ୍ୟକ୍ରମର ଅନ୍ୟ ଏକ ଅଙ୍ଗ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସେ ପ୍ରକୃତ ଘଟଣାଟିକୁ ମର୍ମେ ମର୍ମେ ବୁଝିଥିଲେ । ସେ କହିଲା ବେଳେ ପୁରାପୁରି ଭାବପ୍ରବଣ ହୋଇ ପଡୁଥିଲେ । ତାଙ୍କର ଗମ୍ଭୀର ଚିନ୍ତା, ନିରାଡ଼ମ୍ବର ଭାଷା ଓ କଥାର ଓଜନରୁ ଜଣା ପଡୁଥିଲା, ସତେ ଯେମିତି ଏ ସମସ୍ୟାଗୁଡ଼ିକ ତାଙ୍କର ମୁଣ୍ଡ ଉପରେ ବୋଝ ହୋଇ ରହିଛି । ମୋର ତାଙ୍କ ସହିତ ଏହି ପ୍ରଥମ କଥାବାର୍ତ୍ତାରେ କେଜାଣି କାହିଁକି କେମିତି ଗୋଟାଏ ପୁରାପୁରି ଭକ୍ତିଭାବ ଆସି ଯାଇଥିଲା । ମୁଁ ସେତେବେଳେ କେବଳ ଏତିକି ଭାବୁଥିଲି, ଏମିତିଆ ହୃଦୟବାନ ନିର୍ଭୀକ, ପରୋପକାରୀ, ତ୍ୟାଗୀ, ନିଷ୍ଠାବାନ ଲୋକ ଯଦି ଶହେରେ ଜଣେ ଦୁନିଆକୁ ଆସନ୍ତେ, ତାହାହେଲେ ମହାତ୍ମା ଗାନ୍ଧିଜୀଙ୍କର କଳ୍ପିତ 'ରାମରାଜ୍ୟ' କେତେଟା ଅଂଶରେ ଫଳବତୀ ହୁଅନ୍ତା । ତା'ପରେ ମୁଁ ତାଙ୍କ ପାଖକୁ ଯେତେବେଳେ ଯାଇଛି, ସେତେବେଳେ ଲକ୍ଷ୍ୟ କରିଛି ସେ ମହାଶୟ ସବୁବେଳେ ଲେଖା ବା ପଢ଼ା କାମରେ ବ୍ୟସ୍ତ । ବୃଦ୍ଧାବସ୍ଥାରେ ଜ୍ଞାନ ଅର୍ଜନ କରିବା ଓ ସବୁ ବିଷୟରେ ତନ୍ନ ତନ୍ନ କରି ବୁଝି ରଖିବା ପାଇଁ ଯେଉଁ ଉତ୍କଣ୍ଠା ତାହା କ୍ୱଚିତ୍ ଲୋକଠାରେ ଦେଖାଯାଏ ।

ମୋଟ ଉପରେ କହିବାକୁ ଗଲେ ଏ ମହାଶୟଙ୍କର ନିରବଚ୍ଛିନ୍ନ ଚେଷ୍ଟା, ତ୍ୟାଗ ଓ କର୍ମତତ୍ପରତା ଫଳରେ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ ଏକ ବିରାଟ ଅନୁଷ୍ଠାନରେ ପରିଣତ ହୋଇ ପାରିଛି । ଓଡ଼ିଶାରେ ସହସ୍ର ଶିକ୍ଷକ ଭାଇଙ୍କର ମାନ ମର୍ଯ୍ୟାଦା ଯେ କେବଳ ସେ ରକ୍ଷା କରିବାକୁ ସମର୍ଥ ହୋଇଛନ୍ତି ତାହା ନୁହେଁ, ଦୁଃସ୍ଥ, ଗରିବ, ଅନାଥ, ଦୁଃଖରେ ପଡ଼ିଥିବା ଲୋକ ପ୍ରତି ତାହାଙ୍କର ଅନ୍ତର ଆତ୍ମା ସବୁବେଳେ କାନ୍ଦି ଉଠିଛି । ସେ ନିଜର ସର୍ବଚେଷ୍ଟା ପ୍ରୟୋଗ କରି ପରକୁ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି । ତେଣୁ ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମବାର୍ଷିକରେ ମୁଁ ଭଗବାନଙ୍କର ନିକଟରେ ପ୍ରାର୍ଥନା କରୁଛି, ତାହାଙ୍କ ଜୀବନର ପଥ ଦୀର୍ଘ ହେଉ, ତାହାଙ୍କ ଉନ୍ନତି ପଥରେ ଭଗବାନଙ୍କର ଆଶିଷ ଝରିପଡ଼ୁ ।

● ଆଡ୍‌ଭୋକେଟ
ପିଠାପୁର, କଟକ



# ତାଙ୍କ ଜନ୍ମ ତିଥିରେ

**ଶ୍ରୀ ପ୍ରଶାନ୍ତ ମହାନ୍ତି**

ସତ କହିବାକୁ ଗଲେ ଓଡ଼ିଆ ଶିଶୁ ସାହିତ୍ୟ ଯେତେ ଉନ୍ନତ ହେବା କଥା ତାହା ହୋଇପାରିନାହିଁ । କେବଳ କେତେକ ପରୀ ରାଇଜ ବା ଭୂତ ରାଇଜର କାହାଣୀ ଅଥବା ଅଲୌକିକ ବୁଢ଼ୀ ଅସୁରୁଣୀ ବା ରାଜାପୁଅ ମନ୍ତ୍ରୀ ପୁଅର ବିଚିତ୍ର କାହାଣୀ ଭିତରେ ହିଁ ଏହା ସୀମାବଦ୍ଧ ରହିଯାଇଥିବା ପରି ମନେହୁଏ । ଏହି ପରମ୍ପରାକୁ ଅତିକ୍ରମ କରି ନୂଆ ସ୍ୱାଦର ଗପ କବିତା କିମ୍ବା ବିଜ୍ଞାନ ଭିତ୍ତିକ ଶିଶୁ ସାହିତ୍ୟ ସୃଷ୍ଟି ଦିଗରେ ଖୁବ୍ କମ୍ ଉଦ୍ୟମ ହୋଇଛି । ତଥାପି ବି ତମସାଚ୍ଛାଦିତ ଓଡ଼ିଆ ସାହିତ୍ୟର ଏହି ବିଭାଗଟିର ଉନ୍ନତି ଦିଗରେ ଯେଉଁମାନେ ଲେଖନୀ ଚାଳନା କରିଛନ୍ତି, ସେମାନେ ଆମର ଚିର ନମସ୍ୟ । ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଚାରୀ ହେଉଛନ୍ତି ଅନ୍ୟତମ ସୁପ୍ରତିଷ୍ଠିତ ଶିଶୁ ସାହିତ୍ୟିକ । ନିଜ ଜୀବନର କେତେକ ମୂଲ୍ୟବାନ ସମୟ ସେ ଏଥିପାଇଁ ବ୍ୟୟ କରିଛନ୍ତି ଏବଂ ଏବେ ସୁଦ୍ଧା ଏ ଦିନରେ ଅବିରତ ଲେଖନୀ ଚାଳନାକୁ ଅବ୍ୟାହତ ରଖିଛନ୍ତି । ବ୍ରହ୍ମଚାରୀ ହେଉଛନ୍ତି ବହୁ ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସମାହାର । ବିଭିନ୍ନ ନ୍ୟାଯ୍ୟ ଦାବୀ ପୂରଣ ନିମନ୍ତେ ଓଡ଼ିଶାର ଶିକ୍ଷକ ସମାଜ ବହୁକାଳରୁ କରି ଆସୁଥିବା ଆନ୍ଦୋଳନ ଆଦିରେ ସେ ହେଉଛନ୍ତି ଅନ୍ୟତମ ପୁରୋଧା । ତାଙ୍କ ପରିଚୟରେ ଆସିଥିବା କିମ୍ବା ଆସୁଥିବା ଯେ କେହି ଏହା ନିଶ୍ଚୟ ସ୍ୱୀକାର କରିବେ ଯେ କେବଳ ସହଧର୍ମୀ ଶିକ୍ଷକମାନଙ୍କର ନୁହେଁ ଅନ୍ୟାନ୍ୟ ସାଧାରଣ ଲୋକଙ୍କର ଦୁଃଖ ଦୁର୍ଦ୍ଦଶାକୁ ସେ ନିଜର ଦୁଃଖ ଦୁର୍ଦ୍ଦଶା ବୋଲି ଭାବିଥାନ୍ତି । ଏଇ ଲେଖକ ବନମାଳୀ ବାବୁଙ୍କ ନିକଟକୁ ଅନେକ ଲୋକ ଆସି ସାହାଯ୍ୟ ଚାହୁଁଥିବାର ଓ ପାଇ ଥିବାର ପ୍ରତ୍ୟକ୍ଷ ପ୍ରମାଣ ବାରମ୍ବାର ପାଇଛି । ଜନ ସେବାହିଁ ବୋଧହୁଏ ତାଙ୍କର ପରମ ଧର୍ମ ।

ବର୍ତ୍ତମାନ ଇତିହାସର ଗୋଟିଏ ଗୋଟିଏ ଚରିତ୍ର ହୋଇ ରହିଥିବା ଊନବିଂଶ ଶତାବ୍ଦୀର ବହୁ ଜନସେବୀଙ୍କର ଜୀବନ କାହାଣୀକୁ ସେ ଯେପରି ଭାବରେ ପିଲାଙ୍କ ଉପଯୋଗୀ କରି ଲେଖିଛନ୍ତି, ତାହା ଶିଶୁ-ସାହିତ୍ୟ କ୍ଷେତ୍ରରେ ଗୋଟିଏ ଅଭିନବ ପଦକ୍ଷେପ । ତାଙ୍କ ରଚିତ 'ଚରିତ ଓ ଚରିତ୍ର,' 'ହୁକେ ହୋ,' 'ବନର ମନକଥା', 'ନେପୋଲିୟନ' ପ୍ରଭୃତି ପୁସ୍ତିକାମାନଙ୍କରେ କିଛି ନା' କିଛି ନୂଆ ସ୍ୱାଦ ଭରି ରହିଛି । ତାଙ୍କର 'ହୁକେ ହୋ' ବହି ରାଷ୍ଟ୍ରୀୟ ପୁରସ୍କାର ଏବଂ 'ବନର ମନ କଥା' ଓଡ଼ିଶା ସରକାରଙ୍କ ପୁରସ୍କାର ଲାଭକରିଛି । ବ୍ରହ୍ମଚାରୀଙ୍କର ସାହିତ୍ୟିକ ସ୍ୱୀକୃତି ଅବଶ୍ୟ ରାଷ୍ଟ୍ରୀୟ ଅଥବା ରାଜ୍ୟ ପୁରସ୍କାର ଉପରେ ନିର୍ଭରଶୀଳ ନୁହେଁ । ବହୁ ଆଗରୁ ତାଙ୍କୁ ଓଡ଼ିଶାର ଅଗଣିତ ଶିଶୁ ଓ କିଶୋର ପାଠକ ପାଠିକା ନିଜର ପ୍ରିୟ ସାହିତ୍ୟିକ ଭାବରେ ଗ୍ରହଣ କରି ନେଇଛନ୍ତି ।

ତାଙ୍କ ସୃଷ୍ଟ ଦେଶପ୍ରେମ ମୂଳକ ରଚନା ଏବଂ ପିଲାଙ୍କ ଶିକ୍ଷଣୀୟ ଅନ୍ୟାନ୍ୟ ଲେଖା କେବଳ ବର୍ତ୍ତମାନ ନୁହେଁ ଭବିଷ୍ୟତରେ ବହୁକାଳ ଧରି ଓଡ଼ିଆ ଶିଶୁ ଓ କିଶୋର ମାନଙ୍କୁ ଉଦ୍‌ବୁଦ୍ଧ କରିବ । ଏହିଭଳି ଲେଖକମାନଙ୍କର ବଳିଷ୍ଠ ଲେଖନୀ ଚାଳନାରେ ଓଡ଼ିଆ ଶିଶୁ ସାହିତ୍ୟ ସମୃଦ୍ଧ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଆଜି ବ୍ରହ୍ମଗ୍ରନ୍ଥିଙ୍କର ପବିତ୍ର ଜନ୍ମ ଦିବସରେ ସେ ଦୀର୍ଘ ଜୀବନ ହାସଲ କରିବା ସଙ୍ଗେ ସଙ୍ଗେ ଆହୁରି ଅନେକ ଦିନ ଧରି ଓଡ଼ିଆ ସାହିତ୍ୟର ସେବା କରନ୍ତୁ—ଏହାହିଁ ଭଗବାନଙ୍କ ନିକଟରେ କାମନା ।

ଏଇ ବୟୋବୃଦ୍ଧ ଶିଶୁ ସାହିତ୍ୟିକଙ୍କୁ ବହୁ ଆଗରୁ ସମ୍ବର୍ଦ୍ଧିତ କରାଯିବା ଉଚିତ୍ ଥିଲା । ତେବେ ସେ ଯାହା ହେଉନା କାହିଁକି, ଜାତି ପକ୍ଷରୁ ତାଙ୍କର ଜୟନ୍ତୀ ପାଳନ, ବାସ୍ତବିକ୍ ତାଙ୍କର ଯୋଗ୍ୟ ସମ୍ମାନ, ଏଥିରେ ସନ୍ଦେହର ଅବକାଶ ନାହିଁ ।

● ସମ୍ପାଦକ, 'ଟିକିଦୁନିଆଁ'
କନିକାରୋଡ଼, କଟକ-୮



# ମୁଁ ତାଙ୍କୁ ଯେପରି ଦେଖିଛି

**ସୁଷମା ମହାନ୍ତି**

ପରିବାର ତାଙ୍କର କେତେ ଜଣ ସ୍କୁଲ କଲେଜର ଛାତ୍ରଛାତ୍ରୀଙ୍କୁ ନେଇ ଏବଂ ସମ୍ପଦ ତାଙ୍କର ଆଲମାରୀ ଭର୍ତ୍ତି ବହି । ସାରା ଜୀବନ ଧରି ପରର ଉପକାର କରିବା ହିଁ ତାଙ୍କର ଧର୍ମ । ସଂସାର ନାହିଁ, ସ୍ତ୍ରୀ ନାହିଁ, ଘର ନାହିଁ, ପିଲାପିଲି ନାହାନ୍ତି । କିନ୍ତୁ ତଥାପି ଅକଳନ୍ତି ତାଙ୍କର ସନ୍ତାନ । ଅସରନ୍ତି ତାଙ୍କ ମମତାର ଉତ୍ସ । ବୃଦ୍ଧ ବୟସରେ ବି ମନ ଭିତରେ ଲହଡ଼ି ଖେଳେ ଠିକ ଶିଶୁର କଳରବ । କେତେ ଠିକ ପିଲାଙ୍କ ମନରେ, ତାଙ୍କ 'ହୁକେ ହୋ', 'କିଏ କେମିତି', 'ବନର ମନକଥା', 'ଚରିତ ଓ ଚରିତ୍ର' ଆନନ୍ଦର ଫଗୁ ବିଛୁଡ଼ି ଦିଏ । ପିଲାଙ୍କ ହସର ଫୁଲ ପାଖୁଡ଼ା ଭିତରେ ବୋଧହୁଏ ସିଏ ହଜି ଯାଆନ୍ତି ସେଇ ସେ ମହାନ୍ ଗୁରୁ ବନମାଳୀ ବ୍ରହ୍ମଚାରୀ ।

ବ୍ରହ୍ମଚାରୀ ମହାଶୟ ଜ୍ଞାନର ଭଣ୍ଡାର । ଚେଷ୍ଟାକଲେ ଆହୁରି ଅନେକ ଉପାଦେୟ ବହି ଲେଖି ପାରନ୍ତେ, କିନ୍ତୁ ଶିଶୁ ପତ୍ରିକା ଲେଖିବାର କୋମଳ ମନ ତାଙ୍କୁ ଯେମିତି ଗଭୀର ଉତ୍ସାହ ଦେଉଛି । ଗୋପବନ୍ଧୁଙ୍କର ଆଦର୍ଶକୁ ମାନିନେଇ ସାରା ଜୀବନଟାକୁ ପରର କଲ୍ୟାଣ ସାଧନ ପାଇଁ ସେ ଉତ୍ସର୍ଗ କରି ଦେଇଛନ୍ତି । ତାଙ୍କର ଅନେକ ଉପକାରର ଅସରନ୍ତି କାହାଣୀ ଅନେକେ ଉପଲବ୍ଧି କରିଛନ୍ତି । ଜୋର ଜବରଦସ୍ତି ତାଙ୍କ ଜାତକରେ ନାହିଁ । ଦରକାର ହେଲେ ପରର ହାତଗୋଡ଼ ଧରିବାକୁ ମଧ୍ୟ ପଛୁନ୍ତି ନାହିଁ । ଜୀବନରେ ଠାକୁରଙ୍କୁ ଡାକିବା ପାଇଁ ତାଙ୍କୁ ମନ୍ଦିରକୁ ଯିବାର କେହି ଦେଖିନି । ଜୀବନ ଦେବତାର ପାଦତଳେ ସେ ନିଜକୁ ସମର୍ପଣ କରିଛନ୍ତି ପିଠର ଗିଲଗାନଙ୍କ ଭଳି ।

● ଭଦ୍ରକ,
ବାଲେଶ୍ୱର

ସ୍ତ୍ରୀ ମରିଗଲେ ମାତ୍ର ୨୫ ବର୍ଷ ବୟସରେ । ସେ ଦ୍ୱିତୀୟ ପତ୍ନୀ ଗ୍ରହଣ କରି ନାହାନ୍ତି । ଏଇ ବିରାଟ ସଂସାର ଯାହାଙ୍କର ପରିବାର, ସେ ଗୋଟିଏ ସଂସାରଟିରେ ଆବଦ୍ଧ ରହିଥାନ୍ତେ କିପରି ? ଦିନେ ସେ ଭାବିଥିଲେ ସ୍ୱାମୀ ମରିଗଲେ ସ୍ତ୍ରୀ ସାରା ଜୀବନ ଧରି ବୈଧବ୍ୟ ଯନ୍ତ୍ରଣା ଭୋଗକରି ରହୁଛି, କିନ୍ତୁ ସ୍ତ୍ରୀ ମରିଗଲେ ସ୍ୱାମୀ ନ ରହି ପାରିବ କାହିଁକି ? ଏଇ Tradition କୁ ସେ ବଦଳାଇ ଦେବାକୁ ଚାହିଁଥିଲେ । ଦୁନିଆରେ କେହି ନ କରୁ, ସେ ଜଣେ ତ କରି ପାରିବେ ।

ଗୋପବନ୍ଧୁଙ୍କର "କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ" କୁ ସେ ଜୀବନର ମାନଦଣ୍ଡ ରୂପରେ ଧରି ନେଇଥିଲେ । ତାଙ୍କର ସାମାନ୍ୟ ଦାନରେ ଆଜି ଅନେକ ଦରିଦ୍ର ଅସହାୟ ବାଳକ ବାଳିକା ଦୁନିଆଁ ଦୁଆରେ ନିଜର ପରିଚୟ ପତ୍ର ଧରି ଠିଆ ହୋଇ ପାରିଛନ୍ତି । ସାରା ଜୀବନ ଧରି ପରର ଉପକାର କରିବା ପାଇଁ ସେ ଯେମିତି ଜନ୍ମ ହୋଇଥିଲେ । କିନ୍ତୁ ସେଇ ବିଶାଳ ହୃଦୟଟାରେ, ସେଇ ବିରାଟ ମନଟାରେ ଟିକିଏ ବି ଗର୍ବ ନାହିଁ, ଅହଙ୍କାର ନାହିଁ, କ୍ଷୋଭ ନାହିଁ । ସମୁଦ୍ରକୁ ଗଣ୍ଡେ ପାଣି ହେଲେ ବି ଏ ସମାଜକୁ ତାଙ୍କର ଏହି ମହାନ୍ ଦାନ, ତାଙ୍କୁ ଦିନେ ପରିବ୍ୟାପ୍ତ କରି ତୋଳିବ । ତାଙ୍କ ଶୁଭ ଜନ୍ମବାସରରେ ବିଭୁ ଚରଣରେ ଏତିକି କାମନା, ସେ ଦୀର୍ଘଜୀବୀ ହୁଅନ୍ତୁ । ତାଙ୍କର ଶୀତଳ କର ସ୍ପର୍ଶରେ ଆଜିର ଏ ଅନାଟନ ଦୁନିଆଁର ଆହୁରି କେତୋଟି କଳିକା ପୁଷ୍ପିତ ହୁଅନ୍ତୁ ।



# ଜୟତୁ ବ୍ରହ୍ମଚାରୀ

ଶ୍ରୀ ଯୋଗେନ୍ଦ୍ରନାଥ ଷଡ଼ଙ୍ଗୀ

ନୀତି ଯେପରି, କାମନ୍ତି ମଧ୍ୟ ସେପରି । ରସରସିଆ କଥାଛଳରେ ଯେମିତି ଉପଦେଶ, ଅନ୍ୟାୟ, ଅନୀତି, ଭ୍ରଷ୍ଟାଚାର, ବ୍ୟଭିଚାର, ବିରୁଦ୍ଧରେ ସେହିପରି କଠୋର ମର୍ମଭେଦୀ ତୀବ୍ର ବାକ୍ୟବାଣ । ସାଧାରଣ ଜୀବନର ପ୍ରାରମ୍ଭରେ ଜଣେ ଶିକ୍ଷକ । ଯେ ପ୍ରକୃତରେ ଶିକ୍ଷକ ସେ ସବୁବେଳେ ଦେଶ ଓ ଜାତିର ଶିକ୍ଷକ ହୋଇ ରହିଥାଏ । ସେ ବା କାହିଁକି ବିଦ୍ୟାଳୟର ସୀମିତ ପରିସର ମଧ୍ୟରେ ନିଜକୁ ଆବଦ୍ଧ କରି ରଖିବ ? ଯେ ପ୍ରକୃତରେ ଶିକ୍ଷକ ସେ କଣ କେବେହେଲେ ଗୁରୁକୁଳ ପ୍ରତି ହେଉଥିବା ଅନ୍ୟାୟ, ଅନୀତିକୁ ମୁଣ୍ଡ ପାତି ସହି ନେବ ? ଜଣେ ନିଷ୍ଠାପର ଶିକ୍ଷକ ହିସାବରେ ବନମାଳୀ ବାବୁଙ୍କ ଜୀବଦ୍ଦଶାରେ ସେହି କଥା ହିଁ ହେଲା ।

ନିଜର ପ୍ରତ୍ୟକ୍ଷ ଅନୁଭୂତି ଓ ଦେଶର ଅଗଣିତ ଶିକ୍ଷକ ସମାଜର ଅକଥନୀୟ ଦୁଃଖଦୁର୍ଦ୍ଦଶାର ବୁକୁଫଟା କାହାଣୀ ଶୁଣି ସେ ହତବାକ୍ ହୋଇ ନିଜର ଆଦର୍ଶ, ଅଧ୍ୟବସାୟ ଓ ନିଷ୍ଠାବଳରେ ଗୁରୁକୁଳ ଉପରେ କ୍ରମାଗତ ହୋଇ ଚାଲିଥିବା ଅନ୍ୟାୟ ବିରୁଦ୍ଧରେ ପ୍ରାଣ-ପାତ ସଂଗ୍ରାମ କରିବାପାଇଁ ବ୍ରହ୍ମଚାରୀ ନିଜର ମନ, ନିଷ୍ଠା ଓ ପ୍ରତିଜ୍ଞା ନେଇ ଆଗେଇ ଚାଲିଲେ ନିଜର ଲକ୍ଷ୍ୟ ପଥରେ । ମନରେ ଭୀଷ୍ମର ପ୍ରତିଜ୍ଞା, ସମ୍ମୁଖରେ ଶିକ୍ଷକ ସମାଜର ସମ୍ମାନ, ଆଉ ଅନ୍ତରରେ ମୋର ଜୀବନ ପଛେ ଯାଉ, ମୁଁ ପଛେ ରସାତଳକୁ ଯାଏ, କିନ୍ତୁ ମୋର ଅଗଣିତ ଶିକ୍ଷକ ସମାଜର ସମ୍ମାନରେ ସାମାନ୍ୟ ଆଞ୍ଚ ନ ଆସୁ—ଏହି ଭାବନାରେ ବିହ୍ୱଳିତ ହୋଇ ସେ ନିର୍ଲିପ୍ତ ନିର୍ବିକାର ଭାବରେ ଆଗେଇ ଚାଲିଛନ୍ତି ନିଜର ସାଧନା ପଥରେ ।

୭୯ ବର୍ଷର ବୃଦ୍ଧ । ନିଜର ପ୍ରକୋଷ୍ଠ ମଧ୍ୟରେ ବସି ଦିନ ନାହିଁ, ରାତି ନାହିଁ, ଘଣ୍ଟା ଘଣ୍ଟା ଧରି ଅବିଶ୍ରାନ୍ତ ଭାବରେ ଶିକ୍ଷକମାନଙ୍କ ଲାଗି ଯେପରି କର୍ତ୍ତବ୍ୟ କରି ଚାଲିଛନ୍ତି, ତାହା ଦେଖିଲେ ଆଜିକାଲି ପରିଶ୍ରମ-କାତର, ପରମୁଖାପେକ୍ଷୀ ଯୁବକ ଶ୍ରେଣୀ ନିଜକୁ ଲଜ୍ଜିତ ମନେ କରିବେ ।

ତାଙ୍କର ଉଦ୍ୟମ ଓ ନିଷ୍ଠା ଫଳରେ ନିଖିଳ ଉତ୍କଳ ନିମ୍ନ-ମାଧ୍ୟମିକ ଶିକ୍ଷକ ସଂଘ ଏକ ବିରାଟ ଅନୁଷ୍ଠାନରେ ପରିଣତ ହୋଇ ପାରିଛି । ଓଡ଼ିଶାର ଅଗଣିତ ଶିକ୍ଷକ ସମାଜ ଏହି ସଂଘ ଜରିଆରେ ଯେପରି ନିଜର ଦାବୀ ଓ ସମ୍ମାନ ରକ୍ଷାପାଇଁ ସମ୍ମିଳିତ ଉଦ୍ୟମ କରୁଅଛନ୍ତି, ତାହା କେବଳ ତାଙ୍କର ନେତୃତ୍ୱ ଓ ତ୍ୟାଗ ଯୋଗୁ ସମ୍ଭବ ହୋଇଛି । ଏହା ଯେ କୌଣସି ଲୋକ ମୁକ୍ତ କଣ୍ଠରେ ସ୍ୱୀକାର କରିବ ।

ଦକ୍ଷ ସଂଗଠକ ଭାବରେ ସେ ଯେତିକି ସୁନାମ ଅର୍ଜନ କରିଛନ୍ତି, ନିଜର ପୌରୁଷ, ଅଧ୍ୟବସାୟ, କର୍ମନିଷ୍ଠା, ନିର୍ଭୀକତା, ପରୋପକାର, ତଥା ଜଣେ କୋମଳପ୍ରାଣ, ହୃଦୟବାନ ଲୋକ ହିସାବରେ ସେ ସମାଜରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି । ତାଙ୍କର ଉଦ୍ୟମରେ ଓଡ଼ିଶାର ବିଭିନ୍ନ ଶିକ୍ଷକ ସଂଗଠନମାନଙ୍କ ମଧ୍ୟରେ ଯେପରି ସମନ୍ୱୟ ଆସିପାରିଛି ତାହା ବାସ୍ତବିକ୍ ପ୍ରଶଂସନୀୟ ।

ସେ ଯେ କେବଳ ଆଦର୍ଶ ଶିକ୍ଷକ ଓ ଦକ୍ଷ ସଙ୍ଗଠକ ତାହା ନୁହେଁ, ଜଣେ ପ୍ରତିଭାବାନ୍ ଲେଖକ ହିସାବରେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ଯେଉଁ ଅମୂଲ୍ୟ ଦାନ ଦେଇଛନ୍ତି ତାହା ଅବିସ୍ମରଣୀୟ । କୋମଳମତି ଛାତ୍ରଛାତ୍ରୀମାନଙ୍କୁ ଏ ଦେଶର ମହାନ୍ ବ୍ୟକ୍ତିବିଶେଷଙ୍କ ସମ୍ପର୍କରେ ଧାରଣା ଦେଇ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାକୁ ସେ ସରଳ ଓ ତରଳ ଭାଷାରେ ପିଲାମାନଙ୍କ ପାଇଁ ଅନେକ ପୁସ୍ତକ ରଚନା କରିଛନ୍ତି । ସେହି ପୁସ୍ତକମାନଙ୍କ ମଧ୍ୟରୁ 'ଚରିତ ଓ ଚରିତ୍ର' ତାଙ୍କର ଅନ୍ୟତମ ସାର୍ଥକ ସୃଷ୍ଟି । ଏହି ପୁସ୍ତକରେ ଆମର ଦେଶର ପାଣି ପବନ ପିଇ, ଆମର ସହିତ ଖେଳିବୁଲି ଯେଉଁ ମହାନ୍ ବ୍ୟକ୍ତିମାନେ ନିଜର ଆଦର୍ଶକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଅଛନ୍ତି, ତାଙ୍କର ଜୀବନର ଅମୂଲ୍ୟ ଆଦର୍ଶ ଓ କାର୍ଯ୍ୟାବଳୀକୁ ସଙ୍କଳନ କରି ପିଲାମାନଙ୍କ ହସ୍ତରେ ଅର୍ପଣ କରିବା ସଙ୍ଗେ ସଙ୍ଗେ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ଯେପରି ପିଲାମାନଙ୍କୁ ଉତ୍ସାହିତ କରିଛନ୍ତି, ତାହା ପ୍ରକୃତରେ ଜଣେ ଶିକ୍ଷକର ଅପୂର୍ବ ଶିକ୍ଷାଦାନ କୌଶଳ ବୋଲି ସ୍ୱୀକାର କରିବାକୁ ପଡ଼ିବ । ତାଙ୍କର ପ୍ରତିଭାକୁ ସ୍ୱୀକାର କରି କେନ୍ଦ୍ର ଓ ରାଜ୍ୟ ସରକାର ତାଙ୍କ ଲିଖିତ ବିଭିନ୍ନ ପୁସ୍ତକ ଉପରେ ପୁରସ୍କାର ଦେଇଛନ୍ତି ।

ଆଜି ଏହି ମହାନ୍ ବ୍ୟକ୍ତିତ୍ୱର ଅଧିକାରୀ ବନମାଳୀ ବ୍ରହ୍ମଚାରୀଙ୍କ ଜନ୍ମବାର୍ଷିକ ପାଳନର ଅବସରରେ ମୁଁ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଶିକ୍ଷକ ସମାଜର ଦୁଃଖ ହରଣ ପାଇଁ ଅହରହ କର୍ତ୍ତବ୍ୟ-ରତ ଥିବା ଏହି ଯୁଗ ପୁରୁଷଙ୍କ ଜନ୍ମବାର୍ଷିକରେ ତାଙ୍କର ଗୁଣାବଳୀର ଜୟ ଜୟକାର କରୁଛି ।

ପରମ ପୁରୁଷ ଭଗବାନଙ୍କଠାରେ ପ୍ରାର୍ଥନା, ଏହି ମହାନ୍ ବ୍ୟକ୍ତିଙ୍କ ଦୀର୍ଘ, ନିରାମୟ, ପ୍ରେରଣାଦାୟକ ଏବଂ ସୁସ୍ଥ ଜୀବନ ଯାପନ ପାଇଁ ସେ ଆଶୀର୍ବାଦ କରନ୍ତୁ ।

● ପ୍ରଧାନ ଶିକ୍ଷକ
ପଲାଶୋଳ ମଧ୍ୟଇଂରାଜୀ ବିଦ୍ୟାଳୟ
ଜଗତସିଂହପୁର, କଟକ



# ଓଡ଼ିଶାର ଶିକ୍ଷକ ଆନ୍ଦୋଳନର ମହାରଥୀ
# ଶ୍ରୀଯୁକ୍ତ ବ୍ରହ୍ମଚାରୀ

**ଶ୍ରୀ ପୀତବାସ ବେହୁରିଆ**

୧୯୬୫ ମସିହା ମଇ ମାସ । ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ ଯାଜପୁର ସହରରେ ।

ମଇ ମାସର ଉତ୍ତପ୍ତ ରୌଦ୍ରାନ୍ତ, ସେ ଏକ ମଞ୍ଜୁଳ ସାୟାହ୍ନ । ଆକାଶରେ ମେଘ ମହ୍ଲାର । ଧରଣୀ ବୁକୁରେ ମୌସୁମୀ ବର୍ଷା ଆଗମନୀର ସୁସ୍ପଷ୍ଟ ସଙ୍କେତ ।

ମୁଁ ସମ୍ମିଳନୀ ମଣ୍ଡପ ମଧ୍ୟକୁ ପ୍ରବେଶ କରି ଦେଖିଲି ମଞ୍ଚ ଉପରେ ସମାସୀନ ସମ୍ମାନୀୟ ଅତିଥି ବୃନ୍ଦ । ସ୍ୱାଗତ ଅଭିଭାଷଣ ପାଠ କରୁଛନ୍ତି ଜଣେ ବୟସ୍କ ବ୍ୟକ୍ତି । ଉଦାତ୍ତ କଣ୍ଠ, ଭାଷାରେ ଅସମ୍ଭବ ପ୍ରକାର ବାଗ୍ମିତା, ମୁହଁରେ ଅସ୍ୱାଭାବିକ ଦୃଢ଼ତା, ଆଖି ଦୁଇଟିରେ ବର୍ତ୍ତମାନର ଅନ୍ଧକାରମୟ ଗହ୍ୱରରୁ ଅରୁଣିତ ଭବିଷ୍ୟତକୁ ଉଦ୍ଧାର କରିବାର ନିର୍ଭୀକ ପ୍ରତିଜ୍ଞା ।

ମୁଁ ସ୍ତମ୍ଭୀଭୂତ ହେଲି । ବିମୁଗ୍ଧ ମନରେ ଭାଷଣଟି ସମ୍ପୂର୍ଣ୍ଣ ଶୁଣି ସାରିବା ପରେ ପ୍ରକୃତିସ୍ଥ ହେଲି । ଜଣେ ଶିକ୍ଷକ ବନ୍ଧୁଙ୍କୁ ପଚାରି ବୁଝିଲି, ସେ ହେଉଛନ୍ତି ଶ୍ରୀ ବନମାଳୀ ବ୍ରହ୍ମଚାରୀ ।

"ଶିକ୍ଷକ ଦର୍ପଣ"ରୁ ଓ ବିଭିନ୍ନ ପତ୍ରପତ୍ରିକା ଓ ସମ୍ବାଦପତ୍ରମାନଙ୍କରୁ ଶ୍ରୀଯୁକ୍ତ ବ୍ରହ୍ମଚାରୀଙ୍କ ଲେଖାମାନ ପଢ଼ି, ତାଙ୍କର ଆଗ୍ନେୟ ଆହ୍ୱାନ ଶୁଣି ମୋର ତରୁଣ ପ୍ରାଣ ଭାବବିଭୋର ହୋଇ ଉଠିଥିଲା । ମୁଁ ସଂଘ ତଥା ଶ୍ରୀଯୁକ୍ତ ବ୍ରହ୍ମଚାରୀ—ଉଭୟଙ୍କ ଆଡ଼କୁ ଆକୃଷ୍ଟ ହୋଇଥିଲି । ଚିଠିପତ୍ର ଆଦାନ ପ୍ରଦାନ ମାଧ୍ୟମରେ ମୁଁ ବ୍ରହ୍ମଚାରୀଙ୍କ ଦରଦୀ ଓ ସ୍ନେହୀ ହୃଦୟର ସନ୍ଧାନ ମଧ୍ୟ ପାଇଥିଲି । ମୋଟ ଉପରେ ମୁଁ ବ୍ରହ୍ମଚାରୀଙ୍କୁ ଜାଣିଥିଲି, ଚିହ୍ନିଥିଲି—ତାଙ୍କ ଲେଖା ଭିତରୁ, ତାଙ୍କ ସାହିତ୍ୟିକ କୃତି ଭିତରୁ । ସେଦିନ କିନ୍ତୁ ସ୍ୱଦେହରେ ଦେଖି ଭାରି ଖୁସି ଲାଗିଲା । ମନରେ ଆବେଗ ଆନନ୍ଦର ଢେଉ ଖେଳିଗଲା ।

ସେଇଠାରୁ ବ୍ରହ୍ମଚାରୀଙ୍କୁ ଚିହ୍ନିଲି । ସେହି ସମ୍ମିଳନୀରେ ମୁଁ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର କାର୍ଯ୍ୟକାରୀ ସମିତିର ସଭ୍ୟ ରୂପେ ନିର୍ବାଚିତ ହେଲି । ଫଳରେ ବ୍ରହ୍ମଚାରୀଙ୍କ ଆହୁରି ଘନିଷ୍ଠ ସମ୍ପର୍କରେ ଆସିଲି—ତାଙ୍କୁ ଅଧ୍ୟୟନ କରିବାର, ଆହୁରି ଅଧିକ ଚିହ୍ନିବାର ଓ ଜାଣିବାର ସୁଯୋଗ ପାଇଲି । ବର୍ଷଟିଏ କାର୍ଯ୍ୟକାରୀ ସମିତିର ସଭ୍ୟ ରୂପେ ମୁଁ ଦେଖିଛି, ଅନୁଭବ କରିଛି, ଶିକ୍ଷକମାନଙ୍କ ପ୍ରତି ବ୍ରହ୍ମଚାରୀଙ୍କର କି ଅଫୁରନ୍ତ ସ୍ନେହ ! କି ଅସୀମ ଦରଦ ! ଘରୋଇ ବିଦ୍ୟାଳୟର ଦୁଃସ୍ଥ, ବିପନ୍ନ ଶିକ୍ଷକମାନଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ପ୍ରାଣ ଭିତରେ ପୂରି ରହିଥାଏ ଅଶେଷ ଆବେଗ ଆଉ ଉତ୍କଣ୍ଠା । ଶିକ୍ଷକ ସମାଜର ଦୁଃଖ ବିମୋଚନ ପାଇଁ ତାଙ୍କର କି ତ୍ୟାଗ, କି ନିଷ୍ଠା, କି ଅକ୍ଲାନ୍ତ ସାଧନା !

ମୁଁ ୧୯୭୭ ମସିହାରେ ଉତ୍କଳମଣି ମଧ୍ୟ ବିଦ୍ୟାଳୟରୁ ବହିଷ୍କୃତ ହେବା ପରେ ଶ୍ରୀଯୁକ୍ତ ବ୍ରହ୍ମବୃକ୍ଷଙ୍କର ଏହି ମହାନ, ଉଦାର ଗୁଣ ସମୂହର ପରିଚୟ ପାଇବାକୁ ଅଧିକ ପରିମାଣରେ ସମର୍ଥ ହେଲି । ମୁଁ ଯେବେ ଯାଇଛି, ସେ ବିଧାହୀନ ଚିତ୍ତରେ ସାହାଯ୍ୟ କରିଛନ୍ତି—ଆଶ୍ୱାସନା ଦେଇଛନ୍ତି—ମୋର ଅନ୍ନସଂସ୍ଥାନହୀନ ଦୟନୀୟ, ଦୁର୍ଗତ ଅବସ୍ଥାକୁ ସେ ନିଜର ପରି ଅନୁଭବ କରିଛନ୍ତି ।

ଦୀର୍ଘ ତିନି ବର୍ଷ କାଳ ମୋ ଦୁଃଖମୟ ଜୀବନର ଜଞ୍ଜାଳ ଭିତରେ ମୁଁ ପେଷି ହୋଇଗଲି । ପ୍ରତିଟି ମୁହୂର୍ତ୍ତ ଜୀବନ ସଂଗ୍ରାମରେ ବ୍ୟସ୍ତ ରହି ମୁଁ ଆଉ ସଙ୍ଘ ଓ ଶ୍ରୀଯୁକ୍ତ ବ୍ରହ୍ମବୃକ୍ଷଙ୍କ ସହ ସମ୍ପର୍କ ରକ୍ଷା କରି ପାରିଲି ନି ।

୧୯୭୯ରେ ଐତିହାସିକ ଶିକ୍ଷକ ଆନ୍ଦୋଳନ ପାଇଁ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟି ଗଠିତ ହେଲା । ମୁଁ ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଙ୍ଘ କାର୍ଯ୍ୟକାରୀ ସମିତି ସଭ୍ୟ ରୂପେ କ୍ରିୟାନୁଷ୍ଠାନ କମିଟିରେ ସଭ୍ୟ ହେଲି । ପୁଣି ଥରେ ଶ୍ରୀଯୁକ୍ତ ବ୍ରହ୍ମବୃକ୍ଷଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ନିବିଡ଼ ସାନ୍ନିଧ ଲାଭ କରିବାର ସୁଯୋଗ ଆସିଲା ।

ଆନ୍ଦୋଳନର ପରିପ୍ରେକ୍ଷୀରେ ମୁଁ ଦେଖିଛି—ଶ୍ରୀ ବ୍ରହ୍ମବୃକ୍ଷଙ୍କ ମନର ଦୃଢ଼ତା, ପ୍ରାଣର ଉନ୍ମାଦନା, ଚିନ୍ତାର ଦୃଢ଼ତା, ସବୁ ଠିକ୍ ପୂର୍ବ ପରି ଅଟୁଟ ରହିଛି । ବୟସର ବୃଦ୍ଧି ତା' ଉପରେ କୌଣସି ପ୍ରଭାବ ବିସ୍ତାର କରିପାରି ନି ।

ସେ ବୃଦ୍ଧ ବୟସରେ କୋରାପୁଟର କନ୍ଧମାଳ ଠାରୁ ବାଲେଶ୍ୱରର ରାଇବଣିଆ ପର୍ଯ୍ୟନ୍ତ ଦିନ ରାତି ବୁଲି ସଭାରେ ଭାଷଣ ଦିଅନ୍ତି । ଜଣେ ତରୁଣର ଉନ୍ମାଦନା ନେଇ ସେ ଶିକ୍ଷକ ସମାଜ ଭିତରେ ଭରି ଦିଅନ୍ତି ଅସୀମ ଉତ୍ସାହ ଓ ପ୍ରେରଣା ।

୧୯୭୯ରେ ଆନ୍ଦୋଳନ ଚାଲିଥାଏ । ଦୀର୍ଘ ଦିନ ଧର୍ମ ଧାରଣା । କାର୍ଯ୍ୟ ବନ୍ଦ ଆନ୍ଦୋଳନ ଚାଲିବା ପରେ ମଧ୍ୟ ସରକାରଙ୍କର କୁମ୍ଭକର୍ଣ୍ଣ ନିଦ୍ରାର ଅବସାନ ହେଉ ନ ଥାଏ । ତେଣୁ ନିଷ୍ପତ୍ତି ହେଲା ଆନ୍ଦୋଳନର ଆଉ ଏକ ନୂତନ ପର୍ଯ୍ୟାୟ ଆରମ୍ଭ କରିବାକୁ ହେବ ।

୧୯୭୯ ସେପ୍ଟେମ୍ବର ୨୮ ତାରିଖ । ଶିକ୍ଷକ ମାନଙ୍କ ଦାବୀ ପୂରଣ ହେବା ପର୍ଯ୍ୟନ୍ତ ଅଙ୍ଗେଶ୍ୱରପଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକ ସାଥୀ ଭଗବାନ ଦାସ ଅନଶନ କରିବେ । ଆମେ ସମସ୍ତେ ଶିକ୍ଷା ମନ୍ତ୍ରୀଙ୍କ ସରକାରୀ ବାସଭବନ ଆଗରେ ଭଗବାନ ବାବୁଙ୍କୁ ଅନଶନରେ ବସାଇ ଦେଲୁ । ସେଦିନର ସେ ପରିବେଶ ଅସ୍ୱାଭାବିକ ଭାବରେ ଗମ୍ଭୀର—କାହାରି ମୁହଁରେ ଭାଷା ନାହିଁ । ଶ୍ରୀ ବ୍ରହ୍ମବୃକ୍ଷ ସମସ୍ତଙ୍କ ଉଦ୍ଦେଶ୍ୟରେ କହି ଉଠିଲେ—"ଏ ସରକାର ଏତେ ନିଷ୍ଠୁର—ଏତେ ନିର୍ମମ । ଅଗଣିତ ଶିକ୍ଷକର ସ୍ୱାର୍ଥ ପାଇଁ, ସରକାରୀ ମୋହ ନିଦ୍ରା ଭାଙ୍ଗିବା ଉଦ୍ଦେଶ୍ୟରେ ଆମେ ଆଜି ଜଣେ ଶିକ୍ଷକକୁ ଆସନ୍ନ ମୃତ୍ୟୁ ମୁଖକୁ ଠେଲି ଦେବାକୁ ବାଧ୍ୟ ହେଉଛୁ ।" ଏତିକ କହିବା ପରେ କଣ୍ଠ ତାଙ୍କର ବାଷ୍ପରୁଦ୍ଧ ହୋଇଗଲା । ସେ ଆଉ କିଛି କହି ପାରିଲେ ନି । ତାଙ୍କ ବୁକୁର ବେଦନା ସତେ ଯେପରି ଫାଟି ପଡୁଥିଲା । ସେ ପିଲାଙ୍କ ପରି କାନ୍ଦି ଉଠିଲେ । ଆମେ ସମସ୍ତେ ନିର୍ବାକ୍ ଭାବେ ଶୁଣୁଥିଲୁ । ଆମ ସମସ୍ତଙ୍କ ଅଜ୍ଞାତରେ ପ୍ରତ୍ୟେକଙ୍କ ଆଖି କୋଣରୁ ଲୁହ ଜକେଇ ଆସୁଥିଲା ।

ଦୁଇ ଦୁଇଟି ଆନ୍ଦୋଳନରେ—ଅନୁଭୂତିର ନିର୍ଯ୍ୟାସ ଭିତରେ ମୁଁ ଦେଖିଛି-ଶିକ୍ଷକମାନଙ୍କ ଦାବୀ ପୂରଣ ପାଇଁ, ସମସ୍ୟାର ସମାଧାନ ପାଇଁ ସେ ଏକବାରେ ପାଗଳ—ସେ ଭୁଲିଯାନ୍ତି ତାଙ୍କ ବୟସର ବାର୍ଦ୍ଧକ୍ୟକୁ ।

ଦିନେ କଥୋପକଥନ ସମୟରେ ସେ କାହିଁକି ସଙ୍ଘ ସ୍ଥାପନରେ ପ୍ରୟାସୀ ହେଲେ ବୋଲି ମୁଁ ତାଙ୍କୁ ପଚାରିଲି । ଯେଉଁ ଘଟଣାଟି ସଙ୍ଘ ଗଠନର ଉପଜୀବ୍ୟ ସେହି ଘଟଣାଟିକୁ ସେ ମୋ ପାଖରେ ବର୍ଣ୍ଣନା କଲେ । ମୁଁ ଲକ୍ଷ୍ୟ କରିଛି, ମଝିରେ ମଝିରେ ତାଙ୍କ ପ୍ରାଣ ବାଷ୍ପାକୁଳ ହୋଇ ଉଠୁଥାଏ । ଆଖି ଅଶ୍ରୁଳ ହୋଇ ଆସୁଥାଏ । ଘଟଣାଟି ମୋ ପ୍ରାଣକୁ ସ୍ପର୍ଶ କଲା । ମୁଁ ତାକୁ ଲେଖନୀ ମୁନରେ ରୂପ ଦେଲି ଏକ କ୍ଷୁଦ୍ର ଗଳ୍ପ ଆକାରରେ । ଗପଟିକୁ "ଶିକ୍ଷକ ଦର୍ପଣ"ରେ ପ୍ରକାଶ କରିବା ଲାଗି ଯେତେବେଳେ ତାଙ୍କୁ ହସ୍ତାନ୍ତର କଲି,

ମୁଁ ଦେଖିଛି, ଗପଟିକୁ ପଢ଼ୁ ପଢ଼ୁ ତାଙ୍କ ଆଖି ପୁଣି ଥରେ ଅଶ୍ରୁ ଛଳଛଳ ହୋଇ ଉଠିଲା ।

ଶିକ୍ଷକ ସଙ୍ଘର ଜଣେ ସକ୍ରିୟ ସଭ୍ୟ ରୂପେ ମୁଁ ବ୍ରହ୍ମଗୁରୁଙ୍କ ସହ ବହୁ ସ୍ଥାନ ବୁଲିଛି । ବହୁ ସଭା ସମିତିରେ ଯୋଗ ଦେଇଛି । ସବୁ ଜାଗାରେ ତାଙ୍କ ପ୍ରାଣର ଆବେଗର ପରିଚୟ ପାଇଛି । ତାଙ୍କ ମମତାମୟ ଦରଦୀ ହୃଦୟର ସ୍ପର୍ଶ ଲାଭ କରିଛି । ସେ ଶିକ୍ଷକମାନଙ୍କ ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରୁଥିବା ସମୟରେ କାନ୍ଦି ପକାନ୍ତି । ମନର କ୍ଷୋଭ ପ୍ରକାଶ କରନ୍ତି । ପ୍ରାଣ ତାଙ୍କର ବିକଳରେ ବାହୁନି ଉଠେ ।

ଶ୍ରୀଯୁକ୍ତ ବ୍ରହ୍ମଗୁରୁଙ୍କର ସବୁଠାରୁ ବଡ଼ ଗୁଣ ହେଉଛି, ଚିଠି ଖଣ୍ଡେ ଦେଲେ ସେ ନିଶ୍ଚୟ ଉତ୍ତର ଦେବେ । ଏ ବୟସରେ ସେ ପ୍ରତିଦିନ ଯେପରି ଶହ ଶହ ଚିଠି ପଢ଼ି ତା'ର ଉତ୍ତର ନିଜ ହାତରେ ଲେଖି ଦିଅନ୍ତି, ମହାସଙ୍ଘର ସଭାପତି ରୂପେ ସେ ଯେପରି ଧୈର୍ଯ୍ୟର ସହ ଶହ ଶହ ଶିକ୍ଷକଙ୍କ ଦୁଃଖ, ଦୁର୍ଦ୍ଦଶା ଶୁଣନ୍ତି—ସମାଧାନର ଉପାୟ ଚିନ୍ତା କରନ୍ତି, ବତାଇ ଦିଅନ୍ତି, ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ ।

ବୟସ ତାଙ୍କର ବଢ଼ି ଚାଲିଛି । ସ୍ୱାସ୍ଥ୍ୟ ଅନିଶ୍ଚିତ । ଅଧିକାଂଶ ସମୟରେ କିଛି ନା କିଛି ଶାରୀରିକ ଅସୁସ୍ଥତା ଲାଗି ରହିଛି । ତା'ର ଭିତରେ ଶିକ୍ଷକମାନଙ୍କ ସମସ୍ୟାର ସମାଧାନ ପାଇଁ ସେ ଯେପରି ଦିନ ରାତି ନିର୍ବିଘ୍ନରେ କେତେବେଳେ ରେଳରେ, କେତେବେଳେ ବସ୍‌ରେ, କେତେବେଳେ ବା ଟ୍ୟାକ୍‌ସିରେ, ଆଜି କୋରାପୁଟ ତ କାଲି ବାଲେଶ୍ୱର ପର୍ଯ୍ୟନ୍ତ ଧାଇଁ ବୁଲନ୍ତି; ତାହା ତାଙ୍କ ଦୃଢ଼ ମନୋବଳର ପରିଚୟ ଦିଏ । ଅଶୀରୁ ବର୍ଷର ବୃଦ୍ଧ, ଜଣେ ତରୁଣର ଶକ୍ତି, ଉତ୍ସାହ, ଉନ୍ମାଦନା ନେଇ ସେ ମାଇଲ ମାଇଲ ଚାଲି, ନଈ ନାଳ, ପ୍ରାନ୍ତର ଅତିକ୍ରମ କରି କର୍ମ ସାଧନା ପଥରେ ଆଗେଇ ଚାଲନ୍ତି ସତେ ଯେପରି ସ୍ୱପ୍ନ-ପ୍ରତିଜ୍ଞା ନେଇ ।

ଶ୍ରୀ ବ୍ରହ୍ମଗୁରୁଙ୍କୁ ଶିକ୍ଷା ବିଭାଗର ପଦସ୍ଥ କର୍ତ୍ତୃପକ୍ଷମାନଙ୍କ ସହିତ ଶିକ୍ଷକମାନଙ୍କ ସମସ୍ୟା ସମ୍ପର୍କରେ ଆଲୋଚନା କରୁଥିବାର ଯେ ଥରେ ଦେଖିଛି—ସେ ତାଙ୍କ ନିର୍ଭୀକତାର ସ୍ପଷ୍ଟ ପରିଚୟ ପାଇଛି । ସେତେବେଳେ ସେ ମନେ କରନ୍ତି, ସତେ ଯେପରି ସେ ଏକ ବିରାଟ ସାମ୍ରାଜ୍ୟର ମୁକୁଟହୀନ ସମ୍ରାଟ । ଥରେ ସେ ଉପ-ଶିକ୍ଷା ନିର୍ଦ୍ଦେଶକଙ୍କୁ ଆଶ୍ରମ ବାଲିକୁଦା ହାଇସ୍କୁଲ ଶିକ୍ଷକମାନଙ୍କ **Direct Payment** ସମ୍ପର୍କରେ କହିଲେ, "ଆପଣଙ୍କ ଅନୁଗ୍ରହ ଆମେ ଚାହୁଁନୁ । ଶିକ୍ଷକମାନଙ୍କର ହକ୍ ଦାବୀ । ଆପଣ **Direct Payment**ର ନିର୍ଦ୍ଦେଶ ଆଜି ଦିଅନ୍ତୁ । ନଚେତ୍ ନିଜର ଅସାମର୍ଥ୍ୟ ପ୍ରକାଶ କରନ୍ତୁ । ଆମ ବାଟ ଆମେ ବାଛି ନେବୁ । ଯେ କୌଣସି ଉପାୟରେ କାନ ମୋଡ଼ି ଆମେ **Direct Payment** ଆଦାୟ କରିବୁ ।" ଆଉ ଥରେ ସ୍କୁଲ ବିଭାଗର ଶିକ୍ଷା ନିର୍ଦ୍ଦେଶକଙ୍କୁ କହିଲେ, "ଆପଣଙ୍କ ଅଫିସର ଜଣେ ଆସିଷ୍ଟାଣ୍ଟ ବିଭିନ୍ନ ଚକ୍ରାନ୍ତ କରି ଶିକ୍ଷକମାନଙ୍କୁ ହଇରାଣ ଓ ଅପଦସ୍ଥ କରୁଛନ୍ତି, ଆପଣଙ୍କ ଆଦେଶ ମଧ୍ୟ ଅମାନ୍ୟ କରୁଛନ୍ତି, ଅଥଚ ଆପଣ ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରି ନ ପାରି ନିଜର ଅସହାୟତା ପ୍ରକାଶ କରୁଛନ୍ତି । ଆପଣ ଏ ପଦ ପାଇଁ ଅଯୋଗ୍ୟ । ଆପଣ ସେ ଆସିଷ୍ଟାଣ୍ଟଙ୍କ ସ୍ଥାନକୁ ଯାଆନ୍ତୁ ସେ ଆପଣଙ୍କ ସ୍ଥାନକୁ ଆସନ୍ତୁ ।"

ଶ୍ରୀ ବ୍ରହ୍ମଗୁରୁଙ୍କ ସହ ବହୁ ଶିକ୍ଷକ ସମାବେଶରେ ଯୋଗ ଦେବାର ସୁଯୋଗ ମୁଁ ପାଇଛି । ବିଭିନ୍ନ ସଭାରେ ସେ ଅତିଷ୍ଠ ହୋଇ ଶିକ୍ଷକମାନଙ୍କୁ କହନ୍ତି **"Be a Nuxlite !"** ଶିକ୍ଷକମାନଙ୍କୁ ନିର୍ଭୀକ ହେବାକୁ ଉପଦେଶ ଦେଇ ସେ କହନ୍ତି, "ଯେ ଉଦ୍ଧତ **D. I.** ମାନଙ୍କୁ ମୁହଁରେ, ଆବଶ୍ୟକ ପଡ଼ିଲେ ହାତରେ ଜବାବ ଦେଇ ପାରିବ, ମୁଁ ତାକୁ ପୁରସ୍କୃତ କରିବ ।"

ଶ୍ରୀଯୁକ୍ତ ବ୍ରହ୍ମଗୁରୁ ଜଣେ ଗୁଣଗ୍ରାହୀ । ଶିକ୍ଷକ ମହାସଙ୍ଘର ସାଧାରଣ ସମ୍ପାଦକ ସାଥୀ ଶ୍ରୀ ଅବନୀ କୁମାର ବରାଳଙ୍କୁ ବିଭିନ୍ନ ରାଜନୈତିକ ରଙ୍ଗରେ ରଞ୍ଜିତ କରି ସ୍ୱାର୍ଥାନ୍ୱେଷୀ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ତାଙ୍କୁ ବିଭ୍ରାନ୍ତ କରିବା ପାଇଁ ବହୁବାର ବୃଥା ଚେଷ୍ଟା କରିଛନ୍ତି । କିନ୍ତୁ ଶ୍ରୀ ବ୍ରହ୍ମଗୁରୁ ସ୍ପଷ୍ଟଭାବେ

କହୁଛନ୍ତି, "ଶ୍ରୀ ବରାଳ ଯେ କୌଣସି ବିଜ୍ଞମତରେ ବିଶ୍ୱାସ କରନ୍ତୁ ନା କାହିଁକି, କିନ୍ତୁ ଶିକ୍ଷକ ଜାତିର ସେବାରେ ସେ ଯେପରି ନିର୍ଭୀକ, ଅହର୍ନିଶି କର୍ମରତ, ତାହା ଅନ୍ୟ ଯେ କୌଣସି ବ୍ୟକ୍ତି ପକ୍ଷରେ ଅସମ୍ଭବ।"

ସେଦିନ କଟକର ଭକ୍ତମଧୁ ବିଦ୍ୟାପୀଠର ଶିକ୍ଷକମାନଙ୍କ ଉପରେ ହୋଇଥିବା ଅମାନୁଷିକ ଦଣ୍ଡାଦେଶର ପ୍ରତିବାଦ କରି ଆମେ ଶ୍ରୀ ବ୍ରହ୍ମଚାରୀଙ୍କ ନେତୃତ୍ୱରେ ଯାଇଥାଉ ବିଦ୍ୟାପୀଠ ସମ୍ମୁଖରେ ଧାରଣା ଦେବାକୁ। ପରିଚାଳନା ସମିତି ଓ ପ୍ରଧାନ ଶିକ୍ଷକଙ୍କର କେତେକ ଦଲାଲ ଶିକ୍ଷକ ଆମ ଶାନ୍ତିପୂର୍ଣ୍ଣ ଧାରଣା ଉପରେ ଆରମ୍ଭ କଲେ ପାଶବିକ ଗୁଣ୍ଡାମୀ। ଗୁଣ୍ଡାମାନଙ୍କର ଶତ ବାଧା ବିଘ୍ନ ସତ୍ତ୍ୱେ, ଧକ୍କା ଓ ଠେଣା ଘୋସରା ଖାଇ, ଜ୍ୱରଗ୍ରସ୍ତ ବୃଦ୍ଧ ବ୍ରହ୍ମଚାରୀ ଯେପରି ଦୃଢ଼, ଅବିଚଳିତ ଭାବେ ଧାରଣା ସ୍ଥାନରେ ବସି ରହିଲେ—ତାହା ଦେଖି ଆମେ ସ୍ତମ୍ଭୀଭୂତ ହେଲୁ।

ନିକଟ ଅତୀତରେ ନୟାଗଡ଼ଠାରେ ଏକ ସାଧାରଣ ସଭାରେ ସାରା ଦେଶର ସମସ୍ତ ସ୍ୱାର୍ଥକାମୀ ଶାସକ ଓ ପ୍ରଶାସକ ବର୍ଗଙ୍କ ଉଦ୍ଦେଶ୍ୟରେ ସତର୍କ ବାଣୀ ଶୁଣାଇ ବଜ୍ର ଗମ୍ଭୀର ସ୍ୱରରେ ସେ ଘୋଷଣା କଲେ, "ଆଜିର ଏ ଶିକ୍ଷକ ବିକ୍ଷୋଭ ଓ ସମାବେଶରୁ ମୁଁ ସ୍ପଷ୍ଟ ଦେଖି ପାରୁଛି, ବିପ୍ଳବ ଆସି ଦ୍ୱାର ଦେଶରେ। ଆଜି ସୁପ୍ତ ସିଂହ ଜାଗି ଉଠିଛି। ସାବଧାନ ଶାସକ ବର୍ଗ ! ପରିଣତି ଭୋଗିବାକୁ ଆଉ ବେଶୀ ସମୟ ନାହିଁ।" ତାଙ୍କ ସ୍ୱରର ବଜ୍ର ନିନାଦ ମତେ ରୋମାଞ୍ଚିତ କରିଥିଲା।

ଦିନେ ମୁଁ ବ୍ରହ୍ମଚାରୀଙ୍କୁ ଚିହ୍ନିଥିଲି ପତ୍ର ପତ୍ରିକାରୁ ଓ ସମ୍ବାଦ ପତ୍ରମାନଙ୍କରୁ, ଆଜି କିନ୍ତୁ ତାଙ୍କୁ ଚିହ୍ନିଛି ଜୀବନ ପ୍ରବାହର ଅସରନ୍ତି ଅନୁଭୂତିର ନିର୍ଯ୍ୟାସ ଭିତରୁ।

ବ୍ରହ୍ମଚାରୀ ବୟସ୍କ ହୋଇପାରନ୍ତି—କିନ୍ତୁ ସେ ବୃଦ୍ଧ ନୁହନ୍ତି। ପାର୍ଥିବ ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ ମଧ୍ୟ କରି ପାରିନି। ବୈଶାଖର ଖରା, ଶ୍ରାବଣର ଧାରା, ପୌଷର ଶୀତ, କର୍ମମୟ ଜୀବନ ପଥର ଅସୀମ ଘାତ ପ୍ରତିଘାତ, କେହି ତାଙ୍କ ଜୀବନ ଯମୁନାର ଗତିଶୀଳ ପ୍ରବାହକୁ ବ୍ୟାହତ କରିପାରି ନି। ଜୀବନ ସ୍ରୋତ ତାଙ୍କର ସାଧନା ପଥରେ ଗଡ଼ି ଚାଲିଛି ଯାବଲୀଳ ସ୍ୱଚ୍ଛନ୍ଦ ଗତିରେ ସମସ୍ତ ବାଧା-ବନ୍ଧନକୁ ଅତିକ୍ରମ କରି। ସେ ସ୍ଥିତପ୍ରଜ୍ଞ, ସେ କର୍ମଯୋଗୀ। ସେ ଶିକ୍ଷକ ଜାତିର ଋଷ୍ୟମୂକ।

ଶ୍ରୀଯୁକ୍ତ ବ୍ରହ୍ମଚାରୀଙ୍କ ଆଦର୍ଶ ଓ ସାଧନା ଆମ ସମସ୍ତଙ୍କର ଧ୍ୟେୟ ହେଉ।

● ପ୍ରଧାନ ଶିକ୍ଷକ
ଜୟଚଣ୍ଡୀ ଉଚ୍ଚ ବିଦ୍ୟାଳୟ
ଦୁବକଣ, ଯାଜପୁର



# ମୁଁ ତାହାଙ୍କୁ ଦେଖିଅଛି, ଚିହ୍ନିନାହିଁ

**ଶ୍ରୀ ନରୋତ୍ତମ ମହାପାତ୍ର**

ମୁଁ ତାହାଙ୍କୁ ଜାଣିଥିଲି, ଦେଖି ତ ନ ଥିଲି
ମୁଁ ପୁଣି ଦେଖିଲି ତାଙ୍କୁ, ଚିହ୍ନି ନ ପାରିଲି
ମୁଁ ତାଙ୍କୁ ପାରିନି ଚିହ୍ନି ପାରିବି କି ନାହିଁ
ଯଦି ଓ ଦେଖୁଛି ତାଙ୍କୁ ଦୀର୍ଘ ଦିନ ପାଇଁ ।
ଅନେକ ଖଦଡ଼ ପିନ୍ଧା, ବହୁ ନେତା ନିତ୍ୟ ଦୃଶ୍ୟମାନ—
ଏ ଦେଶରେ, କିନ୍ତୁ କାହିଁ ତାଙ୍କ ପରି ଜଣେ ସଚ୍ଚା, ସ୍ଥିତଧୀ, ମହାନ୍ !
କାହିଁ ଜଣେ ତାଙ୍କ ପରି କର୍ମବୀର, ସାଧୁ, ଶକ୍ତିଶାଳୀ
ସ୍ୱଭାବେ ଉଦାର ପୁଣି ବିପ୍ଲବରେ ଆଗ୍ନେୟ ଉତ୍ସ !
ସୁବର୍ଣ୍ଣରେଖାରୁ ପୁଣି କୋରାପୁଟ ବଣ ଯାଏ
ଶୁଭେ ତାଙ୍କ ବଜ୍ରର ନିର୍ଘୋଷ
'ଶୃଣ୍ୱନ୍ତୁ ସର୍ବେ' ରେ ବର୍ଷେ ବିପ୍ଲବର ଅଗ୍ନିକଣା ଧାସ ।
କେବଳ ନୁହଁନ୍ତି ସିଏ ଓଡ଼ିଶାର 'ଶିକ୍ଷକ ସଦନ'
ସେ ଯେ ଏକ ଅନୁଷ୍ଠାନ, ପବିତ୍ର, ମହାନ୍ ।
ଗ୍ରାମ ଚାଟଶାଳୀ ଠାରୁ ବିଶ୍ୱବିଦ୍ୟାଳୟ ଯାଏ
ବ୍ରହ୍ମଋଷି ନାମ ଘୋଷାଯାଏ,
ତାଙ୍କ ଜନ୍ମତିଥି ଆଜି, ସରକାରୀ କଳ କିଆଁ
ସେ ଆଡ଼କୁ ମୁହଁ ମୋଡ଼ିଦିଏ ।
ଦୟାର ସାଗର ସିଏ, ଶ୍ରଦ୍ଧାର ସେ ଜୀବନ୍ତ ପ୍ରତୀକ
କ୍ରୋଧ ଅଭିମାନ ଶୂନ୍ୟ ତାଙ୍କ ପ୍ରାଣ,
(ସେ) ଉତ୍କଳର ଗୌରବ ତିଳକ ।
ଏ ସମସ୍ତ ଜାଣି ମଧ୍ୟ ମୁଁ ତାହାଙ୍କୁ ଅଦ୍ୟାପି ଚିହ୍ନିନି
କେବଳ ମୁଁହିଁ ତ ନୁହଁ ଦୁର୍ଭାଗ୍ୟ, ଏ ଓଡ଼ିଶା ଜାଣିନି
ସେ ନୁହଁନ୍ତି ମୋର ଗୁରୁ ଅବା ମୋର ସହକର୍ମୀଙ୍କର,
ସଭିଙ୍କର ଗୁରୁ ସିଏ, ଜନ୍ମ ଦିବସରେ
ତେଣୁ କରୁ ନମସ୍କାର ।

● ଶିକ୍ଷକ
ଜାଉଆ ମଧ୍ୟ ବିଦ୍ୟାଳୟ
ପୋ:, ପଦା—ନିଜାମପୁର, କଟକ



# ମୋ ଅନୁଭୂତିରେ ବ୍ରହ୍ମଚାରୀ

**ଶ୍ରୀ ଦାଶରଥି ନାୟକ**

ସମଗ୍ର ଶିକ୍ଷକ ସମାଜ ପ୍ରତି ଉଦାସୀନ ଶାସକଶ୍ରେଣୀ, ବିଭାଗୀୟ କର୍ମଚାରୀ ତଥା ପରିଚାଳନା ସମିତିର ଅକଥନୀୟ ଅତ୍ୟାଚାରରେ ଜର୍ଜରିତ ଶିକ୍ଷକ ସମାଜର କରୁଣ ଆର୍ତ୍ତନାଦ ସତେ ଯେପରି ବ୍ରହ୍ମଚାରୀଙ୍କ ଶରୀରରେ ଶେଳ ବିଦ୍ଧ କରିଥିଲା । ତାଙ୍କର ମୁକ୍ତିକାମୀ ମନ ଓ ଆଦର୍ଶ-ଶାଣିତ ଚିତ୍ତ ବିଦ୍ରୋହ କରିଉଠିଥିଲା ଏ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ । ଦୋହଲ ହାଇସ୍କୁଲର କ୍ଷୁଦ୍ର ପରିସର କି ଚାନ୍ଦୋଳ ଗ୍ରାମ ପଞ୍ଚାୟତର ସରପଞ୍ଚ ପଦବୀ ତାଙ୍କୁ ତୁଚ୍ଛ ଲାଗିଲା । ଗୋଟିଏ ଗ୍ରେଣ୍ଟିଆ ପରିସର ମଧ୍ୟରେ କେତେ ଖଣ୍ଡ ଗାଁ ଲୋକଙ୍କ ସେବାରେ ନିଜ ଜୀବନକୁ ସୀମିତ ନରଖି ଏକ ବିରାଟ ଶିକ୍ଷକ ସମାଜର ସେବାରେ ନିଜ ଜୀବନର ସମସ୍ତ ଶକ୍ତି ଖଟାଇବାକୁ ସେ ଦୃଢ଼ ପରିକର ହେଲେ । ସ୍ୱାଧୀନତା ସଂଗ୍ରାମର ଜଣେ ଲଢୁଆ ସୈନିକ ଭାବରେ ଗାନ୍ଧୀ, ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ବନମାଳୀ ବାବୁଙ୍କ ଶୁଭଆଡ଼ୁ ସମାଜ-ସେବାର ଆହ୍ୱାନ ଶୁଣାଗଲା । ସ୍ୱଳ୍ପ ସଂଖ୍ୟକ କେତେକ ନିଷ୍ପେଷିତ ଶିକ୍ଷକଙ୍କୁ ନିଜ ଆଦର୍ଶରେ ଅନୁପ୍ରାଣିତ କରି ସେ ଆରମ୍ଭ କଲେ ତାଙ୍କର ଜୟଯାତ୍ରା । ସତ୍ୟନିଷ୍ଠ, କର୍ମନିଷ୍ଠ, ନ୍ୟାୟନିଷ୍ଠ ସେହି ବ୍ରହ୍ମଚାରୀଙ୍କର ଭାବନାର ରୂପାୟନ ଆଜିର ନିଖିଳ ଉତ୍କଳ ନିମ୍ନ-ମାଧ୍ୟମିକ ଶିକ୍ଷକ ସଂଘ । ଶୁଭଆଡ଼େ ସେ ଆରମ୍ଭ କଲେ ଶିକ୍ଷକ ସଂଗଠନ । ମୁଣ୍ଡୁଚି ମୂଷା ସେତୁବନ୍ଧ ନିର୍ମାଣ କଲାପରି ବନମାଳୀ ବାବୁ ସାରା ଓଡ଼ିଶାର ଶିକ୍ଷକ ମାନଙ୍କଠାରୁ କଞ୍ଚିଏ କଞ୍ଚିଏ ଅର୍ଥ ସର୍ବାଂ ଶ୍ରଦ୍ଧା ଆକାରରେ ସଂଗ୍ରହ କରି ଆରମ୍ଭ କଲେ ସଂଘର ସ୍ୱତନ୍ତ୍ର ଗୃହ ନିର୍ମାଣ— ଯାହା ବର୍ତ୍ତମାନ ଏକ ଦ୍ୱିତଳ ପ୍ରସାଦ ରୂପରେ କଟକ ସହରର ଝାଞ୍ଜିରିମଙ୍ଗଳା ଠାରେ ଶିକ୍ଷକ ଜାତିର ଗର୍ବ ଓ ଗୌରବର ପୀଠସ୍ଥଳୀ ରୂପେ ଦଣ୍ଡାୟମାନ ।

**'ଶିକ୍ଷକ ଦର୍ପଣ' ଓ ବ୍ରହ୍ମଚାରୀ:—**

ଓଡ଼ିଶାର ଶିକ୍ଷିତ ଶ୍ରେଣୀ ତଥା ଶିକ୍ଷା ବିଭାଗର ପ୍ରଶାସନିକ କର୍ମଚାରୀ ମାନଙ୍କ ସମ୍ମୁଖରେ ରାଜ୍ୟର ହଜାର ହଜାର ନିଷ୍ପେଷିତ ଶିକ୍ଷକଙ୍କର ସୁଖ, ଦୁଃଖ, ଅଶ୍ରୁ, ଆନନ୍ଦ, ହର୍ଷ-ବିଷାଦ ପୂର୍ଣ୍ଣ ସମସ୍ୟାମାନ ପ୍ରତି-ବିମ୍ବିତ ହୁଏ ଯେଉଁ ପତ୍ରିକା ମାଧ୍ୟମରେ, ତାହାହିଁ ହେଉଛି 'ଶିକ୍ଷକ ଦର୍ପଣ' ଓଡ଼ିଶା ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ମୁଖପତ୍ର, ଯାହାର ମୁଖ୍ୟ ସମ୍ପାଦକ ହେଉଛନ୍ତି ଶ୍ରୀ ବ୍ରହ୍ମଚାରୀ । ଓଡ଼ିଶାର ହଜାର ହଜାର ବେସରକାରୀ ଶିକ୍ଷାନୁଷ୍ଠାନର ପ୍ରାତ୍ୟହିକ ଘଟଣା-ବଳୀର ଚିତ୍ରଣ ଓ ପରିଚାଳନା ସମିତି ଗୁଡ଼ିକର ଶିକ୍ଷକ ମାନଙ୍କ ପ୍ରତି ହୀନମନ୍ୟତା, ସର୍ବୋପରି ଏହି ଶିକ୍ଷାନୁଷ୍ଠାନ ମାନଙ୍କରୁ ଶିକ୍ଷାଲାଭ କରିଯାଇ ଆଜି ଶିକ୍ଷା ବିଭାଗର ତଳୁ ଉପରି ପର୍ଯ୍ୟନ୍ତ ଅଧିଷ୍ଠିତ ସମସ୍ତ ହାକିମ, ଏପରିକି ମନ୍ତ୍ରୀ ପର୍ଯ୍ୟନ୍ତ, ଏହି ବେସରକାରୀ ଶିକ୍ଷକ ମାନଙ୍କ ପ୍ରତି ଯେଉଁ ବୈମାତୃକ ଭାବ ପ୍ରଦର୍ଶନ କରୁଛନ୍ତି, ତାର ତୀବ୍ର ସମାଲୋଚନା କରି ସମଗ୍ର ରାଜ୍ୟର ଶିକ୍ଷକ-ମାନଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନ ପାଇଁ ସେ ଯେଭଳି ଭାବରେ ଆଜିକୁ ଦୀର୍ଘ

ଦଶବର୍ଷ ଧରି ଶିକ୍ଷକ ଦର୍ପଣ ମାଧ୍ୟମରେ ନିର୍ଭୀକ ଭାବରେ କଲମ ଚଳାଇ ଆସିଛନ୍ତି, ତାହା ଶିକ୍ଷକ ଦର୍ପଣର ଧାରାବାହିକ ପାଠକରୂପେ ସମସ୍ତ ବେସରକାରୀ ଶିକ୍ଷକ ଗଣ, ଶିକ୍ଷା ବିଭାଗର ପ୍ରଶାସନିକ କ୍ଷେତ୍ରରେ ଥିବା କର୍ମଚାରୀ ବୃନ୍ଦ ଅଳ୍ପ ବହୁତେ ଜାଣିଛନ୍ତି । ତେବେ ସେ ସମସ୍ତ ହୃଦୟଗ୍ରାହୀ ଲେଖା ତାଙ୍କର ସାହିତ୍ୟିକ ପ୍ରତିଭା, ସଂସ୍କାର ମନୋବୃତ୍ତି, ବସ୍ତୁଦର୍ଶିତା, ବାସ୍ତବତା ସହିତ ସ୍ୱାଭାବିକତା, ନିତ୍ୟ-ନୂତନ ଅନୁଭୂତି ଶକ୍ତିର ସୂକ୍ଷ୍ମେକ୍ଷଣତା, ମୌଳିକ ସୃଜନୀ ଶକ୍ତି ଓ ବର୍ଣ୍ଣନାତ୍ମକ ପ୍ରତିଭାର ସର୍ବଶ୍ରେଷ୍ଠ ନିଦର୍ଶନ ।

ଏ ରାଜ୍ୟର ଅଗଣିତ ଶିକ୍ଷକ ଶ୍ରେଣୀର ସୁଖ ଦୁଃଖ ଇତ୍ୟାଦିର ବାସ୍ତବ ରୂପ ଚିତ୍ରିତ ହୋଇଥିବା ଗଳ୍ପ, ପ୍ରବନ୍ଧ ଓ କବିତାଗୁଡ଼ିକ ଦ୍ୱାରା ପତ୍ରିକାଟିକୁ ସର୍ବାଙ୍ଗ-ସୁନ୍ଦର କରି ପାଠକମାନଙ୍କ ଦୃଷ୍ଟିକୁ ଆଣିବାରେ ସେ ଯେପରି ଦକ୍ଷତାର ପରିଚୟ ଦେଇଛନ୍ତି, ଠିକ୍ ସେହିପରି ନିଜର ସମ୍ପାଦକୀୟ ସ୍ତମ୍ଭରେ ସାମାଜିକ ଚିତ୍ରାଙ୍କନ, ଶିକ୍ଷା ବିଭାଗର ପ୍ରଶାସନିକ କ୍ଷେତ୍ରରେ ଘଟୁଥିବା ନୂତନ ନୂତନ ଘଟଣା, ସ୍ୱାର୍ଥାନ୍ଧ ଓ ପରସ୍ୱ ଅପହରଣକାରୀ ମିଡିମ୍ୟାନ କର୍ମଚାରୀ ମାନଙ୍କର ବ୍ୟକ୍ତିଗତ ଚରିତ୍ର ଚିତ୍ରଣ କରିବାରେ ଯାହା ବାସ୍ତବ, ଯାହା ନିଛକ ସତ୍ୟ ଉପରେ ପ୍ରତିଷ୍ଠିତ, ସେହି ସବୁକୁ ତାଙ୍କର ଯାଦୁକାରୀ ମସୀ ମୂନରେ, ଏପରି ଭାବରେ ବର୍ଣ୍ଣନା କରନ୍ତି ଯେ, ତାହା ସୂକ୍ଷ୍ମାଗ୍ର ଛୁରିକାଘାତ ପରି ସମ୍ପୃକ୍ତ ବ୍ୟକ୍ତିମାନଙ୍କ ହୃଦୟରେ କମ୍ପନ ସୃଷ୍ଟି କରେ । ଏହା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । କେବଳ ସମ୍ଭବ ହୋଇଛି ଶ୍ରୀଯୁକ୍ତ ବ୍ରହ୍ମଚାରୀଙ୍କ ବୈଚିତ୍ର୍ୟମୟ ଜୀବନର ବିପୁଳ ଅଭିଜ୍ଞତା ଓ ମାନବ ଜୀବନ ସମ୍ବନ୍ଧରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ହେତୁ । ତାଙ୍କର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିର ବିଶ୍ଳେଷଣ, ବର୍ଣ୍ଣନା-ଚାତୁରୀ, ଗଠନ ପରିପାଟୀ, ଗୁରୁ ଗମ୍ଭୀର ଶବ୍ଦ ନିର୍ବାଚନ ଓ ସୁମାର୍ଜିତ ରୁଚି ବିଶିଷ୍ଟ ଶିକ୍ଷକ ଦର୍ପଣର ସମ୍ପାଦକତ୍ୱକୁ ସ୍ୱକୀୟ ପ୍ରତିଭାରେ ମହିମାନ୍ୱିତ କରୁଛି, ଏହା ସର୍ବସ୍ୱୀକାର୍ଯ୍ୟ ।

## ମହାସଂଘ ଓ ବ୍ରହ୍ମଚାରୀ :—

୧୯୭୦ ମସିହାରେ ସାରା ଓଡ଼ିଶାର ବେସରକାରୀ ଶିକ୍ଷକ ମାନଙ୍କର ୮ଟି ସଙ୍ଘର ସମ୍ମିଶ୍ରଣରେ ସୃଷ୍ଟି ହେଲା 'ଶିକ୍ଷକ ମହାସଙ୍ଘ' । ନିଷ୍ଠାପର କର୍ମଚାରୀ ଶ୍ରୀଯୁକ୍ତ ବ୍ରହ୍ମଚାରୀଙ୍କୁ ମହାସଙ୍ଘର ସଭାପତି ପଦରେ ଅଧିଷ୍ଠିତ କରାଇବାରେ ସମଗ୍ର ଶିକ୍ଷକ ସଙ୍ଘର ତାଙ୍କଠାରେ ଆସ୍ଥା, ସ୍ନେହ ଓ ଭକ୍ତିର ନିଦର୍ଶନ ସ୍ପଷ୍ଟ । ସେହିଦିନଠାରୁ ବ୍ରହ୍ମଚାରୀ ମହାଶୟ କେବଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ମୁଖ୍ୟ କର୍ଣ୍ଣଧାର ନୁହନ୍ତି, ସେ ଓଡ଼ିଶା ଶିକ୍ଷକ ମହାସଂଘର ମଧ୍ୟ ମୁଖ୍ୟ କର୍ଣ୍ଣଧାର । ଯେଉଁଦିନ ସେ ମହାସଙ୍ଘର ସଭାପତି ହେଲେ, ସେଦିନ ସେ ନିଜେ ସେହି ପଦବୀ ପାଇଛନ୍ତି ବୋଲି ଯେ ଆନନ୍ଦିତ ହେଲେ, ଏକଥା ନୁହେଁ, ଓଡ଼ିଶାର ସମସ୍ତ ଶ୍ରେଣୀର ଶିକ୍ଷକ ଗୋଟିଏ ପତାକା ତଳେ ଏକତ୍ରିତ ହୋଇ ପାରିଛନ୍ତି ଏବଂ ସମ ସ୍ୱରରେ ଗୋଟିଏ ଦାବୀ ଉପସ୍ଥାପିତ କରୁଛନ୍ତି, ଏହା ଚିନ୍ତା କରି ସେ ଆନନ୍ଦରେ ଅଭିଭୂତ ହୋଇ ଯାଇଥିଲେ ।

ତାଙ୍କର କର୍ମ ପରିସର ଏପରି ବଢ଼ି ଯାଇଛି ଯେ, ସେ ଟିକିଏ ମାତ୍ର ସମୟ ପାଆନ୍ତି ନାହିଁ ନିଜର ବ୍ୟକ୍ତିଗତ କଥା ଚିନ୍ତା କରିବାକୁ । କେବଳ ନିମ୍ନ ମାଧ୍ୟମିକ ଶିକ୍ଷକଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବା ତ କଷ୍ଟକର ହେଉଥିଲା, ପୁଣି ସେଥିରେ କଲେଜ ଓ ମାଧ୍ୟମିକ ଶିକ୍ଷକ ସଙ୍ଘ, ହିନ୍ଦୀ ଶିକ୍ଷକ ସଙ୍ଘ ଇତ୍ୟାଦି ଅନ୍ୟ ୭ଟି ସଙ୍ଘର ଶିକ୍ଷକମାନଙ୍କ ଦୁର୍ଦ୍ଦଶା ସମ୍ପର୍କରେ ଶୁଣି କାର୍ଯ୍ୟ କରିବାରେ ସେ ଯେପରି ନିଜର ଶକ୍ତିକୁ ଆହୁରି ବୃଦ୍ଧି କରି ପାରିଥିବା ପରି ମନେହୁଏ । ୬୯ ବର୍ଷର ବୃଦ୍ଧ ଅକ୍ଳାନ୍ତ ପରିଶ୍ରମ କରି ମହାସଙ୍ଘର ସଭାପତି ରୂପେ ଯେତେବେଳେ ଶିକ୍ଷକ ମାନଙ୍କୁ ଆହ୍ୱାନ ଦିଅନ୍ତି, ସେତେବେଳେ ତାଙ୍କ ମଧ୍ୟରେ ଦେଖାଦିଏ ଯୁବକର ଉନ୍ମାଦନା । ଶିକ୍ଷକମାନଙ୍କ ଦୁଃଖ ଦୁର୍ଦଶା ଶୁଣିବାରେ ବିଭାଗୀୟ କର୍ମଚାରୀମାନେ ବଧିରପ୍ରାୟ ହେବା ଓ ଅଯଥା କାଳ ବିଳମ୍ବ କରି କାର୍ଯ୍ୟ ନ କରି ଶିକ୍ଷକ ମାନଙ୍କୁ ନିର୍ଯ୍ୟାତିତ ଅବସ୍ଥାରେ ରଖିବା ଇତ୍ୟାଦି ଯେତେବେଳେ ସୀମା ଲଙ୍ଘନ କରେ, ସେତେବେଳେ ନକ୍ସଲାଇଟ୍ ହେବାକୁ ସେ ଶିକ୍ଷକ ମାନଙ୍କୁ ଆହ୍ୱାନ ଦିଅନ୍ତି ।

## କର୍ମଠ ବ୍ରହ୍ମଚାରୀ :—

ବନମାଳୀ ବାବୁ ପ୍ରତ୍ୟହ ଯେତିକ କାମ କରନ୍ତି, କୌଣସି ବ୍ୟକ୍ତିଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ। ମୁଁ ଦିନେ ଦିନେ ବିସ୍ମିତ ହୁଏ, ଏ ବୟସରେ ସେ କିପରି ଏତେ ଖଟି ପାରୁଛନ୍ତି ? ସକାଳ ୬ଟାରୁ ସେ ଉଠନ୍ତି। ରାତିରେ ବାକିଥିବା ସମ୍ବାଦ ପତ୍ର ସବୁ ପଢ଼ି ସାରି ଦିଅନ୍ତି। ୭ଟା ମଧ୍ୟରେ ତାଙ୍କର ସମସ୍ତ ନିତ୍ୟକର୍ମ ସାରି ଅଫିସ କାମରେ ଲାଗି ପଡ଼ନ୍ତି। ପୂର୍ବ ଦିନର ବକୟା କାମ ପ୍ରଥମରୁ ସାରିଦେବା ତାଙ୍କର କାମ। ଅଫିସରେ ୫ ଜଣ କିରାଣୀଙ୍କ ବିଭାଗ ଅନୁସାରେ ସମସ୍ତଙ୍କ କାମ ଦେଖିବା, କାମ କରାଇବା, ରାଜ୍ୟର ପ୍ରତି ପ୍ରାନ୍ତରୁ ଆସୁଥିବା ସମସ୍ତ ସରକାରୀ ବେସରକାରୀ ଚିଠି ପତ୍ରର ଉତ୍ତର ଦେବା, ଶିକ୍ଷକ ଦର୍ପଣର ସଂପାଦନା କାର୍ଯ୍ୟ କରିବା, ପ୍ରଶ୍ନପତ୍ର ଗୁଡ଼ିକ ଠିକ୍ ଭାବରେ ଦେଖି ଛପାଇବା ପାଇଁ ପ୍ରେସକୁ ଦିବା ଓ ପ୍ରତି ପରୀକ୍ଷା ପାଇଁ Order card ପଠାଇବା ଓ **order** ଆସିବା ପରେ ତାକୁ ଜିଲ୍ଲ ମୁତାବକ ସଜାଇ, ପ୍ରୋଗ୍ରାମ ମୁତାବକ ପ୍ରତି ବିଦ୍ୟାଳୟକୁ ଠିକ୍ ସମୟରେ ପ୍ରଶ୍ନ ପଠାଇବା, ଆୟ ବ୍ୟୟ ଟିକନିଖି ହିସାବ ରଖିବା ଓ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ପ୍ରତ୍ୟହ ଆସୁଥିବା ଶିକ୍ଷକ ମାନଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣିବା ଓ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା, ଶିକ୍ଷା ବିଭାଗର କର୍ମଚାରୀ ମାନଙ୍କୁ ଭେଟିବା ଇତ୍ୟାଦି ପ୍ରାୟ ତାଙ୍କର ସମସ୍ତ କାମ ସହିତ ଓଡ଼ିଶାର ବିଭିନ୍ନ ସ୍ଥାନରେ ହେଉଥିବା ସଭା ସମିତିରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘର ସଙ୍ଗଠନ ସମ୍ପାଦକ ରୂପେ ଯୋଗ ଦେବା ଓ ସର୍ବୋପରି ଶିକ୍ଷକ ମହାସଂଘର ସଭାପତି ଭାବେ ମହାସଂଘର ସମସ୍ତ କାଗଜପତ୍ର ଠିକ୍ ଭାବରେ କରିବା ଇତ୍ୟାଦି ଦାୟିତ୍ୱପୂର୍ଣ୍ଣ ଗୁରୁତର କାର୍ଯ୍ୟରେ ନିଜକୁ ପ୍ରାୟ ହଜାଇ ଦେଇଥାନ୍ତି। ବ୍ରହ୍ମଚାରୀ ବାବୁ ପ୍ରତିଦିନ ଆସୁଥିବା ଶିକ୍ଷକ ମାନଙ୍କ ଖାଇବା, ରହିବାର ବ୍ୟବସ୍ଥା ବୁଝିବା ପରେ ସମସ୍ତେ ଶୋଇଗଲା ପରେ ସେ ଶୋଇବାକୁ ଯାଆନ୍ତି। ବେଳେ ବେଳେ ମୁଁ ଦେଖେଁ, ସେ ନିଜେ ନିଜର ସମସ୍ତ ବିଛଣାପତ୍ର ଓ ଏପରିକି ଶୋଉଥିବା ନିଜର ଖଟ ଖଣ୍ଡିକ ଅନ୍ୟକୁ ଦେଇ ଅଫିସ ଗୃହରେ ମଧ୍ୟ ଖାଲି ଟେବୁଲ ଉପରେ କାଗଜ ବିଡ଼ା ମୁଣ୍ଡ ତଳେ ଦେଇ ଶୋଇ ପଡ଼ନ୍ତି। ପୁଣି ସକାଳୁ ସମସ୍ତଙ୍କ ପୂର୍ବରୁ ଉଠି ଧରାବନ୍ଧା ରୁଟିନ୍ ଅନୁସାରେ କାମ କରି ଯେଉଁ କର୍ତ୍ତବ୍ୟ ନିଷ୍ଠାର ପରିଚୟ ଦେଇ ଆସୁଛନ୍ତି, ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ଏବଂ ତାଙ୍କ ନିକଟରେ ମୁଣ୍ଡ ସ୍ୱତଃ ଅବନତ ହୋଇଯାଏ।

୧୯୭୮ ମସିହା ଠାରୁ ଶିକ୍ଷା ବିଭାଗର କର୍ମଚାରୀ, ଶିକ୍ଷାମନ୍ତ୍ରୀ, ଶିକ୍ଷା ସଚିବ ଇତ୍ୟାଦିଙ୍କୁ ବହୁ ପ୍ରତିନିଧି ଦଳରେ ଯାଇଁ ଭେଟିବା, ଆବେଦନ ନିବେଦନ କରିବା ଓ ଦାବିପତ୍ର ଦେବା ସମୟରେ ସେ ଅଫିସର ମାନଙ୍କ ମନୋମୁଖୀ ଶାସନର ତୀବ୍ର ପ୍ରତିବାଦ କରି ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବଙ୍କୁ ତାଙ୍କର ଖିଆଲି ମନୋବୃତ୍ତି ପରିବର୍ତ୍ତନ ନ ହେଲେ ଓ ଶିକ୍ଷକ ମାନଙ୍କ ଦାବିକୁ ପୂରଣ ନ କଲେ ବିପ୍ଳବ, ଘେରାଉ ଓ ଅନଶନ ଧର୍ମଘଟ ଇତ୍ୟାଦିର ଧମକ ମଧ୍ୟ ଦିଅନ୍ତି। ଚରମ ପନ୍ଥା ନେଇ ଧମକ ଦେବା ସଙ୍ଗେ ସଙ୍ଗେ ମଧ୍ୟ କାର୍ଯ୍ୟତଃ ନିର୍ଦ୍ଦିଷ୍ଟ ସମୟରେ ଠିକ୍ ସେହି କାର୍ଯ୍ୟ କରାଇବାରେ ସେ ପଛାଇ ଯାଆନ୍ତି ନାହିଁ। ବାସ୍ତବିକ ତାଙ୍କର ନେତୃତ୍ୱ ପାଇଁ ଆଜି ସାରା ରାଜ୍ୟର ଶିକ୍ଷକ କୁଳ ଗର୍ବ ଅନୁଭବ କରନ୍ତି।

ମୁଁ ଆଜି ତାଙ୍କର ୭୯ତମ ବର୍ଷ ବୟସରେ ପାଳିତ ହେବାକୁ ଯାଉଥିବା ଜୟନ୍ତୀ ଉତ୍ସବରେ ତାଙ୍କୁ ଓଡ଼ିଶା ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘ ଓ ଓଡ଼ିଶା ଶିକ୍ଷକ ମହାସଙ୍ଘର ସମଗ୍ର ବେସରକାରୀ ଶିକ୍ଷକ ଭାଇମାନଙ୍କ ତରଫରୁ ତାଙ୍କୁ ସାଧୁବାଦ ଓ କୃତଜ୍ଞତା ଜଣାଉଛି ଏବଂ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି, ସେ ଦୀର୍ଘଜୀବୀ ହୋଇ ଅତଳ ଦରିଆରେ ଭାସୁଥିବା ଶିକ୍ଷକ ସମାଜକୁ ରକ୍ଷା କରନ୍ତୁ।

● ସାଧାରଣ ସମ୍ପାଦକ
ନିମ୍ନ-ମାଧ୍ୟମିକ ଶିକ୍ଷକ ସଙ୍ଘ

# ଗୋଟିଏ ଉତ୍ସର୍ଗୀକୃତ ଜୀବନ

**ଶ୍ରୀ ନରସିଂହ ସାହୁ**

ଜଣେ ମନୀଷୀ କହିଥିଲେ—**In public work, tenacity + dedication = Success**. ଅର୍ଥାତ୍ ସର୍ବସାଧାରଣ କାମରେ ଅହରହ କର୍ମସାଧନା ଓ ଗଭୀର ଆତ୍ମୋତ୍ସର୍ଗ ହିଁ ସଫଳତାର ମାପକାଠି । ଦୁଇ ହାତ ଟେକି ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କଲା ପରେ ହିଁ ଦ୍ରୌପଦୀ ବସ୍ତ୍ର ପାଇଥିଲେ । ଅଶୀତିପର ବୟସ୍କ ସନ୍ନ୍ୟାସୀ ସୁର ଦାଶ ତାନପୁରା ବଜାଇ ବଜାଇ, ଚକ୍ଷୁ ମୁଦି, ଭାବ ସମୁଦ୍ରରେ ସଂପୂର୍ଣ୍ଣ ମଜ୍ଜିଗଲା ପରେ ହିଁ ଶ୍ରୀକୃଷ୍ଣ ବାଳଗୋପାଳ ମୂର୍ତ୍ତି ଧରି ଆସି ତାଙ୍କ ଆଗରେ ବସିଛନ୍ତି, ତାନପୁରା ଶୁଣିଛନ୍ତି । ନିଜକୁ ନ ଭୁଲିଲେ, ଅହଂକୁ ନ ଛାଡ଼ିଲେ, ଢଳ ଢ଼ାଳ ମଧୁକ୍ଷରରେ ନ ପହଁଞ୍ଚିଲେ, ନିଜକୁ ନେଇ ଅନ୍ୟ ଭିତରେ ମିଶେଇ ନ ଦେଲେ ବା ସସୀମରୁ ଉଠି ଅସୀମରେ ନିଜକୁ ହଜାଇ ନ ଦେଲେ ଖାଲି ଗୋପ ଦାଣ୍ଡର ଧୂଳି ମାଟିରେ ବୁଲିବା ସାର ହୁଏ, କୃଷ୍ଣଙ୍କ ଦେଖା ମିଳେନା । ଆଉ ନିଜ ଉପରେ ଟିକିଏ ବି ନିର୍ଭର ନ କରି ବୋଉ କୋଳକୁ ଗୋଟିପଣେ ଡେଇଁ ପଡ଼ିଲେ ବୋଉ ଯେମିତି ଦୁଧସର, ଛେନା କାକରା ସାଙ୍ଗେ ସାଙ୍ଗେ ବାଢ଼ି ଦିଏ, ତାଙ୍କ ଉପରେ ନିଜକୁ ପୂରା ସମର୍ପି ଦେଲେ ସେ ଯେମିତି ସାଙ୍ଗେ ସାଙ୍ଗେ ଓହ୍ଲେଇ ଆସନ୍ତି ମଧୁକ୍ଷରର ଅଗ୍ର ଭାଗରୁ । ମୁହାଁମୁହିଁ ଠିଆ ହୋଇଯାଆନ୍ତି ତମ ଆଗରେ, ତମ କାମ କରି ଦିଅନ୍ତି କ୍ରୀତଦାସ ଭଳି, ଯମ ମୁହଁରୁ ତମ ପୁଅକୁ ଫେରେଇ ଆଣନ୍ତି । ବାବରଙ୍କ ଡାକ ଶୁଣି ବାବରଙ୍କ ପୁଅକୁ ଫେରେଇ ଆଣିଥିଲେ ତ ସର୍ବ ମଙ୍ଗଳମୟ ଖୋଦା ! ଖାଲି ଲୋଡ଼ା ସେଇ ନିଷ୍ଠା, କାଷ୍ଠା, ବିହ୍ୱଳତା, ଭାବ ସମୁଦ୍ରରେ ଅବଗାହନ । ଉପରେ ଭଗବାନ, ଭିତରେ ଆନ୍ତରିକତା, ଉପରେ ଧର୍ମ, ହାତରେ କର୍ମ, ପୂର୍ଣ୍ଣପୂର୍ଣ୍ଣ ଭୂମାର ଚରଣରେ ନିଜକୁ ଉତ୍ସର୍ଗ, ଆଉ ଭିତରେ କରି ଅବା ମରିର ପଣ··ସଂକଳ୍ପ—**Heart within and God overhead** ଏହି ତ ଋଷିର ସାଧନା ! ଏଇ ତ ଋଷି ପ୍ରାଣେ ଦେବାବତରଣର ପନ୍ଥା ! ବନମାଳୀ ବ୍ରହ୍ମଗୁରୁ ଏହିଭଳି ଗୋଟିଏ ଋଷି—କର୍ମଯୋଗୀ, ଅନାସକ୍ତ ଯୋଗୀ, ମାନବ ପ୍ରେମୀ, ଭଗବତ୍ ପ୍ରେମୀ ।

ତାଙ୍କର ସଫଳତା ମୂଳରେ ଏଇ ଗଭୀର ଆତ୍ମ-ବିଶ୍ୱାସ । ଈଶ୍ୱର ବିଶ୍ୱାସ, ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ଆଉ ତା ସଙ୍ଗେ ସଙ୍ଗେ ଅଗାଧ ପରିଶ୍ରମ ଓ ଅହରହ ନୀରବ କୃଚ୍ଛ୍ର ସାଧନା । ମାଧ୍ୟମିକ ଶିକ୍ଷକ ଜୀବନ ନିର୍ମାଣଠାରୁ ଦୋହଲା ହାଇସ୍କୁଲ ପ୍ରତିଷ୍ଠା ଯାଏ, ଶିଶୁ ସାହିତ୍ୟ ରଚନାଠାରୁ ବେସରକାରୀ ସ୍କୁଲ କଲେଜ ଶିକ୍ଷକ ସଙ୍ଘର ସଭାପତି ଯାଏ ସବୁ କାମରେ ସେ ଜଣେ କର୍ମଠ ଯୋଦ୍ଧା, ଲଢ଼ୁଆକ । ହେଲେ ପଦ୍ମପତ୍ରରେ ପାଣି ଭଳି ସେ ସବୁଥିରେ ଥାଇଁ କେଉଁଥିରେ ନ ଥିଲା ଭଳି । ସବୁ ଗୋସେଇଁଙ୍କ ଇଚ୍ଛା, ତମେ ଆମେ କେବଳ 'ନିମିତ୍ତ', ଆଉ ସେହି 'ନିମିତ୍ତ' ପୁଣି ପ୍ରାଣମୂର୍ଚ୍ଛା, ଜୀବନମୂର୍ଚ୍ଛା କରି ଡେଇଁପଡ଼ିବ ଯୁଦ୍ଧକୁ—ଏଇ ତ

ତାଙ୍କ ଜୀବନର ଦିଗ୍‌ଦର୍ଶନ—ତାଙ୍କ ସାର୍ଥକ ଜୀବନର ମାପକାଠି ।

ବନମାଳୀ ବ୍ରହ୍ମଚାରୀଙ୍କୁ ମୁଁ ଅନେକ ଦିନୁ ଦେଖିଛି । ମନେ ମନେ ମାଟିରେ ପ୍ରଣିପାତ କରିଛି ବହୁବାର । ଏ ଯୁଗରେ ଯେତେବେଳେ ଆମେ ସବୁ କରୁଛୁ ନ୍ୟାୟକୁ ଛାଡ଼, ସବୁ କହୁଛୁ ସତକୁ ଛାଡ଼, ସବୁ ପଥରେ ଯାଉଛୁ ସାଧୁତାକୁ ଛାଡ଼, ସେତେବେଳେ ଏଇ ଲୁଖୁରି, ମଳମୁଣ୍ଡିଆ, ଅଧାପାଠୁଆ ଲୋକଟି ଯେ କି ତପସ୍ୟା କରି କରି ଚାଲିଛି—କି କୋଣାର୍କ ଗଢ଼ି ଗଢ଼ି ଚାଲିଛି—କି ଆର୍ଯ୍ୟ ସଂସ୍କୃତିର ମୂଳଦୁଆ ପିଟି ପିଟି ଚାଲିଛି—ଏ ଅମନୋଯୋଗୀ ପୁଅଝିଅଙ୍କୁ ବାଟକୁ ଆଣିବାକୁ ଯେ କେମିତି କାନ୍ଦି କାନ୍ଦି ବିକଳ ହୋଇ ଡାକ ଛାଡ଼ୁଛି, ତା' ଦେଖିବାର କଥା, ଭାବିବାର କଥା । ହେଲେ ଦାଶେ ଆପଣଙ୍କ ଭାଷାରେ—

"ଶ୍ରୋତା ବକତା କେହି ନାହିଁ,
ରୋଦନ କରୁ କାହିଁ ପାଇଁ ?"

ଗାନ୍ଧିଜୀଙ୍କୁ ନାଥୁରାମ ଥରେ ହତ୍ୟା କରିଥିଲା । ଏବେ ଆମେ ତାଙ୍କୁ ପ୍ରତିଦିନ ହତ୍ୟା କରି କରି ଚାଲିଛୁ । ଗାନ୍ଧୀ, ଜହରଲାଲ ଭାରତର ପ୍ରଥମ ଶତ୍ରୁ ବୋଲି ଏବେ ଲୋକେ କହିଲେଣି । ତେଣୁ ବନମାଳୀ ବ୍ରହ୍ମଚାରୀ ଯେ କେତେଦିନ ବଞ୍ଚିବେ, କେତେଦିନ ବଞ୍ଚିବ ତାଙ୍କର ଆଦର୍ଶ, ସେଥିରେ ଯଥେଷ୍ଟ ସନ୍ଦେହ । ଏ ଯୁଗର ନବ୍ୟ ସଭ୍ୟ ତରୁଣ ତରୁଣୀ ଆଧୁନିକ ସଭ୍ୟତାର ମୋହରେ ଘାଣ୍ଟି ହୋଇ, ଚାରିହଜାର ବର୍ଷର ଭାରତୀୟ ସଂସ୍କୃତିକୁ ଗୋଇଠା ମାରି, ଚାରିଶହ ବର୍ଷର ଆମେରିକା ସଂସ୍କୃତି ପଛରେ ଧାଇଁ ବନମାଳୀ ବ୍ରହ୍ମଚାରୀଙ୍କ ଛାତିରେ ଯେ ଦିନେ ଛୁରୀ ମାରିବେ, ଏଥିରେ ତିଳାର୍ଦ୍ଧେ ସନ୍ଦେହ ନାହିଁ । କିନ୍ତୁ—

ଭାରତ ଗାନ୍ଧୀ, ରବୀନ୍ଦ୍ରନାଥ, ବିବେକାନନ୍ଦଙ୍କ ଦେଶ ।
ଭାରତ ବୁଦ୍ଧ, ଚୈତନ୍ୟ, ରାମାନୁଜ, କବୀରଙ୍କ ଦେଶ ।
ଭାରତ ଧାତ୍ରୀ ପାନ୍ନାର ଦେଶ,
ଦଧୀଚିର ଦେଶ,
କର୍ଣ୍ଣର ଦେଶ,
ନାଅଙ୍କ ଦୁର୍ଭିକ୍ଷ କାଳର 'ସନାତନ' ଦେଶ ।

ଭାରତର ମନ୍ତ୍ର—ତ୍ୟାଗ, ନିଷ୍ଠା, ସେବା, ସାଧନା, ଆତ୍ମବଳ ।

ଭାରତର ଦର୍ଶନ—ବସୁଧୈବ କୁଟୁମ୍ବକମ୍ ।

ତମର ଆଦର୍ଶ—ବାଘକୁ ମାରି ରାଜା ହେବ, ଅନ୍ୟ ଦେଶ ଲୁଣ୍ଠନ କରିବା ପାଇଁ ରକ୍ତର ନଦୀ ବୁହାଇ ଦେବ ।

ଭାରତର ଆଦର୍ଶ—ବାପ ସତ୍ୟ ରକ୍ଷା କରିବାପାଇଁ ପୁଅ ଚୌଦ ବର୍ଷ ବଣକୁ ଯିବ । ସତ୍ୟ ରକ୍ଷା କରିବା ପାଇଁ ରାଜା ହରିଶ୍ଚନ୍ଦ୍ର ମଶାଣିର ଚଣ୍ଡାଳ ହେବ । ଗାନ୍ଧୀ ଗୁଳି ଖାଇଲେ, ତଥାପି କହିଲେ—ନା, ପାକିସ୍ଥାନକୁ ଅବିଭକ୍ତ ଭାରତର ଅଧେ ଧନ ଦିଆଯିବ, ଦିଆଯିବ ।

ଭାରତ ଏଇଥିପାଇଁ ବଡ଼ । ବଡ଼ଲୋକ ଦେଖେଇ, ଠିଙ୍କ ଭଳି ଫୁଲି, ଚରମ ସ୍ୱାର୍ଥପର ହୋଇ, ବିଳାସ କୋଳରେ ବଢ଼ିବା ଭାରତ ଶିଖି ନାହିଁ । ଭାରତ ଶିଖିଛି ଦଧୀଚି ଭଳି ନିଜ ହାଡ଼ ଦେଇ ଗଣେକୁ ରକ୍ଷା କରିବାକୁ !

ତେଣୁ ଭାରତ କେବେ ମରିବ ନାହିଁ,
ଗାନ୍ଧିଜୀ କେବେ ମରିବେ ନାହିଁ ।

ବନମାଳୀ ବ୍ରହ୍ମଚାରୀଙ୍କୁ କେହି ହତ୍ୟା କରି ପାରିବ ନାହିଁ ।

ଭାରତର ସଂସ୍କୃତି, ଭାରତର ଆତ୍ମା, ଭାରତର ଅସ୍ଥି, ମଜ୍ଜା, ମେରୁଦଣ୍ଡ 'ତ୍ୟାଗ'—ଭାରତର ତରୁଣ ତରୁଣୀ ଦିନେ ଏହା ବୁଝିବେ । ଆଉ ବୁଝିବେ ଯେ ଏଇ ତ୍ୟାଗ ଦିନେ ମଣିଷକୁ ପଶୁ ସ୍ତରରୁ ଉଠେଇ, ମଣିଷ ସ୍ତର ପାରି କରେଇ, ଦେବତାର ଆସନରେ ନେଇ ବସେଇ ଦେବ ।

ସେଇ ତ୍ୟାଗର ପୂଜାରୀ ବନମାଳୀ ବ୍ରହ୍ମଚାରୀ ଅଜର, ଅମର, ଅକ୍ଷୟ ।

ବନମାଳୀ ବ୍ରହ୍ମଚାରୀଙ୍କୁ ଆଜି ଆଉ ଥରେ ଭକ୍ତିରେ ମଥା ନୋଇଁଛି ।

● ଅଧ୍ୟାପକ
ଖ୍ରୀଷ୍ଟ କଲେଜ

# ଆଧୁନିକ ଶିକ୍ଷକ

**ଶ୍ରୀ ରବିନାରାୟଣ ମହାପାତ୍ର**

ଶିକ୍ଷା ହେଉଛି ଅତୀତର ଅଭିଜ୍ଞତାକୁ ନବାଗତ ଶିଶୁର ମନରେ ଆରୋପ କରି ଅତୀତ ସହିତ ବର୍ତ୍ତମାନ ଏବଂ ବର୍ତ୍ତମାନ ସହିତ ଭବିଷ୍ୟତର ଯୋଗସୂତ୍ର ରକ୍ଷା କରିବା । ଏହି ଯୋଗସୂତ୍ର ସମାଜର ବନ୍ଧନକୁ ନିବିଡ଼ କରିବା ସଙ୍ଗେ ସଙ୍ଗେ ଇତସ୍ତତଃ ଶିଶୁର ମନକୁ ଏକ ଶୃଙ୍ଖଳିତ ମାର୍ଗରେ ଗତି କରାଇବାରେ ଯୋଗବାହି ହୋଇଥାଏ । ତେବେ ଶିକ୍ଷାର ତୁଙ୍ଗ ସ୍ୱରୂପ ହେଲା ଆଚରଣ ସମୂହ ଏବଂ ଏହାଦ୍ୱାରା ଶିକ୍ଷିତ ମଣିଷକୁ ସ୍ୱାଧୀନ ଚିନ୍ତା କରିବାକୁ କ୍ଷେତ୍ର ଯୋଗାଇ ଦେଇ ସମୂହ କଲ୍ୟାଣର ଦୀକ୍ଷା ଦେବା ।

ଶିକ୍ଷାର କ୍ଷେତ୍ର ସାର୍ବଜନୀନ ଏବଂ ଦେଶକାଳ ପାତ୍ର ଅନୁସାରେ ସମାଜ ଜୀବନ ପାଇଁ ନୀତି ପାଳନ କରି ଶିକ୍ଷା କିଛିର ମାତ୍ରାରେ ଶୃଙ୍ଖଳାଧର୍ମୀ ହୋଇଥାଏ । ମଣିଷର ପ୍ରକୃତି ଯାହା ସେଥିରେ ପ୍ରବୃତ୍ତିର କିଛି ସଂଯମ ନ ରହିଲେ କେହି କାହାର ସମ୍ପତ୍ତି ଏବଂ ଦାବି ସଂରକ୍ଷଣ କରି ପାରିବେ ନାହିଁ । ତେଣୁ ଉପଯୋଗିତାର ବିଚାର ସହିତ ବ୍ୟକ୍ତି, ସ୍ୱାର୍ଥ ଏବଂ ସମୂହ ସ୍ୱାର୍ଥର ସମନ୍ୱୟ ସମ୍ପାଦନ ହିଁ ଶିକ୍ଷାର ସର୍ବଯୁଗୀୟ ମୂଲ୍ୟବୋଧ । ଶିକ୍ଷା କେବଳ ସ୍ମୃତି ଶକ୍ତିର ବିକାଶ ନୁହେଁ । ଏହା ସୃଜନୀ ଶକ୍ତିର ଦ୍ୟୋତକ ମାତ୍ର ।

ସେହି ହିସାବରେ ଶିକ୍ଷାବିତ୍‌ର ଦାୟିତ୍ୱ ଗୁରୁତ୍ୱପୂର୍ଣ୍ଣ । ଭବିଷ୍ୟତ ସମାଜ ଗଠନ ପାଇଁ ସ୍ୱପ୍ନ ଏବଂ ଚିନ୍ତା ନ ଥିଲେ ସେ ଭବିଷ୍ୟତ ପାଇଁ ନାଗରିକ ସୃଷ୍ଟି କରି ପାରିବେ ନାହିଁ । ବସ୍ତୁବାଦୀ ସମୃଦ୍ଧିର ଉପଭୋଗ ପାଇଁ ମଣିଷର ମାନସିକ ପ୍ରସ୍ତୁତି ନ ହେଲେ, ସେହି ସମୃଦ୍ଧିର ଆବଶ୍ୟକତା କିଛି ନାହିଁ । ତେଣୁ ଉତ୍ପାଦନ ପାଇଁ ବିବିଧ ସାମାଜିକ ଶ୍ରେଣୀ ଗଠିତ ହୋଇ ସେହି ଶ୍ରେଣୀମାନଙ୍କୁ ଉତ୍ପାଦନ ଅଭିମୁଖୀ ଶିକ୍ଷାଦାନର ବ୍ୟବସ୍ଥା ହେବା ଉଚିତ । ପ୍ରାଚୀନ ଭାରତରେ ମାନବ ସେବା ହିଁ ମାଧବ ସେବା ବୋଲି ସ୍ୱୀକାର କରାଯାଉଥିଲା ।

ଏହି ଉତ୍ପାଦନ ଅଭିମୁଖୀ ଶିକ୍ଷାର ପ୍ରାଣକେନ୍ଦ୍ର ଥିଲା ପରିବାର । ଅଭ୍ୟାସଗତ କୁଶଳତା ହାସଲ କରି ଜୀବିକାଗତ ସମସ୍ୟାର ସମାଧାନ ସଙ୍ଗେ ସଙ୍ଗେ କଳା କୁଶଳତା ପାଇଁ ମସ୍ତିଷ୍କର ବିନିଯୋଗ ଆବଶ୍ୟକ ପଡ଼ୁଥିଲା । ତେବେ ଏହି ଉତ୍ପାଦନ ଅଭିମୁଖୀ ଶିକ୍ଷାରେ ଶରୀର ଶ୍ରମ ହିଁ ମୁଖ୍ୟ । ଏବେ ପ୍ରୟୋଗ ବିଜ୍ଞାନ ଏହି ଶ୍ରମ ଲାଘବ କରି ଦେଇଛି, କିନ୍ତୁ ପ୍ରତି ମଣିଷକୁ କର୍ମ ଯୋଗାଣ କରିବାର ପ୍ରତିଶ୍ରୁତି ଭାରତ ପରି ଜନବହୁଳ ଏବଂ ବିକାଶଶୀଳ ଦେଶରେ ଦେଇ ପାରିନାହିଁ ।

ପ୍ରୟୋଗ ବିଜ୍ଞାନ ମଣିଷଠାରୁ ପୂର୍ବପରି ସଂଯମ ଦାବୀ କରୁନାହିଁ । ପୂର୍ବେ ମଣିଷର ସଂଯମ ଏବଂ ବିଶ୍ୱାସବୋଧ ହିଁ ସାମାଜିକ ସଂଗଠନର ଭିତ୍ତି ଥିଲା । ତେଣୁ ପ୍ରୟୋଗ ବିଜ୍ଞାନ ସେବିତ ସମସାମୟିକ ସମାଜରେ ସାମାଜିକ ସଙ୍ଗଠନ ନୂତନ ପଦ୍ଧତି ଅନୁସରଣ କରିବା ସ୍ୱାଭାବିକ, ବିଶେଷତଃ ପରିବାରର ଦାୟିତ୍ୱ ଏବେ ସର୍ବସାଧାରଣ ବିଦ୍ୟାପୀଠ ନେଇଗଲାଣି । ତେଣୁ

ଉପୁଜୁଥିବା ନୂତନ ସମସ୍ୟାର ସମାଧାନ ପାଇଁ ଶିକ୍ଷକର ଦାୟିତ୍ୱ ବୃଦ୍ଧି ପାଇଛି ।

ବିଭିନ୍ନ ଉତ୍ପାଦନ ଧର୍ମୀ ଶ୍ରେଣୀଗୁଡ଼ିକର ସମନ୍ୱୟ ପାଇଁ ଗଠିତ ବୁଦ୍ଧିଜୀବୀ ସମାଜସେବୀ ଶ୍ରେଣୀର ଉପଯୋଗୀ ଶିକ୍ଷା ହିଁ ଶିକ୍ଷା ମାନଙ୍କର ସର୍ବୋଚ୍ଚ ବିକାଶ । ମଣିଷର ପୂର୍ଣ୍ଣତାଙ୍କ ସମନ୍ୱିତ ଅଭିବ୍ୟକ୍ତି ପାଇଁ, ଏହି ଶ୍ରେଣୀ ଚିନ୍ତା କରନ୍ତି ଏବଂ ଚିନ୍ତାକୁ କାର୍ଯ୍ୟକାରୀ କରନ୍ତି । ଏଥିପାଇଁ ମଣିଷର ପ୍ରକୃତି ବିଷୟରେ ଏହି ଶ୍ରେଣୀର ଅନୁଭୂତି ଏବଂ ତତ୍ତ୍ୱ ଜ୍ଞାନ ବିଶେଷ ଭାବରେ ଆବଶ୍ୟକ । ଏହି ଜ୍ଞାନ କେବଳ ଗ୍ରନ୍ଥ ପାଠ ଦ୍ୱାରା ସମ୍ଭବ ନୁହେଁ । ଗ୍ରନ୍ଥକାରଙ୍କ ପୃଷ୍ଠଭୂମି ଏବଂ ଗ୍ରନ୍ଥ ରଚନାର ପରିବେଶକୁ ଦୃଷ୍ଟି ନ ଦେଇ କେବଳ ଗ୍ରନ୍ଥ ମୁଖସ୍ଥ କଲେ ଜଣେ ଭାଷଣ ଦେଇପାରେ କିନ୍ତୁ ଜ୍ଞାନ ଅର୍ଜ୍ଜନ କରିବା ସମ୍ଭବ ନୁହେଁ ।

ମୁଦ୍ରାଯନ୍ତ୍ର ପ୍ରସାଦରୁ ବର୍ତ୍ତମାନ ଗଣଶିକ୍ଷା ପାଇଁ ଲକ୍ଷ ଲକ୍ଷ ପୁସ୍ତକ ସୁଲଭ ମୂଲ୍ୟରେ ମିଳୁଅଛି । ଏହାନ୍ତା ମାନେ ବହି ମଧ୍ୟ ଛାତ୍ରଛାତ୍ରୀଙ୍କ ହାତରେ ପଡ଼ୁଛି । ବୁଝନ୍ତୁ ନ ବୁଝନ୍ତୁ ପ୍ରଶ୍ନର ଉତ୍ତର ମୁଖସ୍ଥ କରି ଲେଖି ପାରିଲେ ଉପାଧି ମିଳିଯାଉଛି । ତେଣୁ ପ୍ରଶ୍ନ ହୁଏ ଶ୍ରେଣୀରେ ଟେପ୍ ରେକର୍ଡ଼ ବଜାଇ ଦେଲେ ଛାତ୍ରଛାତ୍ରୀ ମାନେ ଶୁଣନ୍ତେ ଏବଂ ନୋଟ୍ ଟିପି ନିଅନ୍ତେ । ସେଥିପାଇଁ ଉଚ୍ଚ ଦରମା ଦେଇ ଅଧ୍ୟାପକ ଅଧ୍ୟାପିକା ପୋଷିବାର କୌଣସି କାରଣ ନାହିଁ ।

କିନ୍ତୁ ମଣିଷ ସହିତ ମଣିଷର ସମ୍ପର୍କ ଏକ ସ୍ୱାଭାବିକ ପ୍ରବୃତ୍ତି । ଶିକ୍ଷକ ନ ଥିଲେ ଛାତ୍ର ଛାତ୍ରୀମାନଙ୍କର ଶିକ୍ଷାପ୍ରତି ମମତା ରହିବ ନାହିଁ । ଶିକ୍ଷକ ନିଜର ଆଚରଣ ଏବଂ ଜ୍ଞାନଦ୍ୱାରା ଛାତ୍ର ସମାଜର ଆଦରଣୀୟ ଏବଂ ଭକ୍ତିଭାଜନ ହୋଇ ପାରିଲେ ଛାତ୍ରମାନେ ଆକର୍ଷିତ ହେବେ ଏବଂ ଶିକ୍ଷା ଅର୍ଜନ କରିବେ । ଶିକ୍ଷା ପ୍ରତି ମମତା ସୃଷ୍ଟି ହିଁ ଶିକ୍ଷକର ସାଫଲ୍ୟର ମାନଦଣ୍ଡ, ଆରୁଣିଙ୍କର ଧୈର୍ଯ୍ୟ ସୃଷ୍ଟି ପାଇଁ ତାଙ୍କ ଶିକ୍ଷକଙ୍କର ଶିକ୍ଷା ପ୍ରଣାଳୀ ଆଦର୍ଶ ସ୍ଥାନୀୟ ।

ଅମଲାତନ୍ତ୍ର ସମସାମୟିକ ରାଷ୍ଟ୍ରୀୟ ବ୍ୟବସ୍ଥାର ଏକ ଅପରିହାର୍ଯ୍ୟ ଅଙ୍ଗ । ରାଷ୍ଟ୍ରର ଆୟତନ ବୃଦ୍ଧି ସଙ୍ଗେ ସଙ୍ଗେ ଅମଲାତନ୍ତ୍ରର ପରିସର ବୃଦ୍ଧି ପାଇଛି । ଅମଲାତନ୍ତ୍ର ବୈଷୟିକ ଶ୍ରେଣୀ ପରି ହୁକୁମ ପାଳନ କରିବାରେ ଅଭ୍ୟସ୍ତ ଏବଂ ମାସିକ ଆୟର ପ୍ରତିଶ୍ରୁତିରେ ସ୍ୱାଧୀନ ଚିନ୍ତାକୁ ବଳି ଦେବାପାଇଁ ଅଙ୍ଗୀକୃତ, ସାମାଜିକ ସମନ୍ୱୟ ପାଇଁ ଅମଲାତନ୍ତ୍ରର ଅବଦାନ ଠିକ୍ ବ୍ରାହ୍ମଣ୍ୟବାଦର ପଣ୍ଡା ପଡ଼ିଆରୀଙ୍କର କର୍ମକାଣ୍ଡ ସହିତ ସମାନ । ଏହି ଅମଲାତନ୍ତ୍ର ପାଇଁ ସୃଷ୍ଟି ଶକ୍ତିର ବିକାଶ ଅପରିହାର୍ଯ୍ୟ ହୋଇପାରେ । ରାଷ୍ଟ୍ରୀୟ ସ୍ୱାର୍ଥ ଦୃଷ୍ଟିରୁ ଅମଲାତନ୍ତ୍ର ପାଇଁ ଶିକ୍ଷା କେବଳ ଅତୀତର ଘଟଣାବଳୀର ମୁଖସ୍ଥରେ ସୀମାବଦ୍ଧ ହୋଇପାରେ ।

ରାଷ୍ଟ୍ର ରାଷ୍ଟ୍ରନାୟକଙ୍କର ଯଶ ଗାନ ପାଇଁ ଏବଂ ଶାସକ ଶ୍ରେଣୀ ପ୍ରତି ଜନସମୂହର ଅନୁରକ୍ତି ବୃଦ୍ଧି ପାଇଁ ଶିକ୍ଷାକୁ ନିୟନ୍ତ୍ରଣ କରି ଭବିଷ୍ୟତର ନାଗରିକ ମାନଙ୍କୁ ଆଜ୍ଞାଧୀନ ପ୍ରଜାରେ ପରିଣତ କରିପାରେ । କିନ୍ତୁ ଏହା ଶିକ୍ଷାର ସର୍ବୋଚ୍ଚ ଲକ୍ଷ୍ୟ ନୁହଁ ।

ଶିକ୍ଷାବିତ୍ ହେଉଛନ୍ତି ସାମାଜିକ ଯନ୍ତ୍ରୀ । ସେ ସମାଜ ଜୀବନର ସୁଷମ ବିକାଶ ପାଇଁ, ବ୍ୟକ୍ତି ସ୍ୱାର୍ଥର ସମଷ୍ଟି ସ୍ୱାର୍ଥ ସହିତ ସମନ୍ୱୟ ପାଇଁ ଏବଂ ସର୍ବୋପରି ସାଧାରଣ ମଣିଷର କର୍ତ୍ତବ୍ୟ ଓ ଅଧିକାର ସମନ୍ୱୟରେ ସୁଖୀ ଜନମଙ୍ଗଳ ସମାଜ ଗଠନ ପାଇଁ ଚିନ୍ତା କରିବେ । ପୃଷ୍ଠଭୂମିରେ ସଚେତନ ଥାଇ ତାଙ୍କ ଚିନ୍ତା ସମାଜ ମଙ୍ଗଳ ପାଇଁ ବହୁଜନହିତାୟକୁ ସ୍ୱାଗତ କରିବ । ଶିକ୍ଷାବିତ୍ଙ୍କର ଏହି ନିର୍ଲିପ୍ତ ଚିନ୍ତାକୁ କାର୍ଯ୍ୟକାରୀ କରିବେ ଦେଶର ଅଗଣିତ ଶିକ୍ଷକବାହିନୀ ।

ଶିକ୍ଷକ ବିଭିନ୍ନ ଶ୍ରେଣୀରୁ ଆସିଥିବା ଛାତ୍ରଛାତ୍ରୀ ମାନଙ୍କୁ ଶ୍ରେଣୀ କକ୍ଷରେ ଶିକ୍ଷା ଦେଇ ସମବେତ ଜୀବନ, ପାରସ୍ପରିକ ବୁଝାମଣା ଏବଂ ଉଦ୍ବୋଧିତ ସମ୍ପର୍କ ରକ୍ଷା ପାଇଁ ଉଦ୍ୟମ କରିବେ । ପୁସ୍ତକଗତ ଜ୍ଞାନ ଅପେକ୍ଷା ଆଚରଣ ଗତ ଜ୍ଞାନ ହିଁ ଶିକ୍ଷାର ଅନ୍ତିମ ଆଦର୍ଶ । ମଣିଷର ଆଚରଣକୁ ଆଧ୍ୟାତ୍ମିକ ଚେତନା ଏବଂ ପୁରାତନ ଭଗବାନ ନିୟନ୍ତ୍ରଣ କରୁଥିଲେ । ଏବେ ଭଗବାନଙ୍କର ବିଦାୟ ପରେ ମଣିଷ ମଣିଷକୁ ସର୍ବ-ସାଧାରଣଙ୍କ ହିତରେ ଲଗାଇବାର ବିକଳ୍ପ ପନ୍ଥା ବାହାର ନାହିଁ । ଜମି, ଶ୍ରମ ଏବଂ ପୁଞ୍ଜିର ଜାତୀୟକରଣ

କରି ସମାଜରେ ସମତା ରକ୍ଷା ପାଇଁ ସମାଜବାଦ ଉଦ୍ୟମ କରିଆସିଛି । କିନ୍ତୁ ମଣିଷର ବୁଦ୍ଧିକୁ ଜାଗ୍ରତ୍କରଣ କରିବା ପାଇଁ ଆଧ୍ୟାତ୍ମିକତା ଛଡ଼ା ଅନ୍ୟ ପନ୍ଥା ନାହିଁ ।

ତେଣୁ ଶିକ୍ଷକର ସାମାଜିକ ଉପଯୋଗିତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷକ ଶିକ୍ଷାବିତ୍‌ଙ୍କର ଚିନ୍ତାକୁ କାର୍ଯ୍ୟକାରୀ କରିବେ । ସେଥିପାଇଁ ରାଷ୍ଟ୍ର କ୍ଷମତା ବାହାରେ ଯଦି ଶିକ୍ଷକ ନିଜର ବୃତ୍ତି ପାଇଁ ସମାଜ ଉପରେ ନିର୍ଭର କରନ୍ତି ଏବଂ ମୁଖସ୍ଥ ପାଠ ଅପେକ୍ଷା ସ୍ୱାଧୀନ ଚିନ୍ତା ଜାଗ୍ରତ ପାଇଁ ଉଦ୍ୟମ କରନ୍ତି, ତେବେ ଶିକ୍ଷକ ସମାଜର ସମ୍ମାନ ବୃଦ୍ଧି ପାଇବେ । ଶିକ୍ଷକ ସମାଜର ସମ୍ମାନକୁ ରାଷ୍ଟ୍ର ମଥାନତ କରି ନେବ ।

ଶିକ୍ଷକ ସମାଜ ନିଜକୁ ଅମଲାତନ୍ତ୍ରର ଏକ ଅଂଶ ବୋଲି ବିଚାରି ଏବଂ ଶିକ୍ଷାକୁ ଏକ ପଣ୍ୟ ସାମଗ୍ରୀରେ ପରିଣତ କରିଦେଇ ସାମାଜିକ ସମ୍ମାନ ଖୋଜିବା ଏକ ପ୍ରବଞ୍ଚନା ମାତ୍ର । ସେହି ଦୃଷ୍ଟିରୁ ଶିକ୍ଷକ ସମାଜ ନିଜର ସାମାଜିକ ଗୁରୁତ୍ୱ ଉପଲବ୍ଧି କରି ସଙ୍ଗଠିତ ତଥା ସଂଶୋଧିତ ହୋଇଗଲେ, ସମାଜର ଉନ୍ନତି ହେବ, ବୁଦ୍ଧିବାଦୀ, ସ୍ୱାଧୀନ ଚିନ୍ତକ ଗୁରୁ ଗୁରୁଣୀ ତିଆରି ହୋଇ ପାରିବେ । ଶିକ୍ଷକ ସମାଜ ଆଉ ବୃତ୍ତି ପାଇଁ ରାଷ୍ଟ୍ର ଉପରେ ନିର୍ଭର କରିବ ନାହିଁ । ଶିକ୍ଷକଙ୍କୁ ସାକ୍ଷାତ ପରମବ୍ରହ୍ମ ବୋଲି ମାନି ଗୁରୁଗୁରୁଣୀମାନେ ଜ୍ଞାନ-ଯଜ୍ଞରେ ପ୍ରସ୍ତୁତ ହୋଇ କର୍ମ ଯଜ୍ଞରେ ଜୀବନ ଦାନ କରିବେ ।

ଏହାହିଁ ଆଧୁନିକ ଶିକ୍ଷକର ସମସ୍ୟା । ଶିକ୍ଷାର ଯେଉଁପରି ବଦଳ କରାଯାଇଛି ଏବଂ ଅସତ୍ ବ୍ୟବହାର କରାଯାଇଛି, ତାର ନିରାକରଣ ପାଇଁ ଆଧୁନିକ ଶିକ୍ଷକଙ୍କୁ ଜୀବନଦାୟୀ ସାଧନା କରିବାକୁ ପଡ଼ିବ । ଜ୍ଞାନାର୍ଜନ ନିଯୁକ୍ତିର ଏକ ପ୍ରତିଶ୍ରୁତି ନୁହେଁ । ଏହା ଏକ ମାନବିକ ମୂଲ୍ୟବୋଧ । ସେହି ଲକ୍ଷ୍ୟରେ ଆଧୁନିକ ଓଡ଼ିଶାରେ ଶ୍ରୀ ବନମାଳୀ ବ୍ରହ୍ମଚାରୀ ସାଧନାର ଅଗ୍ନିମାରମ୍ଭ କରିଛନ୍ତି । ଶିକ୍ଷକ ସମାଜର ସାର୍ବଜନୀନ ମଙ୍ଗଳ ଦୃଷ୍ଟିରୁ ବ୍ରହ୍ମଚାରୀ ମହାଶୟଙ୍କ ସାଧନା ଋଦ୍ଧିମନ୍ତ ହେଉ । ସେ ଦଧୀଚି ହୁଅନ୍ତୁ ।

● ଓ୍ୱାର୍ଡ଼ କାଉନସିଲର
ମୁଣ୍ଡାହାଟ, କଟକ



# ବନମାଳୀ ବାବୁ ଜଣେ ପ୍ରକୃତ ଶିକ୍ଷକ

ଶ୍ରୀ ପ୍ରଭାସ ଚନ୍ଦ୍ର ପତ୍ର

ଇଂରାଜୀରେ କଥାଟିଏ ଅଛି—"God could not be everywhere, therefore he made mothers" ସଦାଶୟ, ମହତ୍ ଓ ଚରିତ୍ରବନ୍ତ ଶିକ୍ଷକମାନଙ୍କ ବିଷୟ ବର୍ଣ୍ଣନା କରିବାକୁ ଗଲାବେଳେ ଉପକ୍ରମଣିକାରେ "mothers" ସ୍ଥଳରେ "teachers" ଲେଖି ଯଦି ଉକ୍ତ ପ୍ରବଚନଟିକୁ ଉଦ୍ଧାର କରାଯାଏ, ମୋ ମତରେ ଏହା ଅସମୀଚୀନ ହେବ ନାହିଁ। ସେତେବେଳେ ଉକ୍ତ ପ୍ରବଚନଟିର ରୂପ ଏହିପରି ହେବ—God could not be everywhere to teach all, therfore he made teachers

ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗୃହୀ ଜଣେ ସଦାଶୟ, ମହତ୍ ଓ ଚରିତ୍ରବନ୍ତ ଶିକ୍ଷକ। କେବଳ ସେତିକି ନୁହେଁ, ସମାଜରେ ଶିକ୍ଷକମାନଙ୍କ ଦାୟିତ୍ୱ ସମ୍ବନ୍ଧରେ ସେ ସମ୍ୟକ୍ ସଚେତନ। ଆମରି ଏହି ଦେଶରେ ଗୁରୁଙ୍କର ଆସନ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଆଦି ଦେବମାନଙ୍କ ଆସନ ପାଖରେ ନିର୍ଦ୍ଦିଷ୍ଟ ହୁଏ । ଏହି କଥା ସେ ମନେ ରଖିଛନ୍ତି । ଏଣୁ ଶିକ୍ଷକମାନଙ୍କୁ ସେହି କଥା ଚେତେଇ ଦେବାପାଇଁ ଓ ସେମାନଙ୍କ ଉପରେ ନ୍ୟସ୍ତ ଦାୟିତ୍ୱର ମହତ୍ତ୍ୱ ଉପଲବ୍ଧ କରି ତଦନୁଯାୟୀ କାର୍ଯ୍ୟ କରିବା ପାଇଁ ସେ 'ବେସରକାରୀ ଶିକ୍ଷକ ସଂସଦ'ଟିଏ ଗଢ଼ି ତାକୁ ସମସ୍ତ ଶକ୍ତି ଦେଇ ପରିଚାଳନା କରୁଅଛନ୍ତି ।

ଛାତ୍ରଛାତ୍ରୀଙ୍କ ପ୍ରତି ଶିକ୍ଷକମାନଙ୍କ ଦାୟିତ୍ୱ ସମ୍ବନ୍ଧରେ ସେ ମଧ୍ୟ ସଚେତନ। ସେମାନଙ୍କୁ ଚରିତ୍ରବାନ୍ ଓ ସୁନାଗରିକ ରୂପରେ ଗଢ଼ିବା ପାଇଁ ସେ ସର୍ବଦା ତତ୍ପର। ଆମ ଦେଶର ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନ, ଫକୀରମୋହନ, ପଠାଣି ସାମନ୍ତ, ରାଧାନାଥ, ଅହଲ୍ୟାବାଈ, ଦୁର୍ଗାବତୀ, ସୀତା, ସାବିତ୍ରୀ ପ୍ରଭୃତିଙ୍କର ଜୀବନ ଚରିତ ଗୋଟିଏ ଗୋଟିଏ ଅମୂଲ୍ୟ ଗ୍ରନ୍ଥ ଓ ଅତ୍ୟନ୍ତ ଉପଦେଶାତ୍ମକ। ସେହି ଯୋଗ୍ୟ ସନ୍ତାନମାନଙ୍କ ମଧ୍ୟରୁ ଜଣକୁ ଆଦର୍ଶକରି ନିଜର ଜୀବନକୁ ଗଢ଼ିବାପାଇଁ ସେ ଛାତ୍ରଛାତ୍ରୀମାନଙ୍କୁ ଉପଦେଶ ଦେଇ ଆସୁଅଛନ୍ତି। ସେମାନଙ୍କ ମଧ୍ୟରେ କେତେକଙ୍କ ଜୀବନ ଚରିତ ତରୁଣ ଛାତ୍ରଛାତ୍ରୀମାନଙ୍କ ବୋଧଗମ୍ୟ ହେବା ଭଳି ସରଳ ଭାଷାରେ ଲେଖି "ଚରିତ ଓ ଚରିତ୍ର" ନାମକ ପୁସ୍ତକରେ ପ୍ରକାଶ କରି ଅଛନ୍ତି । ଉକ୍ତ ପୁସ୍ତକ ପଢ଼ି ଆଦର୍ଶ ନିରୂପଣ କରି ତଦନୁଯାୟୀ ନିଜକୁ ଗଢ଼ିବାକୁ ସେ ସେମାନଙ୍କୁ ସାମୟିକ ଉଦ୍‌ବୋଧନ ଦେଉଅଛନ୍ତି ।

ଏହାନ୍ତଦ୍ଭା ତାଙ୍କର ଆଉ ଗୋଟିଏ ବିଶେଷ ଗୁଣ ଅଛି, ଯାହି କେବଳ କେତେକ ଉଚ୍ଚକୋଟୀର ଶିକ୍ଷକମାନଙ୍କଠାରେ ଦେଖାଯାଏ । ସେ ଛାତ୍ରଛାତ୍ରୀମାନଙ୍କୁ କହନ୍ତି—ଜ୍ଞାନ ଅର୍ଜ୍ଜନ କରିବା ପାଇଁ ପାଠ ପଢ଼, ନମ୍ବର ପାଇଁ ନୁହେଁ । ଯେଉଁ ଛାତ୍ରଛାତ୍ରୀ ପରୀକ୍ଷାରେ ବେଶୀ ନମ୍ବର ରଖିଛି, ସେ ସେ ଭଲ ପାଠ ପଢ଼ିଛି କିମ୍ବା ଭଲ ଜ୍ଞାନ ଅର୍ଜ୍ଜନ କରିଛି, ଏପରି ଭାବ ନାହିଁ । ପାଠ ପଢ଼ିବା ଓ ଲେଖିବା ଛାତ୍ରର କର୍ତ୍ତୃତ୍ୱାଧୀନ । ନମ୍ବର ଦେବା ପରୀକ୍ଷକଙ୍କ କର୍ତ୍ତୃତ୍ୱାଧୀନ। ପରୀକ୍ଷକ ଛାତ୍ରର ଜ୍ଞାନକୁ କଳ ନମ୍ବର ଦିଏ ନାହିଁ। ସେ ଛାତ୍ରର ଜ୍ଞାନକୁ ନିଜର ସଞ୍ଚିତ

ଓ ପୋଷିତ ଜ୍ଞାନର ତୁଳନାଦଣ୍ଡରେ ତଉଲେ ଓ ସେହି ଅନୁସାରେ ଛାତ୍ରର ଉତ୍ତରର ମୂଲ୍ୟାଙ୍କନ କରେ ।

ଆମ ଦେଶର ପଠାଣି ସାମନ୍ତଙ୍କ ଜ୍ଞାନର ତୁଳନା ନାହିଁ । ତାଙ୍କ ଜ୍ଞାନକୁ କଳି ନ ପାରି କବିବର ରାଧାନାଥ ତାଙ୍କୁ "ଦ୍ୱିତୀୟ ଭାସ୍କର" ବୋଲି କହିଗଲେ । ଆମର ଘରେ ଘରେ ଯେଉଁ ପାଞ୍ଜି ଚଳୁଛି ତାହାର ଗଣକ ହେଉଛନ୍ତି ସେହି ଅମର ଓଡ଼ିଆ ପୁଅ ପଠାଣି ସାମନ୍ତ । ତାଙ୍କର ଗଣନା ପ୍ରମାଦପୂର୍ଣ୍ଣ ଥିବା ଏ ପର୍ଯ୍ୟନ୍ତ କେହି ଦର୍ଶାଇ ପାରିନାହାନ୍ତି । କିନ୍ତୁ ସେ କହୁଛନ୍ତି, "ପୃଥିବୀ ସ୍ଥିର ଅଛି । ସୂର୍ଯ୍ୟ ତାର ଚାରିପଟେ ଘୂରୁଛି ।" ଯେଉଁ ପରୀକ୍ଷକ ପଠାଣିସାମନ୍ତ-ପନ୍ଥୀ, ସେ ସେହି ଛାତ୍ରକୁ ସର୍ବୋଚ୍ଚ ନମ୍ବର ଦେବ, ଯେଉଁ ଛାତ୍ର ବିଜ୍ଞାନ ପ୍ରଶ୍ନର ଉତ୍ତରରେ ତାର ପରୀକ୍ଷା ଖାତାରେ ସେହିଭଳି ଉତ୍ତର ଦେଇଥିବ । ଯେଉଁ ଛାତ୍ରମାନେ ଲେଖିଥିବେ—'ସୂର୍ଯ୍ୟ ସ୍ଥିର ଅଛି ଓ ପୃଥିବୀ ତାର ଚାରିକଡ଼େ ଘୂରୁଛି' ସେହି ଛାତ୍ରମାନେ ପାଇବେ ଶୂନ୍ୟ । ଯେଉଁ ଛାତ୍ରମାନେ ଶୂନ୍ୟ ନମ୍ବର ପାଇଲେ ଏଥିପାଇଁ କଣ ବୁଝାଯିବ ଯେ ସେମାନଙ୍କର ଜ୍ଞାନ ନାହିଁ ? ଏଣୁ ସବୁ କ୍ଷେତ୍ରରେ ନମ୍ବରକୁ ମୂଳକରି ପରୀକ୍ଷାର୍ଥୀମାନଙ୍କୁ ଜ୍ଞାନୀ ଓ ଅଜ୍ଞାନୀ ଶ୍ରେଣୀରେ ବିଭକ୍ତ କରି ଉତ୍ସାହିତ ଓ ନିରୁତ୍ସାହିତ କରିବା ଅତୀବ ପ୍ରମାଦ-ପୂର୍ଣ୍ଣ, କାରଣ ପରୀକ୍ଷା ଖାତାରେ ଯେଉଁ ନମ୍ବର ଦିଆ ହୋଇଥାଏ ତାହା ବହୁ କ୍ଷେତ୍ରରେ ପରୀକ୍ଷକର ବ୍ୟକ୍ତି-ଗତ ଜ୍ଞାନ, ଦ୍ୱେଷ, ଦୋଷ, ଦ୍ୱେଷ ଓ ଅନ୍ଧବିଶ୍ୱାସର ଏକ ଏକ ପ୍ରତିଫଳନ ମାତ୍ର ।

ଏହି ଦୃଷ୍ଟିରୁ ବିଚାର କଲେ ବନମାଳୀ ବାବୁ ଯେ ଜଣେ ଉଚ୍ଚ-କୋଟୀର ଶିକ୍ଷକ, ଏଥିରେ ସନ୍ଦେହ ନାହିଁ ।

ଶିକ୍ଷା ସମ୍ବନ୍ଧରେ ଚିନ୍ତା କଲେ ବହୁତ କଥା ମନେପଡ଼େ । କିନ୍ତୁ ଏହି ସ୍ଥଳରେ ସେସବୁ ବିଷୟ ଲେଖିବା ଅସମୀଚୀନ ମନେକରି ସେଥିରୁ କ୍ଷାନ୍ତ ରହିଲି ।

ବନମାଳୀ ବାବୁଙ୍କ ଶୁଭ ଜୟନ୍ତୀରେ ମୋର ଏତିକି ମାତ୍ର ପ୍ରାର୍ଥନା ଯେ ବନମାଳୀ ବାବୁ ଦୀର୍ଘଜୀବୀ ହୁଅନ୍ତୁ । ଛାତ୍ରଛାତ୍ରୀ ତଥା ଶିକ୍ଷକ ଭାଇମାନଙ୍କୁ ପ୍ରକୃତ ଜ୍ଞାନ ଅର୍ଜନ କରିବା ପାଇଁ କହି ସେମାନଙ୍କର ହୃଦୟପୃଷ୍ଠରେ ସେହି କଥା ଅମର ଅକ୍ଷରରେ ଅଙ୍କିତ କରେଇବା ପାଇଁ ତାଙ୍କୁ ଈଶ୍ୱର ଆମ୍ଭମାନଙ୍କ ଭିତରେ ବହୁଦିନ ବଞ୍ଚେଇ ରଖନ୍ତୁ ।

● ଝାଉଁହାଟ, କଟକ



# ସ୍ମୃତି ଶଙ୍ଖାଳୀ ଶ୍ରୀ ବ୍ରହ୍ମଚାରୀ

ଶ୍ରୀ ପରମାନନ୍ଦ ଅଧିକାରୀ

ସାଲଟା ଠିକ୍ ମୋର ମନେ ନାହିଁ । ଆମେ ସବୁ ସେତେବେଳେ ରେଭେନ୍ସା କଲେଜରେ ପଢୁଥାଉ । ରେଭେନ୍ସା କଲେଜ ମିସନ ସ୍କୁଲରେ ହେଉଥାଏ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ଡକ୍ଟର ନବୀନ କୁମାର ସାହୁ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଅଧ୍ୟାପକ ଶ୍ରୀଧର ଦାସ, ଅଧ୍ୟାପକ କୃଷ୍ଣ ପଟ୍ଟନାୟକ ପ୍ରଭୃତି ଉତ୍କଳ ମାତାର ବରପୁତ୍ରମାନେ ଆମର ଶିକ୍ଷକ ଥାନ୍ତି । ଆମର ହିଷ୍ଟ୍ରି ଟ୍ୟୁଟରିଆଲ ଥାଏ । ନବୀନ ବାବୁ କହିଲେ, "ଆସନ୍ତା କାଲି ଠାରୁ ତୁମକୁ ଆଉ ଜଣେ ନୂଆ ଅଧ୍ୟାପକ ଇତିହାସ ପଢ଼ାଇବେ ।"

ଆମେ ପିଲାସବୁ ଉଦ୍‌ଗ୍ରୀବ ହୋଇ ରହିଁଥାଉ । ସତକୁ ସତ ତହିଁ ଆରଦିନ ଜଣେ ସୁଦର୍ଶନ ଯୁବକ କ୍ଲାସ ଭିତରକୁ ପଶି ଆସିଲେ । ପାଦ ଯୋଡ଼ିକ ଚଳ ଚଞ୍ଚଳ । ଦେହରେ ମାଛିଟି ବି ବସାଇ ଦେଉ ନଥାନ୍ତି । ଆଖିରେ ରୋଲଡ଼ଗୋଲ୍ଡ ଫ୍ରେମର ଚଷମାଟି ପିନ୍ଧିଥାନ୍ତି । ଚଷମାଟି ଟେକି ମୋତେ ପଚାରିଲେ—"What is the significance of 1803 in Indian Hi tory ?" ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି—"ଇଂରେଜ ମାନଙ୍କ ଓଡ଼ିଶା ଅଧିକାର ପାଇଁ ଏହି ସନଟି ପ୍ରସିଦ୍ଧ ।" ସେ ସାବାସ ବୋଲି କହି ହସି ଦେଲେ ଠୋ' ଠୋ' କରି । ଆମେ ସବୁ ପିଲାମାନେ ବି ହସିଲୁ । ସେହି ଭଦ୍ରଲୋକ ହେଉଛନ୍ତି ଶ୍ରୀ ଗୌରହରି ସାମନ୍ତରାୟ, ଆଜିର ଜିଲ୍ଲା ପଞ୍ଚାୟତ ଅଫିସର । ସେ ଅଳ୍ପଦିନ ଆମକୁ ପଢ଼ାଇଲା ପରେ ତାଙ୍କର ବଦଳିର ହେଲା ଦୋହଲୀ ମାଇନର ସ୍କୁଲର ଶିକ୍ଷକଙ୍କ ଝିଅ ସହିତ । ଆମ ସାରଙ୍କ ବାହାଘରକୁ ଆମେ ସବୁ କେଇଜଣ ପିଲା ନିମନ୍ତ୍ରଣ ପାଇ ଯାଇଥିଲୁ । ମୋର ଠିକ୍ ମନେଅଛି, ଖାଇବା ଡେରି ହୋଇଯିବା ହେତୁ ଜଣେ ପିଲା ଖୁବ୍ ପାଟି କଲା । ଖାଇଲା ବେଳେ ଏକା ଦି'ଗଣ୍ଡା ମିଠା ଖାଇଲା ସେ । ସେ ମିଠା ଦେଲାବେଳେ ଜଣେ ମଧ୍ୟବୟସ୍କ ବ୍ୟକ୍ତି କଅଁଳେଇ କହିଲେ—"ତୁମେ ସବୁ ମୋ' ଜୋଇଁ ପାଖରେ କଲେଜରେ ପାଠ ପଢୁଛ ପରା ! ତୁମେ ସବୁ ହେବ ହିସାବରେ ମୋର ନାତି ।" ଆମେ ତତ୍‌କ୍ଷଣାତ୍ ତାଙ୍କୁ ଡାକିଲୁ ଅଜା ! ସେ ହସି ହସି ଚାଲିଗଲେ । ସେହି ଅଜା ହେଉଛନ୍ତି ପ୍ରବୀଣ ଶିକ୍ଷାବିତ୍ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଚାରୀ ।

ଅଜାଙ୍କର କଥାଗୁଡ଼ାକ ଖଜା ଭଳି ଖାର ମିଠା, ଚହଟରସିଆ । ତାଙ୍କର ମଧୁର ବ୍ୟବହାର କ୍ଷଣକରେ ଶତ୍ରୁକୁ ବି ମିତ୍ର କରାଏ । ତାଙ୍କର ସୌଜନ୍ୟ ସ୍ନିଗ୍ଧ ଆଦବ କାଇଦା ସ୍ୱତନ୍ତ୍ର ଧରଣର । ମଣିଷ ଭଳି ମଣିଷଟିଏ ଏକା ଆମ ଅଜା । ତାଙ୍କ ସାନ୍ନିଧ୍ୟ ଥରେ ଯିଏ ଜୀବନରେ ଲାଭ କରିଥିବ, ସେ କେବେ ତାଙ୍କୁ ଭୁଲି ପାରିବ ନାହିଁ । ଓଡ଼ିଆ ସାହିତ୍ୟ ବିଷୟରେ ତାଙ୍କର ଅଗାଧ ଜ୍ଞାନ ଦେଖିଲେ ମନରେ ଯୁଗପତ୍ ଆନନ୍ଦ ଓ ବିସ୍ମୟ ଜାତ ହୁଏ ।

ମୋର ଠିକ୍ ମନେ ଅଛି । ମାଇନର ସ୍କୁଲରେ ପଢ଼ିଲାବେଳେ, ଆମ୍ଭେମାନେ କବିବର ରାଧାନାଥ ରାୟଙ୍କ ପୁତ୍ର ସାହିତ୍ୟ ଭୂଷଣ ଶଶିଭୂଷଣ ରାୟଙ୍କ ଲିଖିତ ପ୍ରବନ୍ଧ-ପ୍ରସୂନ ପୁସ୍ତକ ପଢୁଥିଲୁ । ତାର ଗୋଟିଏ ମାନେ ବହି ଅତି ସୁନ୍ଦର ଭାବରେ କରିଥାନ୍ତି ଜଣେ ପଣ୍ଡିତ । ସେ ବହିରେ ଦିଆ ହୋଇଥିବା ସରଳାର୍ଥ, ଅନ୍ୱୟ, ଟୀକା, ସାରାଂଶ ଥରେ ପଢ଼ିଦେଲେ ବେଶ୍ ବୁଝିହୁଏ ପଣ୍ଡିତ

ମହାଶୟଙ୍କର ପାଣ୍ଡିତ୍ୟ, ବଦଗ୍‌ଧତା । ମୋତେ କ୍ଲାସରେ ସାର୍ ଯାହା ପଗ୍ଚରନ୍ତ ସାହିତ୍ୟ, ମୁଁ ସବୁ କହିଦଏ । ଦନେ ସାର୍ ପଗ୍ଚରଲେ—"ତୁମେ କ ବହି ପଢ଼ ଯେ ଏତେ ଅନର୍ଗଳ ଭାବରେ ସବୁକଥା କହି ପାରୁଛ ?" ମୁଁ ମାନେ ବହି ଖଣ୍ଡିକ ଦେଖାଇଲି । ସାର୍‌ଙ୍କ ଆଦେଶରେ ସବୁ ପିଲି ସେ ବହି କଣିଲେ । ସେ ବହିର ଲେଖକ ହେଉଛନ୍ତ ଏଇ ପଣ୍ଡିତ ବନମାଳୀ ବ୍ରହ୍ମଗ୍ଚୌଦ୍ଧ ମହାଶୟ ।

ଆଉ ଥରକର କଥ । ମୁଁ ହଳଦିଆ ହାଇ-ସ୍କୁଲରେ ଶିକ୍ଷକତା କରୁଥାଏ । ମୋର ପ୍ରିୟ ସ୍ଥବ ଲେଖକ ଶ୍ରୀମାନ୍ ନରହର ସ୍ୱାଇଁ, (ଯେକ ବର୍ତ୍ତମାନ ଭୂଦାନର ସେକ୍ରେଟାରୀ ଅଛନ୍ତ) ଶ୍ରୀ ଶରତ ସାମଲ ଓ କବ ଶ୍ରୀ ଅନ୍ତର୍ଯ୍ୟାମୀ ସାହୁ ମୋ' ସାଙ୍ଗରେ ଲଗାଇଲେ ଖଣ୍ଡିଏ ପତ୍ରିକା ବାହାର କରିବାକୁ । ମୁଁ ଜାଣେ ସାହିତ୍ୟ ପତ୍ରିକା ପ୍ରକାଶ କରିବା କେତେ କଷ୍ଟସାଧ । ତଥାପି ସେ ଦଗରେ ପଦକ୍ଷେପ ନଆଗଲି । ମୁଁ ଅନେକଙ୍କୁ ଲେଖା ମାଗି ଚିଠି ଲେଖିଲି । ପାଞ୍ଚଜଣ ମୋତେ ଲେଖା ପଠାଇ ଉତ୍ତର ଦେଇଥିଲେ । ଜଣେ ହେଉଛନ୍ତ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ସାହୁ । ଦ୍ୱିତୀୟ ଜଣକ ହେଉଛନ୍ତ ପଦ୍ମଭୂଷଣ କାଳନ୍ଦୀ ଚରଣ ପାଣିଗ୍ରାହୀ । ତୃତୀୟ ବ୍ୟକ୍ତ ହେଉଛନ୍ତ ଡକ୍ଟର କୁଞ୍ଜବିହାରୀ ଦାଶ, ଚତୁର୍ଥ ଜଣକ ହେଉଛନ୍ତ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ । ପଞ୍ଚମ ଜଣକ ହେଉଛନ୍ତ ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗ୍ଚୌଦ୍ଧ । ସେ ଲେଖିଥିଲେ, "ପତ୍ରିକାଟିର ନାମ ରଖ "ଦର୍ପଣ"। ସମସ୍ତଙ୍କର ବୋଧଗମ୍ୟ ହେଲାଭଳି ଲେଖା ସେଥିରେ ପ୍ରକାଶ କର ।"

ଆଉ ଗୋଟିଏ ଅମଳିନ ସ୍ମୃତ ଏବେ ବ ମୋ' ମାନସ ପଟରେ ଉଙ୍କି ମାରୁଛି । ପଞ୍ଚାମୁଣ୍ଡାଇର ପ୍ରବୀଣ ଶିକ୍ଷକ ଶ୍ରୀ ପରମାନନ୍ଦ ଖଣ୍ଡାଇ ପାଠ୍ୟ ପୁସ୍ତକ ଲେଖୁଥାନ୍ତ । ଅନେକ ଲୋକଙ୍କଠାରୁ ଲେଖା ମାଗି ନେଇ ପାଠ୍ୟ ପୁସ୍ତକରେ ପ୍ରକାଶ କରନ୍ତ ମାତ୍ର କାହାର ନାମ ପ୍ରକାଶ କରନ୍ତ ନାହିଁ । ମୁଁ ଏବଂ ମୋର ଭଉଣୀ, ଓଡ଼ିଶାର ଅନ୍ୟତମା ସ୍ୱନାମଧନ୍ୟା ନାରୀ କବ ଶ୍ରୀମତୀ ତୁଳସୀ ଦାସ ତାଙ୍କ ବହିରେ ଗଦ୍ୟ ପଦ୍ୟ ଲେଖୁଥାଉଁ । ସେ କିଛି କିଛି ପଇସା ଦଅନ୍ତ କନ୍ତୁ ଆମ ନାମ ସେଥିରେ ଦଅନ୍ତ ନାହିଁ । ଥରେ କଟକରେ ଶ୍ରୀଯୁକ୍ତ ବ୍ରହ୍ମଗ୍ଚୌଦ୍ଧଙ୍କ ସାଙ୍ଗରେ ମୋର ସାକ୍ଷାତ ହେଲି । ସାଙ୍ଗରେ ଥାନ୍ତ ଶିଳ୍ପୀବନ୍ଧୁ ବଂଶୀଧର ପଢ଼ିହାରୀ । ପଣ୍ଡିତ ମହାଶୟ ସବୁ ଶୁଣି କହିଲେ—

"ତୁମେ କ'ଣ ବୋକା ନା କ'ଣ ? ପଇସାକୁ ପଇସା ନଅ । ତୁମର ନାମ ଯେପରି ଲେଖା ଉପରେ ପ୍ରକାଶ ପାଏ ସେଥିପ୍ରତ ଧ୍ୟାନ ଦଅ ।"

ପଣ୍ଡିତ ବ୍ରହ୍ମଗ୍ଚୌଦ୍ଧ ମହାଶୟ ପ୍ରକୃତରେ ଜଣେ ମାନବବାଦୀ ମଣିଷ । ସେ ସମ୍ପଦରେ ଗର୍ବ କରନ୍ତ ନାହିଁ କ ବପଦରେ ଅଧୀର ହୁଅନ୍ତ ନାହିଁ । ସରଳତା ଓ ନିରହଙ୍କାର ତାଙ୍କ ଚରିତ୍ରର ଦୁଇଟି ବଶେଷତ୍ୱ । ଭଗବାନ ତାଙ୍କୁ ଦୀର୍ଘଜୀବୀ କରନ୍ତୁ ।

● କଳାଶ୍ରୀ କୁଟୀର
ଯୋବ୍ରା, କଟକ



# ବ୍ରହ୍ମଚାରୀଙ୍କୁ ମୋର ଅଭିନନ୍ଦନ

**ଶ୍ରୀମତୀ ସରଳା ଦେବୀ**

ଏକାଳରେ ଏ ଯୁଗରେ ଉତ୍କଳ ଦେଶରେ ବ୍ରହ୍ମଚାରୀଙ୍କ ଜୀବନ ଏକ ବିସ୍ମୟ । ସତ୍ ସାହସ, ନିର୍ଭୀକତା ସତ୍ୟ ନିଷ୍ଠା, କର୍ତ୍ତବ୍ୟ ନିଷ୍ଠା, ତାଙ୍କର ପ୍ରେରଣାର ଉତ୍ସ । ବ୍ରହ୍ମଚାରୀ ମହାଶୟଙ୍କ ସହିତ ମୋର ବହୁକାଳର ପରିଚୟ । ଜୀବନର ପ୍ରତି ମୁହୂର୍ତ୍ତ ପରସେବା, ପର-ଉପକାର ପାଇଁ ସେ ଉତ୍ସର୍ଗ କରି ଆସିଛନ୍ତି । ଶିକ୍ଷକ-କୁଳର ଅକୁହା କୋହକୁ ଲିଭାଇ ସେମାନଙ୍କୁ ମାନବିକ ଅଧିକାରର ପ୍ରେରଣା ଦେଇ ସେ ସଂଗ୍ରାମୀ କରି ପାରିଛନ୍ତି । ଏ ଯୁଗରେ ଏଇ କାଳରେ ସେ ବଞ୍ଚିଛନ୍ତି ଓ ଶିକ୍ଷକମାନଙ୍କର ଜୀବିକା ଓ ଜୀବନକୁ ଋଦ୍ଧିମନ୍ତ କରିବା ପାଇଁ ସଂଗ୍ରାମୀ କୌଣସି ରାଜନୀତିର ଧାର ଧାରନ୍ତି ନାହିଁ ଏବଂ ରାଜନୀତି ଭିତରକୁ ପଶି ନ ଥିବାରୁ ସେ ନିଜକୁ ଶୁଦ୍ଧ ପୂତ ଦେଶସେବକ ରୂପେ ବଞ୍ଚାଇ ଆଣି ପାରିଛନ୍ତି । ତାଙ୍କର ସମଗ୍ର ଜୀବନର କର୍ମ ସାଧନାର ଫଳ ସ୍ୱରୂପ ଛିଡ଼ା ହୋଇଛି ଶିକ୍ଷକ ବର୍ଗଙ୍କ ସେବା ପାଇଁ ଉଦ୍ଦିଷ୍ଟ ହୋଇ ରହିଥିବା ଝାଞ୍ଜିରିମଙ୍ଗଳାର ପ୍ରକାଣ୍ଡ ଦ୍ୱିତଳ ପ୍ରାସାଦ । ସେହି କାର୍ଯ୍ୟ ଓଡ଼ିଶାର ଶିକ୍ଷକ ଓ ଛାତ୍ର ପାଇଁ ସେ କରିଛନ୍ତି, ଏକା ଉତ୍କଳମଣି ଗୋପବନ୍ଧୁଙ୍କ କର୍ମ ପଦ୍ଧତି ସହିତ ତାର ତୁଳନା ହୁଏ ! ଏ ଯୁଗରେ ଏପରି ପରାର୍ଥପର ସର୍ବସ୍ୱ ତ୍ୟାଗୀ ଶିକ୍ଷକ ବନମାଳୀ ବ୍ରହ୍ମଚାରୀ ସୁଦୁର୍ଲଭ । ତାଙ୍କର ସୁଦୀର୍ଘ ଜୀବନ କଥା ସେ ନିଜେ ଲେଖିଛନ୍ତି । ଏପରି ଗୋଟିଏ ଶିକ୍ଷକ ଓଡ଼ିଶାରେ ଆଦର୍ଶ ସ୍ଥାନୀୟ । ତାଙ୍କର ଛାତ୍ରଙ୍କ ପାଇଁ ଉତ୍ସର୍ଗୀକୃତ ଜୀବନ ଉତ୍କଳର ଶିକ୍ଷାବିତ୍ ଓ ଶିକ୍ଷକ ମଣ୍ଡଳଙ୍କର ଧ୍ୟେୟ ହୋଇ ରହିବ ।

● ତେଲଙ୍ଗା ବଜାର, କଟକ



# ତୁମ ଚଲାପଥ ସୁଗମ ହେଉ

ଶ୍ରୀ ମାଧବ ଚନ୍ଦ୍ର ସ୍ୱାଇଁ

---

ମନେ ପଡ଼େ ଆଜ କରିଥିଲ ଯାହା ଜୀବନ ଦେଇ
ହେ ବ୍ରହ୍ମଗୃଷ୍ଣ,
ଝୁରେ ହାଇସ୍କୁଲ, ଝୁରଇ ଦୋହଲୀ, ଜନତା ଝୁରେ
ଆସିଲ ଫେରି ।
ନାମ ନେବା ପାଇଁ କାମ ତୁମେ ତହିଁ ନ ଥିଲ କରି
ଜନତା ସେବା—
ପାଇଁ ମାଗି ଯାଚ ବ୍ରହ୍ମଗୃଷ୍ଣ ହେ କରିଲ ଯାହା
ଲାଗଇ କାବା ।
ଯାହାକୁ ତୁମେ ତ ବନ୍ଧୁ ପରି ଭାବ ଆସନ ଦେଲ
ତାଙ୍କର ମେଣ୍ଟ—
ଦେଖି ସ୍ତୁଏଁ ସ୍ତୁଏଁ ସେଠାରୁ ତୁମେ ତ ବିଦାୟ ନେଲ
ନ କରି ଆଣ୍ଟ ।
ଘାସ କଟାଠାରୁ ଘୋଡ଼ା ଚଢ଼ାଯାଏ ଶିଖିଛ ତୁମେ
ହେ ବ୍ରହ୍ମଗୃଷ୍ଣ,
ଯୋତା ସିଲେଇରୁ ଚଣ୍ଡୀ ପାଠଯାଏ ଯେତେକ କାମ
ନେଲ ଆଦରି ।
ଅପରିଚିତ ଯେ ତୁମ କାମ ଧନ୍ଦା ଦେଖିବ ଆସି
ଭାବିବ ମନେ
"ଇଏତ ନୁହଁନ୍ତି ଶିକ୍ଷକ ସ୍କୁଲର ମଉଡ଼ମଣି
ଆଉ କେ ଜଣେ !"
ଗୋଟି ଗୋଟି ହୋଇ ସତର ବରଷ ଯାଇଛି ବିତି
ହେ ସଙ୍ଗଠକ
ତଥାପି ରହିଛି ସେହି ସଙ୍ଗଠନ, ସେହି ସାଧନା
ଆହେ ସାଧକ ।

'ଶିକ୍ଷକ ଦର୍ପଣ' ତୁମର କଲମ ଝରଣ ପାଇ
ଚେଇଁଛି ଆଜ
ଫେର ଆସିବାକୁ ଶିକ୍ଷକ ସମାଜ ଗତ ଗୌରବ
ଅଜ୍ଞାତ ରାଜ।
ତୁମର ଦାନରୁ ଛାତ୍ର ସମାଜ ରହିବ ବଞ୍ଚି
ହେ ଗୁରୁଦେବ,
ତୁମର ମନରୁ ଶିକ୍ଷକ ସମାଜ ନ ଯିବ ଘୁଞ୍ଚି
ଥାଉ ଏ ଭାବ।
ତୁମେ ତ ସାଧକ, ତୁମେ ସଙ୍ଗଠକ, ତୁମେ ତ ଗୁରୁ
ହେ ସଭାପତି,
ତୁମ ଚଲାପଥ ସୁଗମ ହେଉ ହେ ବ୍ରହ୍ମଗୃହୀ
କରେ ମିନତି।

● ଅଫିସ ଦୁର୍ମୁଖ
ରଘୁନାଥଜୀଉ ଲେନ୍
କଟକ-୯



# ଯୋଗ୍ୟତମ ସନ୍ତାନ

ଶ୍ରୀ ଧରଣୀଧର ଜେନା

ବନମାଳୀ ବ୍ରହ୍ମଗୃହ
ଏ ଉତ୍କଳର, ଏ ସାରା ଓଡ଼ିଶାର
ଏକ ଯୋଗ୍ୟତମ ସନ୍ତାନ,
ଧନ୍ୟ ଏକା ସେହି ବନ୍ଦ୍ୟ ବରେଣ୍ୟ
ପ୍ରତି ଶିକ୍ଷକ ପ୍ରାଣରେ
ପ୍ରତି ଶିକ୍ଷକ ଅନ୍ତରେ
ସେ ଏକ ଦୀପ୍ତି ଶିଖା,
ଜ୍ୱଳନ୍ତ ଅଗ୍ନିପିଣ୍ଡ
ତାର ଶେଷ ନାହିଁ, ତାର ଆରମ୍ଭ ବି ନାହିଁ ।
ସେ ଅଳଙ୍ଘ ଭାସ୍ୱର, ତେଜୋମୟ ନକ୍ଷତ୍ର ସମୂହ ।
ଉତ୍କଳର ପ୍ରତି ପୁରପଲ୍ଲୀ, ସହର ନଗରେ
ସେ ବନ୍ଦ୍ୟମାନ ତୁମଠି, ମୋଠି,
ସବୁର ଦୁଃଖରେ, ହାର-ଗୁହାରରେ,
ନୟନେ ତାର ସହସ୍ର ଲୋତକ ଧାର
ଦୀନ ଦରିଦ୍ରରେ ହାଡ଼ ବାଉଁଶରେ, କଣ୍ଠର ପାଣରେ
ବୁଲା କୁକୁର ଓ ମେହେନ୍ତରର ନର୍ଦ୍ଦମା ମେଦରେ
ସେ ଫୁଟିଛି ଫୁଟୁଛି,

ହସି ହସାଉଛି, ତୁମକୁ, ମୋତେ ଆଉ ସଭିଙ୍କି,
ଯେ ତାଳ ଶିଖିନ ପର ଲୁହେ ଲୁହ
ଯେ ଭୋଗୀ ଜାଣିନ ପର ଦୁଃଖେ ଦୁଃଖ
ଯେ ଅଙ୍ଗେ ଆଣିନ ପତର-କୁଡ଼ିଆ ଯାତନା ବେଦନା
ଯେ ଦେଖି ପାରିନ, କାଙ୍ଗାଳ ମୁହଁରେ
ସବଂହରା ଠାରେ ଆଣିବାକୁ କଅଁଳ ମୁହଁରେ
ଦରଫୁଟା ହସ ଭାଷା
ସିଏ କି ଜାଣିବ ବ୍ରହ୍ମଗୃହ କିଏ,
କିସ ସେ ଅଟଇ, କପର ପ୍ରାଣ ତା ଗଢ଼ା ?
ଏ ଜାତିକୁ ସିଏ ଆପଣାର କରି
ଆଦର କରଇଁ ପ୍ରାଣଠାରୁ ବଳି
ଅକୁହା ମୁହଁରେ କଥା ସେ କୁହଇ
ପର ପ୍ରାଣେ ଦିଏ ନିଜସ୍ୱ ତାଳ
ସେଇଠି ଦେଖଇଁ ନରନାରାୟଣ ରୂପ
ଜଗନ୍ନାଥ ଧାମ ବେକାର ଦର୍ଶନ
ମନ୍ଦିର ଦେବତା, ପଜା ବା ଆଳତି
ଯିବୁ ଅପାର, କାମନା ପୂର୍ଣ୍ଣ ହୁଏ କି ସେଠି ?

● ଆସିଷ୍ଟାଣ୍ଟ ମ୍ୟାନେଜର
ଇଣ୍ଡଷ୍ଟ୍ରିଆଲ ଏଷ୍ଟେଟ, ଜଗତପୁର, କଟକ

---

# ଶୁଭେଚ୍ଛାପତ୍ର

ପ୍ରିୟ ଚୈତନ୍ୟବାବୁ,

ଶୁଭେଚ୍ଛା ନେବେ । ସମ୍ମାନନୀୟ ଶ୍ରୀଯୁକ୍ତ ବ୍ରହ୍ମଗୃଷ୍ଣଙ୍କର ଆସନ୍ତା ତା ୨୩ । ୧୨ । ୭୩ ରେ ଜୟନ୍ତୀ ଉତ୍ସବ ପାଳନ କରାଯାଉଥିବାର ଶୁଣି ଆନନ୍ଦିତ ହେଲି । ଏଥିପାଇଁ ଆପଣଙ୍କର ତଥା ଜୟନ୍ତୀ ସମିତିର ଉଦ୍ୟମ ପ୍ରଶଂସନୀୟ ।

ଆଜି ଯାହା ଦେଖାଯାଉଛି, ସମସ୍ତେ ନିଜ ପାଇଁ ବ୍ୟସ୍ତ । ସେ ରାଜନୀତିଜ୍ଞ ହୁଅନ୍ତୁ ବା ସମାଜସେବୀ ହୁଅନ୍ତୁ, ସବୁ କାମ ମଧ୍ୟରେ ନିଜର, ନିଜ ପରିବାରର ବା ନିଜର ଉତ୍ତରାଧିକାରୀଙ୍କ ବିଷୟ ଚିନ୍ତା କରିବାକୁ ବା ସେମାନଙ୍କ ପାଇଁ ବ୍ୟବସ୍ଥା କରିବାକୁ ଭୁଲନ୍ତି ନାହିଁ । କିନ୍ତୁ ଶ୍ରୀଯୁକ୍ତ ବ୍ରହ୍ମଗୃଷ୍ଣ ସମସ୍ତଙ୍କଠାରୁ ଊର୍ଦ୍ଧ୍ୱରେ । ନିଜର ସମ୍ପତ୍ତି ବଢ଼ାଇବା ବା ପୁଅଝିଅଙ୍କ ପାଇଁ ସଞ୍ଚୟ କରିବା, ଏସବୁ କଥା ତାଙ୍କ ପାଖରେ ନାହିଁ । ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କର ସ୍ୱାର୍ଥପାଇଁ; ସାହିତ୍ୟର ସେବା ପାଇଁ, ଶହ ଶହ ଅନୁଷ୍ଠାନ ଗଢ଼ିବା ପାଇଁ, ଦରିଦ୍ର ନାରାୟଣ ସେବା ପାଇଁ ସର୍ବୋପରି ଶହ ଶହ ଦରିଦ୍ର ଛାତ୍ରଙ୍କୁ ଉଚ୍ଚ ଡିଗ୍ରୀ ହାସଲ ପର୍ଯ୍ୟନ୍ତ ସାହାଯ୍ୟ କରିବା ପାଇଁ ତାଙ୍କ ଜୀବନର ପଣ ।

ସେ ବ୍ୟକ୍ତି ନୁହନ୍ତି । ସେ ନିଜେ ଏକ ଅନୁଷ୍ଠାନ ଓ ଶିକ୍ଷକ ସମାଜର ପ୍ରାଣ । ମୁଁ ଏହି ଅବସରରେ ତାଙ୍କୁ ମୋର ବିନମ୍ର ପ୍ରଣତି ଜଣାଉଛି । ମହାନ ଅନୁଷ୍ଠାନ, ସାହିତ୍ୟିକ, ସମାଜ ସେବୀ ତଥା ଶିକ୍ଷକ ପ୍ରାଣ ଶ୍ରୀଯୁକ୍ତ ବ୍ରହ୍ମଗୃଷ୍ଣଙ୍କୁ ଈଶ୍ୱର ଦୀର୍ଘଜୀବୀ କରିବାକୁ ମୁଁ ପ୍ରାର୍ଥନା କରୁଛି ।

ଆପଣମାନଙ୍କର ଏହି ସାଧୁ ଉଦ୍ୟମ ପାଇଁ ଧନ୍ୟବାଦ । ଇତି ।

ଆପଣଙ୍କର
**ଶ୍ରୀ ବୈରାଗୀ ଚରଣ ବିଶ୍ୱାଳ**
ଚେୟାରମ୍ୟାନ,
ଧର୍ମଶାଳା ପଞ୍ଚାୟତ ସମିତି



# ସଂପାଦକୀୟ

ବ୍ୟକ୍ତିର ସମଷ୍ଟି ହିଁ ସମାଜ ଓ ସମାଜକୁ ନେଇ ଜାତିର ସୃଷ୍ଟି । ବ୍ୟକ୍ତି ବିଶେଷର ଚରିତ୍ର ଜାତୀୟ ଚରିତ୍ରକୁ ରୂପ ଦିଏ । ବ୍ୟକ୍ତିକୁ ନେଇ ଯେପରି ସମାଜ ଓ ଜାତିର ସୃଷ୍ଟି, ସେହିପରି ବ୍ୟକ୍ତି ଚରିତ୍ରର ସମାବେଶରେ ଜାତୀୟ ଚରିତ୍ରର ପରିପୁଷ୍ଟତା ଓ ଅଭିବୃଦ୍ଧି ଘଟିଥାଏ । ବ୍ୟକ୍ତିର ଆଦର୍ଶ, ଉଦ୍ୟମ, ପରିକଳ୍ପନା, ଚିନ୍ତା, ନିଷ୍ଠା, ସର୍ବୋପରି କର୍ମରେ ପ୍ରେରଣା, ଉତ୍ସାହ, ନୀତି ଓ ଦିଗ୍‌ଦର୍ଶନ, ଜାତି ତଥା ଦେଶର ବିଭିନ୍ନ ଆଙ୍ଗିକ ଐଶ୍ୱର୍ଯ୍ୟ ପାଇଁ ଅନୁକୂଳ । ବିଶ୍ୱରେ ତଥା ଭାରତୀୟ ଗଣତନ୍ତ୍ର ରାଷ୍ଟ୍ରରେ ବ୍ୟକ୍ତି ହିଁ ଜାତୀୟ ସମ୍ପଦକୁ ନିଜର ଶ୍ରମ ଓ କର୍ମରେ ସମୃଦ୍ଧ କରିଅଛି । ଏହିଭଳି ଜାତିର ପ୍ରତିଷ୍ଠା, ଜାତିର ଉନ୍ନତି, ଜାତିର ଦୃଢ଼ତା, ଜାତିର ଭବିଷ୍ୟତ୍ ବିକାଶ ହିଁ ବ୍ୟକ୍ତି ଚରିତ୍ରର ଆଧାର । ଗୋଟିଏ ଅନ୍ୟଟିର ପରିପୂରକ । ଗୋଟିକ ବିନା ଅନ୍ୟଟିର ଅଭିବୃଦ୍ଧି ଅସମ୍ଭବ ।

ଏହି ବ୍ୟକ୍ତିଚରିତ୍ରର ଅନ୍ୟତମ ସାଧକ ଓ ପୃଷ୍ଠପୋଷକ ହେଉଛନ୍ତି ଶ୍ରୀଯୁକ୍ତ ବନମାଳୀ ବ୍ରହ୍ମଗିରି । ଯୁବକ ପ୍ରାଣର ଉଚ୍ଛ୍ୱଳତା ଓ ସଂଗ୍ରାମୀ ମନର ଶ୍ରେଷ୍ଠ ପ୍ରତିଜ୍ଞା ନେଇ ସମସ୍ତ କଣ୍ଟକ-ପରିପୂର୍ଣ୍ଣ ପିଚ୍ଛିଳ ସୂକ୍ଷ୍ମାର୍ଦ୍ଧ ସମାଜବାଦର ବଡ଼ଦାଣ୍ଡରେ ଢୋଲ ମହୁରିକୁ କର୍ଣ୍ଣପାତ ନକରି, ଏକା ଏକା, ରଣାଙ୍ଗନକୁ ଅବତୀର୍ଣ୍ଣ ହୋଇଛନ୍ତି ସେ । ଭ୍ରୂକ୍ଷେପ ନାହିଁ, ବିରାଗ ନାହିଁ; ନିସ୍ତେଜତା କି ଅବଶତା ନାହିଁ । ଏକପକ୍ଷରେ ମନମୁଖୀ ନୀତିରେ ପରିଚାଳିତ ପ୍ରଶାସନିକ ଗୋଷ୍ଠୀ । ଅନ୍ୟପକ୍ଷରେ ସଦା ଅବହେଳିତ ଶିକ୍ଷକ-କୁଳ । * ମଣ୍ଡଳମଣି ନେତା ବ୍ରହ୍ମଗିରି ଓ ସାଥୀ, ସହଚର, ଅନୁଚର ସହଗାମିଗଣ । ନୀତି ଅନୀତିର ଯୁଦ୍ଧ, ନ୍ୟାୟ ଅନ୍ୟାୟର ଯୁଦ୍ଧ, ଧର୍ମ ଅଧର୍ମର ଯୁଦ୍ଧ, ସତ୍ୟ ଅସତ୍ୟର ଯୁଦ୍ଧ । ଅନୀତି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ସବୁବେଳେ ରହି ଆସିଛି, ରହିବ ମଧ୍ୟ—ଏ ସଂଗ୍ରାମର ଧାରା ଅବ୍ୟାହତ । ସତ୍ୟର ମର୍ଯ୍ୟାଦା, ନୀତିର ଅମଳିନତା, ଅନୀତିର ଅଳୀକତା ଲାଗି ବିପ୍ଳବ ହୋଇଛି, ରକ୍ତପାତ ହୋଇଛି । ପାର୍ଶ୍ୱବଦନ ଧରି ଶତ୍ରୁତା ବୃଦ୍ଧି, ସାମୟିକ ଅଶାନ୍ତି, ଜନକ୍ଷୟ, ଧନ ଅପବ୍ୟୟ, ଜ୍ଞାନ ବିସ୍ମରଣ, ବୁଦ୍ଧି ବିବେକ ହ୍ରାସ, ଅର୍ଥନୈତିକ ସଙ୍କଟ—ସବୁକିଛି ହୋଇଛି । କିଛିକାଳ ପାଇଁ ବାୟୁମଣ୍ଡଳ ଦୂଷିତ ହୋଇଛି । ହେଲେ ସତ୍ୟର ଜୟ ହୋଇଛି । ଅସତ୍ୟର ବିଲୟ ଘଟିଛି । ଏ ଯୁଦ୍ଧ ହୋଇଛି ଅସି ଓ ମସୀର । ସବୁଥିରେ ହିଁ ବିଜୟର ଗୌରବ ସୁସ୍ପଷ୍ଟ ।

ବ୍ରହ୍ମଗିରି ମସୀ ଯୁଦ୍ଧରେ ଅବତୀର୍ଣ୍ଣ । ସମାଜବାଦର ବଡ଼ଦାଣ୍ଡରେ ଡେଙ୍ଗୁରା ପିଟି ସେ ଦୁର୍ନୀତି, ଅନୀତି, ଅସତ୍ୟ, ପ୍ରବଞ୍ଚନା, ଧୋକାବାଜି ବିରୁଦ୍ଧରେ କଣ୍ଠ ଫଟାଇ ଚିତ୍କାର କରୁଛନ୍ତି । ଶିକ୍ଷା-ପ୍ରଶାସନିକ କ୍ଷେତ୍ରରେ ବିଶୃଙ୍ଖଳା, ଅନ୍ୟାୟ, ଭ୍ରଷ୍ଟାଚାର, ସ୍ୱୈରାଚାର ମନମୁଖୀ କାରବାର—ଏସବୁ ତାଙ୍କ ହୃଦୟରେ ଶେଳବିଦ୍ଧ କରୁଛି, ମନପ୍ରାଣ ଜର୍ଜରିତ କରୁଛି, ସହନଶୀଳତାର ସୀମା ଲଙ୍ଘନ କରୁଛି । ଯାହା ଫଳରେ ଶିକ୍ଷକ ସମାଜ ଉପେକ୍ଷିତ । ଗୁରୁକୁଳକୁ ଘୋର ଅପମାନ, ବିରାଟ ଧୋକାବାଜି ଏବଂ ଆଶ୍ୱାସନା ହିଁ ପ୍ରବଞ୍ଚନାରେ ପର୍ଯ୍ୟବସିତ ।

ଶିକ୍ଷକର ଗଣତନ୍ତ୍ର ରାଷ୍ଟ୍ରରେ ଉତ୍ତମ ନାଗରିକ ସୃଷ୍ଟି କରିବାରେ ଯେତିକି କର୍ତ୍ତବ୍ୟ ଅଛି, ଶିକ୍ଷା, ସାହିତ୍ୟ, ସଂସ୍କୃତି, ସଭ୍ୟତା, ସଂହତି ଗଠନ ଦିଗରେ ମଧ୍ୟ ସେତିକି ଗୁରୁଦାୟିତ୍ୱ ରହିଛି । ତେବେ କର୍ତ୍ତବ୍ୟ ଓ ଦାୟିତ୍ୱ ତୁଳନାରେ ଶିକ୍ଷକର ସାମାଜିକ ଉପଯୋଗିତା ଗଣତନ୍ତ୍ର ରାଷ୍ଟ୍ରରେ କୌଣସି ଗୁଣରେ କମ୍ ନୁହେଁ—ଏକଥା ମଧ୍ୟ

---

* ରଣକ୍ଷେତ୍ରରେ ଅବତୀର୍ଣ୍ଣ ଶିକ୍ଷକକୁଳ

ବିଶ୍ୱର୍ଯ୍ୟ । ଗଣତନ୍ତ୍ରର ସୁପରିଚାଳନା ଓ ସୁସଙ୍ଗଠନ ପାଇଁ ଶାସକ, ପ୍ରଶାସନିକ ଓ ସରକାରଙ୍କର ଯେତିକି କର୍ତ୍ତବ୍ୟ ରହିବାର କଥା, ତା ଠାରୁ ବେଶୀ ହେଉଛି ଶିକ୍ଷକର । କାରଣ ବ୍ୟକ୍ତିର ପୂର୍ଣ୍ଣ ବିକାଶମୂଳକ ବ୍ୟକ୍ତିତ୍ୱରେ ଶିକ୍ଷକର ଭୂମିକା ସର୍ବାଧିକ । ନିଜ ଘରେ ପିତାମାତାଙ୍କର ଆଦର୍ଶରୁ ସନ୍ତାନ ଭବିଷ୍ୟତରେ ସୁମଣ୍ଡିତ ହେବାର ଯେତିକି ସୁଯୋଗ ପାଏ, ବିଦ୍ୟାଳୟରେ ଶିକ୍ଷକଙ୍କଠାରୁ ତଦପେକ୍ଷା ବେଶୀ ଗ୍ରହଣ କରିଥାଏ । ତାହାହିଁ ତାର ପରବର୍ତ୍ତୀ ଜୀବନକୁ ସୁଶୃଙ୍ଖଳିତ ଓ ଅଲଙ୍କୃତ କରିଥାଏ । ତେବେ କଥା ହେଉଛି, ଗଣତନ୍ତ୍ର ରାଷ୍ଟ୍ରରେ ଆଦାନ ପ୍ରଦାନ ଭିତ୍ତିଭୂମିର ସାମଞ୍ଜସ୍ୟ ଓ ବ୍ୟବଧାନ ଠିକ୍ ରହିଲେ ଗଣତନ୍ତ୍ର ସୁପରିଚାଳିତ ହୁଏ । ତେଣୁ ଶିକ୍ଷକର ସାମାଜିକ ଉପଯୋଗିତା ଓ ମୂଲ୍ୟବୋଧ ସମାଜ ବର୍ତ୍ତମାନ ଗ୍ରହଣ କରିବାକୁ ଯେପରି କୁଣ୍ଠାବୋଧ କରୁଛି ତାହା ସହଜରେ ଅନୁମେୟ । ସାମାଜିକ ବ୍ୟକ୍ତିବୋଧ ଅପେକ୍ଷା ଶିକ୍ଷକର ମୂଲ୍ୟାଙ୍କନ ଯଥେଷ୍ଟ ଅଧିକ—ଏ ସ୍ୱର ଜାତୀୟ ଚେତନା ହେବା ଉଚିତ । ବର୍ତ୍ତମାନ ସରକାରୀ ବିଶେଷକରି ବେସରକାରୀ ସ୍ତରରେ ଶିକ୍ଷକ ସମାଜ ଅବହେଳିତ ଓ ଗଣତାନ୍ତ୍ରିକ ଜୀବନଧାରଣ ମାନର ବହୁତ ତଳେ । ଅର୍ଥ ଯେ କେବଳ ସାମାଜିକ ବଳ ତା ନୁହେଁ, ସମ୍ମାନ, ଆଦର ଓ ପାରମ୍ପରିକ ଗୌରବବୋଧ ଆଜି ବହୁତ ନିମ୍ନରେ । ଏ ବିଶୃଙ୍ଖଳା ପାଇଁ ଯେ କେବଳ ଗଣତନ୍ତ୍ରର ସର୍ବୋଚ୍ଚ କର୍ତ୍ତା ବା କର୍ତ୍ତ୍ରୀ ଦାୟୀ ତା ନୁହେଁ, ଏଥିପାଇଁ ସରକାରୀ କ୍ଷେତ୍ରରେ ଯେଉଁମାନେ ପ୍ରଶାସନିକ ଦାୟିତ୍ୱରେ ରହିଛନ୍ତି, ସେମାନେ ଅଳ୍ପବହୁତ ପରିମାଣରେ ଦାୟୀ । ନିୟମ, କାନୁନ୍, ଆଇନ, ଶୃଙ୍ଖଳା ଯା କୁହନ୍ତୁ, ସେ ସବୁକୁ ଯଦି ଆମେ କଡ଼ାକଡ଼ି ଧରି ବାଟ ଚାଲନ୍ତେ, ତେବେ ତ କିଛି ଅମଙ୍ଗଳ ହୁଅନ୍ତା ନି, ବରଂ ଶୃଙ୍ଖଳିତ ଶାସନପାଇଁ ବାଟ ମିଳନ୍ତା । କିନ୍ତୁ ଅମଲାତନ୍ତ୍ର ଶାସନରେ ଏହାର ପ୍ରୟୋଗ ଦୁର୍ଲଭ । ଏ ହେଲା ସମାଜବାଦର ଓଲଟ ପାଲଟ ନୀତି ବା ଆଦର୍ଶ ; ଏହାର ସଂଶୋଧନ ମୂଳରୁ ଆବଶ୍ୟକ ହେଲେ କରୁଛି କିଏ ?

ସେଥିପାଇଁ ଶିକ୍ଷକ ଆଜି ପୂର୍ଣ୍ଣ ପ୍ରାଣରେ ଶିକ୍ଷାରେ, ଶିକ୍ଷାଦାନରେ, ଶିକ୍ଷାୟତନରେ, ଶିକ୍ଷାର୍ଥୀଠାରେ ମନୋନିବେଶ କରି ପାରୁନାହିଁ । ସେ ବିଶୃଙ୍ଖଳିତ, ବିପର୍ଯ୍ୟସ୍ତ ଓ ତାର ଦୈନନ୍ଦିନ ଜୀବନ ଆସନ୍ନ ଭବିଷ୍ୟତକୁ ନେଇ ତମିସାଚ୍ଛନ୍ନ । ତେଣୁ ଶିକ୍ଷାୟତନରେ ସୁନାଗରିକ ଗଠନ କରିବାର ସୁବୃହତ୍ ଆଶା ସୁଦୂରପରାହତ ହେଉଛି । ଏଥିପାଇଁ ଦାୟୀ ଅମଲାତାନ୍ତ୍ରିକ ଶାସନର ଦ୍ୱିମୁଖୀ ନୀତି ନିୟମ । ଯୁଗର ପରିବର୍ତ୍ତନ ହୋଇଛି, ସମାଜର ଢାଞ୍ଚା ବଦଳିଛି । ତାହା ସଙ୍ଗେ ସଙ୍ଗେ ଗଣତାନ୍ତ୍ରିକ ଗଣଚେତନାରେ ଶିକ୍ଷକର ଆତ୍ମାଭିମାନ ବଢ଼ିଛି । ସେ ନିଜର ମୂଲ୍ୟ ଯେ କୌଣସି ମତେ ଜବରଦସ୍ତି ଆଦାୟ କରିନେବାକୁ ଚାହେଁ । ତେଣୁ ସଂଗ୍ରାମ··ଜାଗରଣର ନୂତନ ଧ୍ୱନି·····ପରିବର୍ତ୍ତନର ଆଶା ଆକାଙ୍‌କ୍ଷା···ସବୁ ତାକୁ ଆଜି ବାଟ କଢ଼ାଇ ନେଉଛି । ସେ ବି ଆଜି ଜାଗ୍ରତ ସିଂହ ସାଜିପାରେ, ଗଣତନ୍ତ୍ରର ଉପଯୁକ୍ତ ପରିବେଷ୍ଟନୀକୁ ସଜାଡ଼ି ଦେଇପାରେ···ଆସୁରିକ ମନୋବଳକୁ ଦହନ କରିପାରେ । ତେଣୁ ସେ ଆଶାୟୀ ଓ ବିଜୟୀ ଳପ୍ସୁ ।

ବିକାଶଶୀଳ ରାଷ୍ଟ୍ରର ସର୍ବବିଧ ଉନ୍ନତି ଦିଗରେ ଜଣେ ଶିକ୍ଷାବିତ୍ ଭାବରେ ବ୍ରହ୍ମଚାରୀ ନିଜର ଶିକ୍ଷକ ଜୀବନର ସୁଦୀର୍ଘ କର୍ମକ୍ଳାନ୍ତ ଅବସରରେ ଶିକ୍ଷକ ପ୍ରାଣର ଏଇ କଥାକୁ ମର୍ମେ ମର୍ମେ ଅତି ନିଷ୍ଠୁର ଭାବେ ଚିନ୍ତା କରୁଛନ୍ତି । ଶିକ୍ଷକର ଅନୁଭୂତିକୁ ନିଜ ଅଙ୍ଗେ ଲିଭାଇ ଏଥିରୁ ନିଷ୍କୃତି ପାଇବା ପାଇଁ ସେ ପ୍ରଥମ କରି ଡାକ ଦେଲେ ସମଗ୍ର ଓଡ଼ିଶାର ଶିକ୍ଷକ ସମାଜକୁ । ବିପ୍ଳବର ପ୍ରଥମ ସୂତ୍ରଧର ହେଲେ ସେ । ବିପ୍ଳବ ମାଧ୍ୟମରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ—ଏହି କଳ୍ପନାକୁ ଫଳବତୀ କରିବା ପାଇଁ ଆଜି ସେ ଅଶୀତିର ବର୍ଷ ବୟସରେ ନିଜକୁ ତିଳ ତିଳ କରି ଧ୍ୱଂସ କରିବାର ଆହ୍ୱାନ ଦେଇଛନ୍ତି । ଶିକ୍ଷକ ସମାଜର ସାହଚର୍ଯ୍ୟରେ ଶିକ୍ଷକ ସଦନର ପ୍ରତିଷ୍ଠା ଏହି ପରିପ୍ରେକ୍ଷୀରେ ପରିଭୁକ୍ତ । 'ସଙ୍ଘ ଶରଣଂ ଗଚ୍ଛାମି' । ଏ ମନ୍ତ୍ରର ମନ୍ତ୍ରଦାତା ବ୍ରହ୍ମଚାରୀ ଜଣେ ସାଂଗଠନିକ ଭାବରେ ଶିକ୍ଷକ ସମାଜର ସମସ୍ୟା ସମାଧାନ ଓ ଦୈନ୍ୟ ଦୂରୀକରଣ ପାଇଁ ସଂଗ୍ରାମ ଅବ୍ୟାହତ ରଖିଛନ୍ତି । ତାହା ବି ରହିବ ମୃତ୍ୟୁର ପଦଧ୍ୱନି ପର୍ଯ୍ୟନ୍ତ

ପ୍ରତିଜ୍ଞାର ହୋମ କୁଣ୍ଡରେ ସ୍ୱାର୍ଥକୁ ସବୁମତେ ଆହୂତି ଦେଇ । ଗତ ଦୁଇ ଦଶନ୍ଧିର ସଂଗ୍ରାମ ମଧ୍ୟରେ ଶିକ୍ଷକର, ଶିକ୍ଷକ ଜାତିର, ଶିକ୍ଷକ-ପରିବାରର, ଶିକ୍ଷାୟତନର ବା ଶିକ୍ଷାର୍ଥୀଗୋଷ୍ଠୀର କି ପରିବର୍ତ୍ତନ ବା ଅଭ୍ୟୁଦୟ ଘଟିଛି, ତା'ର ଉତ୍ତର କେବଳ ବ୍ରହ୍ମଗ୍ରୀବ ନିଜେ । ସୁଦୀର୍ଘ ଅର୍ଦ୍ଧଶତାବ୍ଦୀର ଅଧିକ କାଳ ତାଙ୍କର ଜୀବନ ଅତିବାହିତ ହୋଇଛି ଶିକ୍ଷାକ୍ଷେତ୍ର, ଶିକ୍ଷାୟତନର ପ୍ରାଣ ପ୍ରତିଷ୍ଠାରେ, ଶିକ୍ଷକ ସମାଜର ପଛଆରରେ ।

ଆଜି ବ୍ରହ୍ମଗ୍ରୀବଜୀ ଓଡ଼ିଶାର ପୁରପଲ୍ଲୀ, ସହର ନଗରର ପ୍ରତିକୋଣରେ, ସମଗ୍ର ଶିକ୍ଷକ ସମାଜର ମନ-ପ୍ରାଣରେ, ସଂଜୀବିତ ଓ ପ୍ରକଟିତ । ବ୍ରହ୍ମଗ୍ରୀବଙ୍କ ପ୍ରେରଣା-ଅନଳ ସମସ୍ତଙ୍କ ଶରୀରକୁ ଉଷ୍ଣତାରେ ଭରି ଦେଇଛି । ବର୍ତ୍ତମାନ ନେତୃବାଦ ଅଭିମୁଖୀ ସମାଜରେ ବ୍ରହ୍ମଗ୍ରୀବଙ୍କ ପରି କେବଳ ଜଣେ ଜଣେ ବ୍ୟକ୍ତି ଯଦି ନିଜର ଆଦର୍ଶ ଓ ବ୍ୟକ୍ତିତ୍ୱରେ ବ୍ୟକ୍ତି ସମୂହର ସମୂହ ଉନ୍ନତିପାଇଁ ଦୈନିକ ପାଞ୍ଚ ମିନିଟ୍ ଚିନ୍ତା କରନ୍ତେ, ଦେଶ ଓ ଜାତିର ଅଭିବୃଦ୍ଧି କେତେଦୂର ଆଗେଇ ଯାଆନ୍ତା । ଗାନ୍ଧିଜୀ,ଗୋପବନ୍ଧୁ ଏହାହିଁ ଚାହୁଁଥିଲେ । ଆମେ ତାହାର କଳ୍ପନା ତ କରୁନୁ, ସ୍ୱପ୍ନ ଦେଖିବା ତ ଦୂରର କଥା । ତଥାପି ଆଗାମୀ ସମାଜର ମୁକ୍ତିକାମୀ ଯୁବ-ସମାଜ ଏହାକୁ ଉପଲବ୍ଧି କରିବାର ବେଳ ଆସି ଯାଇଛି, ଏଥିରେ ସନ୍ଦେହ ନାହିଁ ।

ଆଜିର ବ୍ରହ୍ମଗ୍ରୀବ ଜୟନ୍ତୀ, ବ୍ରହ୍ମଗ୍ରୀବ ସମ୍ବର୍ଦ୍ଧନା, କେବଳ ବ୍ରହ୍ମଗ୍ରୀବଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଶିକ୍ଷାଭିମୁଖୀ ବିକାଶଶୀଳ ଗଣତାନ୍ତ୍ରିକ ରାଷ୍ଟ୍ରରେ, ଶିକ୍ଷକର ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ସାମାଜିକ ଉପଯୋଗିତାର ଯେଉଁପରି ନ୍ୟୂନତା ପ୍ରକାଶ ପାଇବାର ସମ୍ଭାବନା ବା ଯଥେଷ୍ଟ କାରଣ ଅନୁଭୂତ ହେଉଛି, ତାହାର ନିବାରଣ ପାଇଁ ଏ ସଭାସମିତି ଓ ପୁଷ୍ପମାଲ୍ୟର ଆୟୋଜନ ।

ବ୍ରହ୍ମଗ୍ରୀବଙ୍କ ସମ୍ବର୍ଦ୍ଧନା ସମଗ୍ର ଶିକ୍ଷକ ଜାତିର ସମ୍ବର୍ଦ୍ଧନା, ଏହା ଉପଲବ୍ଧି କରିପାରିବାର କଥା । ଏ ସମ୍ବର୍ଦ୍ଧନା ଶିକ୍ଷକ ସମାଜର ଗର୍ବ ଓ ଗୌରବର ବିଷୟ । ଶିକ୍ଷକଜାତି, ଜାତୀୟ ସଂସ୍କୃତିରେ ନିଜର ପ୍ରକୃତ ଆସନ ଆଦାୟ କରିନେଉ– ତାହାର ସମ୍ମାନ ବଜାୟ ରଖୁ, ବିଶୃଙ୍ଖଳାକୁ ସଜାଡ଼ି ଦେଉ, ମର୍ଯ୍ୟାଦାହୀନ ପରମ୍ପରାକୁ ଛିନ୍ନ କରି ନୂତନତ୍ୱର ସ୍ୱର ଆଣି ଦେଉ । ଗଣତନ୍ତ୍ର ରାଷ୍ଟ୍ରରେ ସେ ସମତାଳରେ ଚାଲିବ, ସମତା ରକ୍ଷାକରିବ—ତା'ର ସ୍ୱତନ୍ତ୍ର ଆସନ ନିଶ୍ଚିତରୂପେ ଅଭିନନ୍ଦିତ ଓ ବନ୍ଦନୀୟ । ପ୍ରତ୍ୟେକ ଶିକ୍ଷାୟତନ 'ବ୍ରହ୍ମଗ୍ରୀବ ଜିନ୍ଦାବାଦ'ଧ୍ୱନିରେ ମୁଖରିତ ହେଉ···ତାହାହିଁ ଜନତାକୁ ଏ ଜୟନ୍ତୀର ଜବାବ । ଏ ଦେଶ, ଏ ଜାତି କେବଳ ନେତା ବା ମନ୍ତ୍ରୀକୁ ନେଇ ସଂସ୍କୃତି ସୃଷ୍ଟି କରି ନ ପାରେ । ନେତା ବା ମନ୍ତ୍ରୀର, ଶାସକ ବା ପ୍ରଶାସନକର ଜୟ ଜୟକାର ଧ୍ୱନି ଏ ଦେଶପାଇଁ କେବଳ ସଂସ୍କୃତିର ବା ସଭ୍ୟତାର ଆଦର୍ଶ ନୁହେଁ, ସେସବୁ ସଂସ୍କାରର ବେଳ ଆସିଯାଇଛି । ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ଶେଷରେ, ଏହି ଅବସରରେ ଜୟନ୍ତୀ ସମିତିର ସଭାପତି ପ୍ରବୀଣ ଶିକ୍ଷକ, ଶିକ୍ଷାବିତ୍ ଓ ବରେଣ୍ୟ ସାହିତ୍ୟିକ ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦ ତାଙ୍କର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ଏହି ସ୍ମରଣିକା ପ୍ରକାଶନରେ ଯଥାଶକ୍ତି ନିର୍ଦ୍ଦେଶନା ଦେଇ ଏହାକୁ ସର୍ବାଙ୍ଗସୁନ୍ଦର କରିଥିବାରୁ ତାଙ୍କୁ ମୁଁ ଜୟନ୍ତୀ ସମିତି ତରଫରୁ କୃତଜ୍ଞତା ଓ ସାଧୁବାଦ ଜ୍ଞାପନ କରୁଛି । ଏତଦ୍‌ବ୍ୟତୀତ ଜୟନ୍ତୀ ସମିତିର ଅନ୍ୟ ସମସ୍ତ ସଦସ୍ୟମାନଙ୍କ ସହଯୋଗ ଓ ସାହଚର୍ଯ୍ୟ ପାଇଁ ମୁଁ ମୋର ଧନ୍ୟବାଦ ବାଢ଼ୁଛି । ବିଶେଷକରି ପ୍ରତିଷ୍ଠିତ ସାହିତ୍ୟିକ ତଥା କବି ଶ୍ରୀ ରବିନାରାୟଣ ମହାପାତ୍ର ଓ ପଣ୍ଡିତ ଅଚ୍ୟୁତାନନ୍ଦ କରଙ୍କ ଅଦମ୍ୟ ପ୍ରୋତ୍ସାହ ଓ ଐକାନ୍ତିକତା ପାଇଁ ତାଙ୍କୁ ମୋର ହାର୍ଦ୍ଦିକତା ଜଣାଉଛି ।

ସବୁରି ମୂଳରେ ସମଗ୍ର ଓଡ଼ିଶାର ଅଗଣିତ ଶିକ୍ଷକ ଭାଇଙ୍କର ସାହାଯ୍ୟ, ସହାନୁଭୂତି, ପ୍ରେରଣା, ଉତ୍ସାହ, ଉତ୍କଣ୍ଠା ଓ ଆନ୍ତରିକତା ପ୍ରଶଂସାର ବିଷୟ । ସେମାନଙ୍କ ସାହାଯ୍ୟ ଓ ସୌହାର୍ଦ୍ଦ୍ୟ ନିମିତ୍ତ ଏହାର ପରିପ୍ରକାଶ ସମ୍ଭବପର ହୋଇ ପାରିଛି—ଏହା ସର୍ବାଦୌ ସ୍ୱୀକାର୍ଯ୍ୟ । ଏ ଜୟନ୍ତୀର ଶୁଭକାମନା କରି ଶତାଧିକ ଶିକ୍ଷାନୁଷ୍ଠାନରୁ

ଅଗଣିତ ଶିକ୍ଷକ ବନ୍ଧୁମାନେ ଯେଉଁ ପତ୍ରମାନ ଲେଖିଛନ୍ତି—ସେମାନଙ୍କୁ ସମସ୍ତଙ୍କୁ ବ୍ୟକ୍ତିଗତ ଭାବେ ଉତ୍ତର ଦେବା ସମ୍ଭବ ହୋଇ ପାରିନି। ସେଥିପାଇଁ ମୁଁ ସେମାନଙ୍କ ପାଖରେ ଏଠି କ୍ଷମାଭିକ୍ଷା କରୁଛି ଏବଂ ଆଉଥରେ ମୋର ଶିକ୍ଷକ ଭାଇମାନଙ୍କ ନିକଟରେ ସେମାନଙ୍କର ଏପରି ଆନ୍ତରିକତା ଓ ହୃଦୟବତ୍ତା ସକାଶେ ମୋର ଶ୍ରଦ୍ଧା ଓ ଶୁଭେଚ୍ଛା ନିବେଦନ କରୁଛି।

ସ୍ମରଣିକାରେ ପ୍ରକାଶ ପାଇବା ପାଇଁ ଆହୁରି ଅନେକ ମୂଲ୍ୟବାନ, କବିତା, ପ୍ରବନ୍ଧ ପ୍ରଭୃତି ବହୁ ସାହିତ୍ୟପ୍ରେମୀ ଶିକ୍ଷକ ବନ୍ଧୁ ମାନଙ୍କଠାରୁ ମିଳିଛି, କିନ୍ତୁ ସ୍ମରଣିକାର କଳେବର ବୃଦ୍ଧି ଭୟରେ ତାହା ଅନ୍ୟତ୍ର ପ୍ରକାଶ ପାଇଁ ରଖାଗଲା। ଏଥିପାଇଁ ଲେଖକମାନେ ଆମକୁ କ୍ଷମା ଦେବେ।

ଗତ ନଭେମ୍ବର ମାସରେ ଉତ୍କଳମଧୁ ବିଦ୍ୟାପୀଠର ବିଭିନ୍ନ ଆଭ୍ୟନ୍ତରୀଣ ଗଣ୍ଡଗୋଳ ଓ ତଜ୍ଜନିତ ଧାରଣା, ବିକ୍ଷୋଭ ଓ ଧର୍ମଘଟରେ ଶ୍ରୀ ବ୍ରହ୍ମଶ୍ରୀ ସକ୍ରିୟ ଭାଗ ନେଉ ଥିବାରୁ ଏ ଜୟନ୍ତୀ ନଭେମ୍ବର ୧୮। ୧୯ରୁ ଡିସେମ୍ବର ୨୨। ୨୩କୁ ଘୁଞ୍ଚାଇ ଦିଆଯାଇଥିଲା। ଏଥିପାଇଁ ଉପୁଜିଥିବା ସମସ୍ତ ଅସୁବିଧାକୁ ଶିକ୍ଷକ ଭାଇମାନେ ହୃଦୟଙ୍ଗମ କରିବା ପାଇଁ ଅନୁରୋଧ।

**ଚୈତନ୍ୟ କୁମାର ସାହୁ**
୨୨।୧୨।୭୩

# ଓଡ଼ିଶାର ବିକାଶ କ୍ଷେତ୍ରରେ ଏକ ନୂତନ ଯୁଗର ଅଭ୍ୟୁଦୟ

ଓଡ଼ିଶାରେ ଚଳିତ ବର୍ଷ ଶେଷ ସୁଦ୍ଧା ପ୍ରାୟ ୭୦ ଲକ୍ଷ ଟନ୍ ଓ ପଞ୍ଚମ ଯୋଜନା କାଳ ଶେଷ ସୁଦ୍ଧା ପ୍ରାୟ ୯୦ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦିତ ହେବ ।

ତୈଳବୀଜ, ଆଖୁ, ଝୋଟ ଏବଂ କପା ଭଳି ଅର୍ଥକାରୀ ଫସଲର ଉତ୍ପାଦନ ବୃଦ୍ଧି ।

ଚଳିତ ଯୋଜନା ଶେଷ ସୁଦ୍ଧା ବୃହତ୍ ତଥା ମଧ୍ୟମ ଜଳସେଚନ ଯୋଜନାଦ୍ୱାରା ରାଜ୍ୟରେ ପ୍ରତ୍ୟାଶିତ ଆୟାକଟର ଆୟତନ ପ୍ରାୟ ୨୧ ଲକ୍ଷ ଏକରକୁ ବୃଦ୍ଧି କରାଯିବ ।

ଚତୁର୍ଥ ଯୋଜନା ଶେଷ ସୁଦ୍ଧା ଉଠା ଜଳସେଚନ ଯୋଜନା ଦ୍ୱାରା ରାଜ୍ୟରେ ୧ ଲକ୍ଷ ଏକର ଜମିକୁ ଜଳ ଯୋଗାଇ ଦିଆଯିବ ।

ପାରାଦୀପ, ଗୋପାଳପୁର, ଚାନ୍ଦିପୁର, ଅସ୍ତରଙ୍ଗ, ଧାମରା ଏବଂ ଋଷିକୁଲ୍ୟାଠାରେ ରହିଥିବା ମାଛଧରା ବନ୍ଦରର ବିକାଶ ।

ଚତୁର୍ଥ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ମୋଟରେ ୯୦୦ ମେଗାୱାଟ୍ ଓ ପଞ୍ଚମ ଯୋଜନା କାଳ ଶେଷ ସୁଦ୍ଧା ୧୨୯୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହୋଇପାରିବ । ୧୯୭୩-୭୪ ମସିହା ଶେଷ ସୁଦ୍ଧା ରାଜ୍ୟରେ ୧୦, ୧୬୨ ଟି ଗ୍ରାମକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯିବ ।

'ଅର୍ଦ୍ଧ ନିଯୁକ୍ତ ଲୋକଙ୍କୁ କର୍ମଯୋଗାଣ' କାର୍ଯ୍ୟକ୍ରମ ଅନୁଯାୟୀ ଉତ୍ପାଦନାଭିମୁଖୀ ତଥା ପ୍ରାକ୍-ଅନୁସନ୍ଧାନ ଅଭିମୁଖୀ କାର୍ଯ୍ୟକ୍ରମ ଜରିଆରେ ଶିକ୍ଷିତ ବେକାରମାନଙ୍କୁ କର୍ମ ଯୋଗାଇ ଦେବା ନିମନ୍ତେ ନୂତନ ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି ।

ଚଳିତ ବର୍ଷ ମଧ୍ୟରେ ୨୧, ୩୯୭ ଜଣ ଶିକ୍ଷିତ ବ୍ୟକ୍ତିଙ୍କ କର୍ମସଂସ୍ଥାନ ।

ଗ୍ରାମାଞ୍ଚଳର ଲୋକମାନଙ୍କୁ ସର୍ବନିମ୍ନ ଆବଶ୍ୟକ କାର୍ଯ୍ୟକ୍ରମ ଜରିଆରେ ଶିକ୍ଷା, ଜଳଯୋଗାଣ, ସ୍ୱାସ୍ଥ୍ୟ, ପୁଷ୍ଟିକର ଖାଦ୍ୟ ଯୋଗାଣ, ରାସ୍ତାଘାଟ, ବିଦ୍ୟୁତ୍ ଶକ୍ତି ଆଦି କ୍ଷେତ୍ରରେ ସୁବିଧା ସୁଯୋଗ ପ୍ରଦାନ ।

**ଲୋକସମ୍ପର୍କ ଓ ପର୍ଯ୍ୟଟନ ନିର୍ଦ୍ଦେଶକ**
ଓଡ଼ିଶା ସରକାର

